# ଭକ୍ତକବି

# ବ୍ରହ୍ମଙ୍କ ମଧୁସୂଦନ



# ସୂଚୀ



—

# ପ୍ରଥମ ଅଧ୍ୟାୟ

## ଜନ୍ମ

ମଧୁମନ୍ମେ ନିକ୍ରମଣଂ ମଧୁମନ୍ମେ ପରାୟଣଂ
ବାଚା ବଦାମି ମଧୁମଦ୍ ଭୂୟାସଂ ମଧୁସଂଦୃଶାଃ

ଅଥର୍ବ ବେଦର ଏହି ଅମୃତନିଃସ୍ୟନ୍ଦୀ ମନ୍ତ୍ର ତଥା ସ୍ତୋତ୍ରର ମର୍ମାର୍ଥ ହେଉଛି— ସକଳ ମଧୁମୟ ବସ୍ତୁ ମୋ ନିକଟକୁ ଆସୁ, ସକଳ ସୁଧାମୟୀ ମାଧୁରୀ ମୋ ଅନ୍ତରରୁ ଉତ୍ସାରିତ ହେଉ, ମୋ ରସନାରୁ ମଧୁମୟ ବଚନ ନିର୍ଗତ ହେଉ, ମୋର ଅନ୍ତର ଓ ବାହାର ମାଧୁର୍ଯ୍ୟସିକ୍ତ ହେଉ । ଭକ୍ତକବି ମଧୁସୂଦନଙ୍କ ହୃଦୟ, ମନ ଓ ଶରୀର ସତେ ଯେପରି ଉପର୍ଯ୍ୟୁକ୍ତ ଉଦାତ୍ତମନ୍ତ୍ରଦ୍ୟୋତିତ ମାଧୁରୀରେ ରସାଣିତ ହୋଇଥିଲା । ସେହି ଶୁଦ୍ଧ, ବୁଦ୍ଧ ଓ ଋଷିପ୍ରାଣ ମହାପୁରୁଷ ସତେ ଯେପରି ସକଳ ମାଧୁରୀର ମୂର୍ତ୍ତ ପ୍ରତୀକ ଥିଲେ । ମଧୁମୟୀ ବାସନ୍ତୀ ପ୍ରକୃତିର ମନୋମୋହିନୀ ସୁଷମା ମଧ୍ୟରେ ଯେଉଁ ମହୋତ୍ସବମୟ ପୁଣ୍ୟ ଦିବସରେ ବରାଭୟଦାୟିନୀ ବାଗ୍‌ଦେବୀଙ୍କୁ ଆବାହନ କରିବାକୁ ଯାଇ ବିଦ୍ୟାର୍ଥୀ ଶିଶୁ ଗାନ କରେ—

'ନିନଦତୁ ବୀଣା ପ୍ରସରତୁ ବାଣୀ ନିରବଧିଭାରତବର୍ଷେ' ।

କିମ୍ବା

"ଉଲ୍ଲସି ଉଠୁ ପ୍ରାଣରେ
(ବାଜୁ ନିଗମଗାନରେ)
ବ୍ରହ୍ମଜନନ ବୋଧନ-ଧନ
ଭାରତି ତବ ନାମରେ ।
ଶତମୁଖେଁ ଉଠୁ ଭାରତି ସତି,
ବେଦଜନନି ଭଗବତି
କହ ଚିନ୍ମୟି ଭାବନମୟି
ପ୍ରାଣ ପୁଲକ ତାନରେ ।"

ସେହି ତୁଷାରହାରଧବଳା ଜାଡ୍ୟାପହା ସରସ୍ୱତୀଙ୍କର ଅର୍ଚ୍ଚନା-ଦିବସରେ ଭକ୍ତକବି ମଧୁସୂଦନଙ୍କର ଆବିର୍ଭାବ । ଏହି ପୁଣ୍ୟ ଜନ୍ମଦିନ ସହିତ ବାଣୀଙ୍କର ବରପୁତ୍ର କବି ମଧୁସୂଦନଙ୍କ ଜୀବନଧାରା ଓ ସାରସ୍ୱତ ସାଧନାର ସତେ ଯେପରି ଜନ୍ମଜନ୍ମାନ୍ତରୀଣ ଗୋଟିଏ ଅଲକ୍ଷିତ ଓ ଅଚ୍ଛେଦ୍ୟ ଯୋଗସୂତ୍ର ଥିଲା । ଯୁଗଯୁଗାନ୍ତରସଞ୍ଚିତ ତପସ୍ୟାର

ଅକ୍ଷୟ ଅବଦାନ ହେଉଛି, ମଧୁସୂଦନଙ୍କର ପ୍ରେମ-ଭକ୍ତି-ପ୍ରୀତି ଓ ମୈତ୍ରୀ ଅଭିଷିକ୍ତ କାବ୍ୟକବିତା । ଚିନ୍ମୟୀ ବାଗୀଶ୍ୱରୀ ସତେ ଯେପରି ତାର ଅକୁଣ୍ଠ ଓ ଅକୃପଣ ସ୍ନେହାଶିଷ ମଧୁସୂଦନଙ୍କ ଉପରେ ବର୍ଷଣ କରି ତାଙ୍କରି ପୁଣ୍ୟାହରେ ଏହି ଧରିତ୍ରୀକୁ ତାଙ୍କୁ ପ୍ରେରଣ କରିଥିଲେ । ତେଣୁ ମଧୁସୂଦନ ଯୋଗଜନ୍ମା ବା କ୍ଷଣଜନ୍ମା । ଏହି ଶୁଭଲଗ୍ନ କିମ୍ବା ମାହେନ୍ଦ୍ର ମୁହୂର୍ତ୍ତହିଁ ଥିଲା ତାଙ୍କର ସାହିତ୍ୟ ସର୍ଜନାର ଅନୁପ୍ରେରଣାର ଅଫୁରନ୍ତ ଉତ୍ସ ।

ବାଗ୍‌ଦେବୀ ସରସ୍ୱତୀଙ୍କ ସହିତ କବି କିମ୍ବା କାବ୍ୟପୁରୁଷଙ୍କର କି ସମ୍ପର୍କ ବିଦ୍ୟମାନ ଏ ସମ୍ବନ୍ଧରେ ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ଆଲଙ୍କାରିକ ରାଜଶେଖରଙ୍କ 'କାବ୍ୟମୀମାଂସା'ରେ ଗୋଟିଏ ସୁନ୍ଦର ପୌରାଣିକ ଆଖ୍ୟାୟିକା ଅଛି ।

''ପୁରା ପୁତ୍ରୀୟନ୍ତୀ ସରସ୍ୱତୀ ତୁଷାରଗିରୌ ତପସ୍ୟାମାସ । ପ୍ରୀତେନ ମନସା ତାଂ ବିରଞ୍ଚିଃ ପ୍ରୋବାଚ– ପୁତ୍ରଂ ତେ ସୃଜାମି ।'' ଅଥୈଷା କାବ୍ୟପୁରୁଷଂ ସୁଷୁବେ । ସୋଽଭ୍ୟୁତ୍‌ଥାୟ ସପାଦୋପଗ୍ରହଂ ଛନ୍ଦସ୍ୱତୀ 'ବାଚମୁଦଚୀଚରତ୍ ।' x x x

ଅର୍ଥାତ୍– ପ୍ରାଚୀନ କାଳରେ ପୁତ୍ରପ୍ରାପ୍ତି ଇଚ୍ଛା ମନରେ ପୋଷଣ କରି ସରସ୍ୱତୀ ହିମାଳୟ ପର୍ବତକୁ ଯାଇ ସେଠାରେ ତପସ୍ୟା କଲେ । ଏହାଙ୍କ ତପଶ୍ଚରଣରେ ପ୍ରୀତ ହୋଇ ବ୍ରହ୍ମା ବର ପ୍ରଦାନ କରି କହିଲେ, ''ମୋରି ଔରସରେ ତୁମ୍ଭର ପୁତ୍ର ହେବ ।'' ଏହି ଘଟନାର କିଛି ଦିନ ପରେ ସରସ୍ୱତୀଙ୍କଠାରୁ ଗୋଟିଏ ପୁତ୍ର ଜାତ ହେଲା । ଏହି ପୁତ୍ର ଭୂମିଷ୍ଠ ହେଉଁ ହେଉଁ ମାତାଙ୍କର ଚରଣ ବନ୍ଦନା କରି ଛନ୍ଦୋବଦ୍ଧ ଭାଷାରେ କହିଲା, ''ହେ ମାତା, ସମଗ୍ର ବାଙ୍ମୟ ବିଶ୍ୱ ଯାହାଦ୍ୱାରା ଅର୍ଥରୂପରେ ପରିଣତ ହୁଏ, ସେହି କାବ୍ୟପୁରୁଷ ତୁମ୍ଭର ଚରଣ ବନ୍ଦନା କରୁଅଛି ।'' ''ମଧୁସୂଦନଙ୍କଠାରେ ଏ ଅପୂର୍ବ ଜନ୍ୟ-ଜନନୀ ସମ୍ପର୍କ ସାର୍ଥକତା ଲାଭ କରିଅଛି ।'' 'ରାଧାନାଥ ବିୟୋଗ' କବିତାରେ ନିଜେ ମଧୁସୂଦନ 'ଆଦିଜନନୀ କାବ୍ୟମୟୀ' ସରସ୍ୱତୀଙ୍କ ପ୍ରତି ପ୍ରାଣର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଲେଖିଛନ୍ତି–

''ହେ ଆଦିଜନନି କାବ୍ୟମୟୀ ସରସ୍ୱତି !
ଜଗତର କବିକୁଳ ତୋହର ସନ୍ତତି ।
ଅଗାଧ ଅତଳ ସ୍ପର୍ଶ ଜଠରୁ ତୋହରି,
ଜନମ ଲଭଇ କବି ନବରୂପ ଧରି ।''

ପୁରୀ ନଗରୀର ପଥୁରିଆ ସାହିରେ ମଧୁସୂଦନ ରାଓ ୧୮୫୩ ଖ୍ରୀଷ୍ଟାବ୍ଦ ଜାନୁଆରୀ ୨୯ ତାରିଖ ଶ୍ରୀପଞ୍ଚମୀ ତିଥିରେ ଏକ ମହାରାଷ୍ଟ୍ରୀୟ ପରିବାରରେ ଜନ୍ମଗ୍ରହଣ କରିଥିଲେ । କଥିତ ଅଛି, ଏହି ପରିବାର ନାଗପୁରର ଭୋଁସଲାମାନଙ୍କର ଦୌହିତ୍ର ବଂଶ ଥିଲେ ।

ମଧୁସୂଦନଙ୍କ ପିତାଙ୍କ ନାମ ଭାଗୀରଥି ରାଓ; ପିତାମହଙ୍କ ନାମ ସଦାଶିବ ରାଓ ଏବଂ ମାତାମହଙ୍କ ନାମ ଭରତଜୀ । ମଧୁମୟୀ ଶ୍ରୀପଞ୍ଚମୀ ଦିନ ଭୂମିଷ୍ଠ ହୋଇଥିବାରୁ ପିତା ଭାଗୀରଥି ପୁତ୍ରର ନାମ ଦେଇଥିଲେ ମଧୁସୂଦନ । ମହାରାଷ୍ଟ୍ରୀୟ ମଧୁସୂଦନଙ୍କ ବଂଶ

ପରମ୍ପରାର ଇତିହାସ ଅନୁଶୀଳନ କରିବାକୁ ଯାଇ ତାଙ୍କର ଦ୍ୱିତୀୟା କନ୍ୟା ଅବନ୍ତୀ ଦେବୀ ସଦ୍ୟପ୍ରକାଶିତ ତତ୍‌ପ୍ରଣୀତ 'ଭକ୍ତକବି ମଧୁସୂଦନ ରାଓ ଓ ଉତ୍କଳେ ନବଯୁଗ' ନାମକ ବଙ୍ଗଳା ବହିରେ ଲେଖିଅଛନ୍ତି, ''ଓଡ଼ିଶା ବ୍ରିଟିଶ୍‌ମାନଙ୍କଦ୍ୱାରା ଅଧିକୃତ ହେବା ପୂର୍ବରୁ ନାଗପୁରର ଭୌଁସଲାବଂଶୀୟ ମହାରାଷ୍ଟ୍ରୀୟଗଣ ଅର୍ଦ୍ଧଶତାବ୍ଦୀ କାଳ ଏଠାରେ ରାଜତ୍ୱ କରିଥିଲେ । ପରେ ୧୮୦୩ ଖ୍ରୀଷ୍ଟାବ୍ଦରେ ଯେତେବେଳେ ଇଂରେଜ ଶାସନ ଓଡ଼ିଶାରେ ପ୍ରବର୍ତ୍ତିତ ହେଲା, ସେତେବେଳେ ଅଧିକାଂଶ ମହାରାଷ୍ଟ୍ରୀୟ ନାଗପୁରକୁ ଫେରିଗଲେ, କେବଳ ଯେଉଁମାନେ ଜମିଦାରି ଓ ଘରଦ୍ୱାର କରି ଏଠାରେ ବସବାସ କରୁଥିଲେ, ଯେଉଁମାନଙ୍କ ଅନ୍ତରର ଧର୍ମପିପାସା ବଳବତୀ ଥିଲା ଏବଂ ଶ୍ରୀକ୍ଷେତ୍ରରେ ବାସକରି ଜଗନ୍ନାଥ ଦର୍ଶନ ଅଧିକତର ବାଞ୍ଛନୀୟ ମନେକଲେ, ସେହିମାନେ, ଅନୁମାନ ଶତାଧିକ ପରିବାର, ଓଡ଼ିଶାରେ ରହିଗଲେ । ପ୍ରଧାନତଃ ପୁରୀ ଓ କଟକ ସହର ଏବଂ ତନ୍ନିକଟବର୍ତ୍ତୀ ଗ୍ରାମମାନଙ୍କରେ ସେମାନେ ବାସ କରୁଥିଲେ । ସେତେବେଳେ ସେମାନେ ପରସ୍ପର ମଧ୍ୟରେ ମହାରାଷ୍ଟ୍ରୀୟ ଭାଷାରେ କଥାବାର୍ତ୍ତା ହେଉଥିଲେ ଏବଂ ସାଧାରଣ ଲୋକମାନଙ୍କ ସହିତ ହିନ୍ଦୀଭାଷା ବ୍ୟବହାର କରୁଥିଲେ । ପରେ କ୍ରମଶଃ ଏମାନେ ଓଡ଼ିଆକୁ ନିଜର ମାତୃଭାଷାରୂପେ ଗ୍ରହଣ କରି ଓଡ଼ିଶାବାସୀରୂପେ ପରିଗଣିତ ହେବାକୁ ଲାଗିଲେ ।''

ମହାରାଷ୍ଟ୍ର ବଂଶସମ୍ଭୂତ ମଧୁସୂଦନଙ୍କ ସାଂସ୍କୃତିକ ଜୀବନ ଓ ସାହିତ୍ୟସାଧନାର ଐତିହାସିକ ପୃଷ୍ଠଭୂମି ଉପରେ ଆଲୋକ ସମ୍ପାତ କରି ଉଲ୍ଲିଖିତ ଗ୍ରନ୍ଥର ଐତିହାସିକ ପଟ୍ଟଭୂମିକା ପରିଚ୍ଛେଦରେ ଶ୍ରୀ ଦିଲୀପକୁମାର ବିଶ୍ୱାସ ଅତି ପ୍ରାଞ୍ଜଳଭାବରେ ଲେଖିଛନ୍ତି, ''ଉତ୍କଳରେ ମରହଟ୍ଟା ଶାସନ କିଞ୍ଚିଦଧିକ ଅର୍ଦ୍ଧଶତାବ୍ଦୀକାଳ ସ୍ଥାୟୀ ହୋଇଥିଲା (୧୭୫୧-୧୮୦୩) । ଏତେ ଅଳ୍ପ ସମୟ ମଧ୍ୟରେ ଉତ୍କଳର ଜାତୀୟ ଜୀବନରେ କୌଣସି ରକମର ବିଶେଷ ପ୍ରଭାବ ପକାଇଯିବା ମରହଟ୍ଟା ଶକ୍ତିପକ୍ଷରେ ସମ୍ଭବ ନଥିଲା । ଏହା ବି ମନେରଖିବାକୁ ହେବ, ଭାରତବର୍ଷ ଏ ସମୟରେ ଏକ ସନ୍ଧିକ୍ଷଣରେ ଉପନୀତ ହୋଇଥିଲା । ମୋଗଲ ସାମ୍ରାଜ୍ୟର ପତନ, ପାଶ୍ଚାତ୍ୟ ଶକ୍ତିସମୂହର ଆବିର୍ଭାବ, ଉତ୍ତରପଶ୍ଚିମ ପ୍ରାନ୍ତରୁ ବୈଦେଶିକ ଆକ୍ରମଣ, ଏ ସକଳ ଏକୀଭୂତ ହୋଇ ଅଷ୍ଟାଦଶ ଶତକରେ ଭାରତରେ ଏପରି ଏକ ରାଜନୈତିକ ବିଶୃଙ୍ଖଳା ସୃଷ୍ଟି କରିଥିଲା ଯେ, ଏହି ସମୟରେ କୌଣସି ଦେଶୀୟ ଶକ୍ତି ପକ୍ଷରେ ସ୍ଥିରତାର ସହିତ ରାଜ୍ୟ ଶାସନ କରିବା ଅସମ୍ଭବ ନହେଲେ ମଧ୍ୟ ଅତ୍ୟନ୍ତ କଠିନ ଥିଲା । ଏହା ବ୍ୟତୀତ ମରହଟ୍ଟା ଶକ୍ତିପଞ୍ଚକ ମଧ୍ୟରେ ପାରସ୍ପରିକ ସଂହତି ଓ ଐକ୍ୟର ଅଭାବ ଏ ଶକ୍ତିକୁ କ୍ରମଶଃ ଦୁର୍ବଳ କରିପକାଇଲା ଏବଂ ଅବଶେଷରେ ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ମରହଟ୍ଟା ଶକ୍ତି କବଳରୁ ଇଂରେଜ ଶାସନ ଅଧୀନକୁ ଗଲା । ଇଂରେଜ ଐତିହାସିକଗଣ ଓଡ଼ିଶାରେ ସ୍ୱଳ୍ପକାଳସ୍ଥାୟୀ ଏହି ମରହଟ୍ଟା ଶାସନର ପ୍ରଚୁର ନିନ୍ଦାବାଦ କରିଅଛନ୍ତି; କିନ୍ତୁ ଦେଶୀୟ ଗବେଷକଗଣ ଏହି ମତ ଗ୍ରହଣ କରନ୍ତି ନାହିଁ । ଏହି ବିତର୍କ ବର୍ତ୍ତମାନ ପ୍ରସଙ୍ଗରେ ଅବାନ୍ତର । ମରହଟ୍ଟା ଶାସନ

କାଳର ଦୁଇଟି ବିଶେଷତ୍ୱ ମନେରଖିଲେ ଆମ୍ଭମାନଙ୍କ ପକ୍ଷରେ ଯଥେଷ୍ଟ ହେବ । ହିନ୍ଦୁ ମରହଟ୍ଟା ଶକ୍ତିର ପୃଷ୍ଟପୋଷକତାରେ ଓଡ଼ିଆ ଜାତି ପୁନରାୟ ଧର୍ମକର୍ମରେ ଅବାଧ ସ୍ୱାଧୀନତା ଲାଭ କଲେ ଏବଂ ଓଡ଼ିଶାର ବିଖ୍ୟାତ ଧର୍ମସ୍ଥାନ ଓ ମନ୍ଦିରଗୁଡ଼ିକ ପୁନରାୟ ସୁଚାରୁଭାବରେ ପରିଚାଳିତ ହେଲା । ଦ୍ୱିତୀୟତଃ, ଶାସନର ଅବସାନ ପରେ ମଧ୍ୟ କେତେଗୁଡ଼ିଏ ମରହଟ୍ଟା ପରିବାର ସ୍ଥାୟୀଭାବରେ ଓଡ଼ିଶାର ଅଧିବାସୀ ହେଲେ । ଏମାନେ ଓଡ଼ିଶାର ଭାଷା, ସଂସ୍କୃତି ଓ ସାହିତ୍ୟକୁ ସଂପୂର୍ଣ୍ଣରୂପେ ନିଜସ୍ୱ କରିନେଲେ । ଏହି ଓଡ଼ିଶାବାସୀ ମରହଟ୍ଟା-ସମାଜ ମଧ୍ୟରୁ ଓଡ଼ିଶାର ନବଯୁଗର କବି ମଧୁସୂଦନ ରାଓ ଆତ୍ମପ୍ରକାଶ କରିଥିଲେ ।

ମନୁଷ୍ୟ ଜୀବନଧାରା ଓ କର୍ମପ୍ରବାହ ଉପରେ ପାରିପାର୍ଶ୍ୱିକ ଅବସ୍ଥା କିମ୍ବା ପରିବେଷ୍ଟନୀର ପ୍ରଭାବ କମ୍ ନୁହେଁ । ଜ୍ୟୋତିଷ ଶାସ୍ତ୍ର ଅନୁସାରେ ଜନ୍ମମୁହୂର୍ତ୍ତ ମନୁଷ୍ୟର ଭବିଷ୍ୟତ ଜୀବନକୁ ନିୟନ୍ତ୍ରିତ କରେ । ତେଣୁ ଜାତକ କିମ୍ବା ଜନ୍ମକୁଣ୍ଡଳୀ ଉପରେ ଏ ପର୍ଯ୍ୟନ୍ତ ଆମ୍ଭମାନଙ୍କ ମଧ୍ୟରୁ ଅନେକଙ୍କର ବିଶ୍ୱାସ ଅକ୍ଷୁଣ୍ଣ ରହିଛି । ସେଥିରେ ପୁଣି ମଧୁସୂଦନଙ୍କର ଜନ୍ମସ୍ଥଳୀ ହିନ୍ଦୁର ପରମ ପବିତ୍ର ପୁରାଣ-ପ୍ରସିଦ୍ଧ ଧର୍ମପୀଠ ପୁରୁଷୋତ୍ତମ କ୍ଷେତ୍ର । ଏହି ସ୍ଥାନରୁ ତ ମଧୁସୂଦନଙ୍କ ପ୍ରାଣରେ ଧର୍ମବୀଜର ଅଙ୍କୁରୋଦ୍‌ଗମ । ତା' ପରେ ପିତା, ମାତା, ଏପରିକି ପିତାମହ ଓ ମାତାମହଙ୍କର ସ୍ୱଭାବ ଓ ଚରିତ୍ର ମଧୁସୂଦନଙ୍କ ଜୀବନର ପୁଣ୍ୟ ପ୍ରସ୍ଫୁଟନରେ କମ୍ ସହାୟତା କରିନାହିଁ । 'ଯଥା ବୀର୍ଯ୍ୟାଃ ତଥାଙ୍କୁରାଃ' ଏହି ସଂସ୍କୃତ ଆପ୍ତବାକ୍ୟ ଏବେ ମଧ୍ୟ ଏହାର ତାତ୍ପର୍ଯ୍ୟ ହରାଇନାହିଁ ।

କର୍ମ-ବଚନରେ ତେଜସ୍ୱିତା, ସଂକଳ୍ପରେ ଦୃଢ଼ତା ଏବଂ ସାଧନାରେ ଏକନିଷ୍ଠତା ପ୍ରଭୃତି ସାଧୁ ଗୁଣରାଶି ମଧୁସୂଦନ ଯେପରି ଉତ୍ତରାଧିକାର ସୂତ୍ରରେ ତାଙ୍କର ପିତାମହ ଓ ପିତାଙ୍କଠାରୁ ଲାଭକରିଥିଲେ । ପିତାମହ ସଦାଶିବ ରାଓ ଅତି ତଜସ୍ୱୀ ଓ ଦୃଢ଼ମନା ବ୍ୟକ୍ତି ଥିଲେ । ଥରେ ଯାହା ସେ ଠିକ୍ ବୋଲି ମନେକରନ୍ତି, ଜୀବନରେ କେବେହେଲେ ସେଥିରୁ ସେ ବିଚ୍ୟୁତ ହୁଅନ୍ତି ନାହିଁ । ମନଟା ତାଙ୍କର ଲୁହାପରି ଟାଣ; କିନ୍ତୁ ପରିସ୍ଥିତି ଚାପରେ ସେହି ଲୌହ-କଠିନତା ମଧ୍ୟ ନବନୀତ ପରି କୋମଳ ହୋଇପାରୁଥିଲା ।

ସଦାଶିବଙ୍କ ଜୀବନର ଗୋଟିଏ ଘଟଣା ହେଉଛି— ଏକମାତ୍ର ପୁତ୍ର ଭାଗୀରଥି ଚାକିରି କରି ଟଙ୍କା ରୋଜଗାର କଲା; କିନ୍ତୁ ବଡ଼ ବେହିସାବୀ । ଖର୍ଚ୍ଚପତ୍ରର ଖାପମାପ ନାହିଁ । କିନ୍ତୁ ପିତା ସଦାଶିବ ବଡ଼ ଖାଣ୍ଟି ଲୋକ । ଅପବ୍ୟୟ କି ପଦାର୍ଥ ତାହା ତାଙ୍କ ଧାତୁରେ ନଥିଲା । ପୁଅକୁ ଥରେ ଦି'ଥର ଏ ବିଷୟରେ ସତର୍କ କରାଇଦେଲେ । 'ହାତେ ମାପି ଚାଖଣ୍ଡେ ଚାଲିବାକୁ' କେତେ ଉପଦେଶ ଦେଲେ । କିନ୍ତୁ ମୁକ୍ତହସ୍ତ ଓ ଅମିତବ୍ୟୟୀ ଭାଗୀରଥି ପିତାଙ୍କ କଥାରେ କର୍ଣ୍ଣପାତ କଲେ ନାହିଁ । ଏଥିରେ ପିତା ନିତାନ୍ତ ଅସନ୍ତୁଷ୍ଟ ଓ ବିରକ୍ତ ହୋଇ ପୁତ୍ର ସହିତ କଥାବାର୍ତ୍ତା ପର୍ଯ୍ୟନ୍ତ ବନ୍ଦକରିଦେଲେ । ବନ୍ଧୁବାନ୍ଧବଙ୍କ ଆଗରେ ସେ ବିରକ୍ତିରେ ଭ୍ରୂକୁଞ୍ଚନ କରି କହନ୍ତି, 'ଏପରି ଅଯୋଗ୍ୟ ପୁଅର ମୁଖାବଲୋକନ ଅବାଞ୍ଛନୀୟ ।' ଏହିପରି ଭାବରେ ଦୀର୍ଘ ଦଶବର୍ଷ କଟିଗଲା । ଥରେ ସଦାଶିବ କଠିନ

ରୋଗଗ୍ରସ୍ତ ହେଲେ । ବଞ୍ôବାର ଆଶା ଦିନକୁଦିନ କ୍ଷୀଣତର ହୋଇ ଆସିଲା । ଅନ୍ତିମ ମୁହୂର୍ତ୍ତର କ୍ରମେ ନିକଟତର ହୋଇ ଆସିବାରୁ ସେ ଭାଗୀରଥିଙ୍କୁ ଦେଖିବା ନିମନ୍ତେ ଅତ୍ୟନ୍ତ ଉତ୍କଣ୍ଠିତ ହୋଇପଡ଼ିଲେ । ତାଙ୍କର ଏପରି ଉତ୍କଣ୍ଠା ଦେଖି ଆତ୍ମୀୟ-ସ୍ୱଜନମାନେ ଭାଗୀରଥିଙ୍କ ପାଖକୁ ସମ୍ବାଦ ପଠାଇଲେ । ଖବର ଶୁଣି ଭାଗୀରଥି ସଙ୍ଗେସଙ୍ଗେ କର୍ମକ୍ଷେତ୍ରରୁ ପିତାଙ୍କ ନିକଟକୁ ଆସିଲେ । ତାଙ୍କ ଆସିବାର ଦେଖି ଜଣେ କେହି ପ୍ରତିବେଶୀ ଦଉଡ଼ିଯାଇ ସଦାଶିବ ରାଓଙ୍କୁ କହିଲା, 'ଆପ୍‌କା ବେଟା ଆ ଗୟା ।' ଏହି କଥା ଶୁଣିବା ମାତ୍ରକେ ସଦାଶିବ ଚିତ୍କାର କରି ଉଠିଲେ, ''କାହାଁ ହୈ, କାହାଁ ହୈ ।' ଏହା କହି ପୁଅର ମୁହଁକୁ ଚାହୁଁ ଚାହୁଁ ତାଙ୍କର ପ୍ରାଣବାୟୁ ଉଡ଼ିଗଲା; ପ୍ରାଣହୀନ ଦେହ ରୋଗଶଯ୍ୟାରେ ଲୋଡ଼ିପଡ଼ିଲା ।

ଅବନ୍ତୀ ଦେବୀ ଲେଖିଛନ୍ତି, ''ପିତାଙ୍କର ଏହି ମୃତ୍ୟୁ ଭାଗୀରଥି ରାଓଙ୍କ ପ୍ରତି ଅତ୍ୟନ୍ତ ମର୍ମସ୍ପର୍ଶୀ ଓ ଶିକ୍ଷାପ୍ରଦ ହୋଇଥିଲା ।''

ଭରତଜୀଙ୍କ କନିଷ୍ଠା କନ୍ୟା ଅମ୍ବିକା ବାଈ ମଧୁସୂଦନଙ୍କର ଜନନୀ । ସେ ଜଣେ ସର୍ବଗୁଣସମ୍ପନ୍ନା ନାରୀ ଥିଲେ । ଦେଖିବାକୁ ମଧ୍ୟ ରୂପସୀ– ଲକ୍ଷ୍ମୀସ୍ୱରୂପିଣୀ । ଏହାଙ୍କୁ ବିଭା ହେବା ପରେ ଭାଗୀରଥିଙ୍କ ଜୀବନରେ ବହୁତ ଉନ୍ନତି ଘଟିଥିଲା । ତାଙ୍କର ସକଳ ପାରିବାରିକ ସୁଖସ୍ୱାଚ୍ଛନ୍ଦ୍ୟର କାରଣ ଥିଲେ ଏହି ସୁଗୃହିଣୀ ଅମ୍ବିକା ବାଈ । କିନ୍ତୁ ବିଧିଲିପି ଅଖଣ୍ଡନୀୟ । ଏ ଦାମ୍ପତ୍ୟ ସୁଖଭୋଗ ଭାଗୀରଥିଙ୍କ ଜୀବନରେ ବହୁଦିନ ସ୍ଥାୟୀ ହୋଇ ରହିପାରିଲା ନାହିଁ । ୧୯ ବର୍ଷ ମାତ୍ର ବୟସରେ ଅମ୍ବିକାଙ୍କର ପରଲୋକ ହୋଇଗଲା ।

ସେତେବେଳେ ପୁରୀରେ ଜଣେ ସଦୟ-ହୃଦୟ ଜିଲା ମାଜିଷ୍ଟ୍ରେଟ ଥିଲେ । ତାଙ୍କର ନାମ ଡ୍ରାମଣ୍ଡ୍ । ଭାଗୀରଥିଙ୍କର ସାଧୁତା ଓ କର୍ମତତ୍ପରତାରେ ସେ ସନ୍ତୁଷ୍ଟ ହୋଇ ତାଙ୍କୁ ପୁରୀ ସହର ନିକଟରେ ଥିବା ଅଠରନଳା ପୁଲିସ୍ ଫାଣ୍ଡିର ଜମାଦାର ରୂପେ ନିଯୁକ୍ତ କରିଥିଲେ । ପୁରୀତୀର୍ଥକୁ ଆସୁଥିବା ଯାତ୍ରୀମାନଙ୍କଠାରୁ କର ଆଦାୟ କରିବା ନିମନ୍ତେ ଏହି ଫାଣ୍ଡିଟି ସ୍ଥାପିତ ହୋଇଥିଲା । ଏହା ପ୍ରାୟ ଊନବିଂଶ ଶତାବ୍ଦୀର ମଧ୍ୟଭାଗର କଥା । ଏହାର କିଛି କାଳ ପରେ ମଧୁସୂଦନଙ୍କର ଜନ୍ମ । ଏହି ନବ-ଜାତ ଶିଶୁର ଅପରୂପ ଲାବଣ୍ୟରେ ପିତା, ମାତା ଓ ଆତ୍ମୀୟ ସମସ୍ତେ ପୁଲକିତ ହୋଇଥିଲେ । ଜନନୀ ଅମ୍ବିକା ବାଈ ଶିଶୁପୁତ୍ରକୁ ଅତି ସ୍ନେହ ଓ ଯତ୍ନରେ ଲାଳନପାଳନ କରିବାକୁ ଲାଗିଲେ । ଶିଶୁଟିକୁ ଅପଲକ ନେତ୍ରରେ ଚାହିଁରହିଲାବେଳେ ତାଙ୍କ ମୁଖମଣ୍ଡଳରେ ଯେଉଁ ଉଜ୍ଜ୍ୱଳ ପ୍ରସନ୍ନତା ଫୁଟିପଡୁଥାଏ, ତାହା ଭାଷାରେ ବର୍ଣ୍ଣନା କରିବା ଅସମ୍ଭବ । ଅଢ଼େଇ ବର୍ଷ ପରେ ଅମ୍ବିକା ବାଈ ଆଉ ଗୋଟିଏ ପୁତ୍ର ଲାଭ କଲେ । ପିତା ପୁରୀକ୍ଷେତ୍ରର ମହାପ୍ରଭୁ ଜଗନ୍ନାଥଙ୍କ ନାମାନୁସାରେ ଶିଶୁର ନାମ ଦେଲେ 'ଜଗନ୍ନାଥ' । ଜଗନ୍ନାଥର ଅଢ଼େଇବର୍ଷ ବୟସ ବେଳେ ଅମ୍ବିକା ଗୋଟିଏ କନ୍ୟାସନ୍ତାନ ପ୍ରସବ କରି ଏହି ଶିଶୁସହିତ ସେହି ସୂତିକା ଗୃହରେ ଜୀବଲୀଳା ସାଙ୍ଗ କରିଥିଲେ ।

ଶେଷ ମୁହୂର୍ତ୍ତରେ ଏହି ପତିପ୍ରାଣା ନାରୀ ସ୍ୱାମୀଙ୍କର ପାଦୋଦକ ସେବା କରି ତାଙ୍କୁ ଆକୁଳ ପ୍ରାଣରେ ବାଷ୍ପରୁଦ୍ଧକଣ୍ଠରେ କହିଥିଲେ, ''ମୋର ଏହି ଧନ ଦୁଇଟିକୁ ତୁମରି

ହାତରେ ସମର୍ପି ଦେଇ ଯାଉଛି'' । ପିତୃଦେବଙ୍କ ଶୈଶବସ୍ମୃତି ସହିତ ପରିଚିତା କନ୍ୟା ଅବନ୍ତୀ ଦେବୀ ଏ ସମ୍ପର୍କରେ ଅତି ଆବେଗମୟୀ ଭାଷାରେ ଉଲ୍ଲେଖ କରିଅଛନ୍ତି, ''ଶୈଶବର ଏହି କରୁଣ ଦୃଶ୍ୟର ସ୍ମୃତି ମଧୁସୂଦନଙ୍କ ଅନ୍ତରରେ ଆଜୀବନ ଜାଗରୂକ ଥିଲା । ସେ ଅନେକ ସମୟରେ ସଜଳ ନୟନରେ ଏହି ଘଟଣାର କଥା କହିଥା'ନ୍ତି । ପରବର୍ତ୍ତୀ କାଳରେ 'ମୋ ଜନନୀ' କବିତାରେ ତାଙ୍କର ସେହି ମାତୃଭକ୍ତି ପ୍ରକାଶ ପାଇଛି । ତା'ର କିୟଦଂଶ ନିମ୍ନରେ ଉଦ୍ଧୃତ ହେଲା—

ପଡୁଅଛି ମନେ ମୋର ଶୈଶବର କଥା ହେ
ଶୁଣ ଶିଶୁଗଣ,
ଆଜି କେତେ ସୁଖ ଦୁଃଖ କେତେ ପ୍ରିୟଜନ ମୁଖ
ଆକୁଳ ହୃଦୟେ ଆହା କରଇ ସ୍ମରଣ ହେ
କରଇ ସ୍ମରଣ ।
ନୟନେ ନାଚଇ ଆଜି ସେ ସୁନ୍ଦର ମୁଖ ହେ
ପରମ ସୁନ୍ଦର,
ଆହା କିବା ସ୍ନେହଭରେ ହସି ହସି କି ଆଦରେ
ମୋ ଆଡ଼କୁ ବଢ଼ାନ୍ତି ମା' କୋମଳ ଶ୍ରୀକର ହେ
କୋମଳ ଶ୍ରୀକର ।

X X X

ଏ କି ରେ ଦାରୁଣ ଦୃଶ୍ୟ ଦେଖଇ ନୟନ ହେ
ଜନନୀ ମୋହର,
ଧରି ମୋ ପିତାଙ୍କ ପଦ କହନ୍ତି ମା' ଗଦଗଦ
ରଖ ରଖ ଏହି ଧନ ମୋର ହୃଦୟର ହେ,
ମୋର ହୃଦୟର ।
ଏହା କହି ସମର୍ପିଣ ସନ୍ତାନ ଦୁଇଟି ହେ
ପିତାଙ୍କ ଚରଣେ,
ଆହା ପୁଣ୍ୟ ଅଶ୍ରୁଜଳେ ଧୋଇ ବଦନ କମଳେ
ମୁଦିଲେ ନୟନ ମାତା ଅନ୍ତିମ ଶୟନେ ହେ,
ଅନ୍ତିମ ଶୟନେ ।

X X X

ପାଞ୍ଚବର୍ଷ ଦିନୁ ମୁହିଁ ଅଟଇ ଅନାଥ ହେ
ହରାଇ ଜନନୀ,
କିନ୍ତୁ ଆହା ବିଶ୍ୱପତି ଦୟା ବହି ଦୁଃଖୀ ପ୍ରତି
ଦେଇଛନ୍ତି ମୋର ପ୍ରାଣେ ମହାସ୍ୱର୍ଣ୍ଣ ମଣି ହେ,
ମହାସ୍ୱର୍ଣ୍ଣ ମଣି ।

ବିଶ୍ୱାସ-ପରଶମଣି          ହୃଦୟେ ମୁଁ ଧରି ହେ
ଦେଖଇ ପ୍ରତ୍ୟକ୍ଷେ,
ଦିବାନିଶି ଆକାଶରେ          ଜଳେ ସ୍ଥଳେ ଚରାଚରେ
ମୋହରି ଜନନୀ ମୂର୍ତ୍ତି          ଧରି ମୋତେ ବକ୍ଷେ ହେ,
ଧରି ମୋତେ ବକ୍ଷେ ।

[‘ମୋ ଜନନୀ’—ଛାନ୍ଦମାଳା—୧ମ ଖଣ୍ଡ]

ବିପଦ ଏକା ହୋଇ ଆସେ ନାହିଁ; ଆସେ ସାଙ୍ଗୋପାଙ୍ଗ ଦଳଗୋଷ୍ଠୀ ସମସ୍ତଙ୍କୁ ନେଇ । ପତ୍ନୀଶୋକରେ କାତର ଭାଗୀରଥିଙ୍କୁ ଠିକ୍ ଏଇ ସମୟରେ ଆସିଲା ବଦଳି ହୁକୁମ । ଅଠରନଳା ଫାଣ୍ଡି ଉଠିଗଲା— ଜଗନ୍ନାଥଯାତ୍ରୀମାନଙ୍କଠାରୁ କର ଆଦାୟ କରିବା ପ୍ରଥା ସ୍ଥଗିତ ରହିଲା । ତେଣୁ ଭାଗୀରଥିଙ୍କୁ ଗୋପ ପୁଲିସ ଥାନାର ଜମାଦାର ରୂପେ ବଦଳି କରାଗଲା । ସେତେବେଳେ ଆଜିକାଲି ପରି ପୁଲିସ ବିଭାଗର ସବ୍-ଇନ୍‌ସପେକ୍ଟର ପଦ ନଥିଲା । ପ୍ରତ୍ୟେକ ଥାନାରେ ମୁତୟନ ହେଉଥିଲେ ଜଣେ ଜଣେ ଇନସପେକ୍ଟର । ତାଙ୍କର ଅଧୀନରେ ଜମାଦାରମାନେ ନିଯୁକ୍ତ ହେଉଥିଲେ । ଇନ୍‌ସପେକ୍ଟରଙ୍କୁ ଦାରୋଗା କୁହାଯାଉଥିଲା । ସରକାରୀ ହୁକୁମ— ବିଧିର ବିଧାନ ପରି ‘କେ କରିବ ଆନ’ । ଅଗତ୍ୟା ଭାଗୀରଥିଙ୍କୁ ପବିତ୍ର ପୁରୀଧାମ ତ୍ୟାଗକରିବାକୁ ପଡ଼ିଲା । ମୃତ୍ୟୁ ପୂର୍ବରୁ ଅମ୍ବିକା ବାଈଙ୍କର ଇଙ୍ଗିତ ଥିଲା— ମାତୃହୀନ ଶିଶୁ ଦୁଇଟିଙ୍କୁ ଭାଇ ନାରାୟଣଜୀଙ୍କ ହସ୍ତରେ ଅର୍ପଣ କରିବାକୁ । ଅନ୍ୟ ଉପାୟ ନ ଦେଖି ଭାଗୀରଥି ଜ୍ୟେଷ୍ଠ ଶ୍ୟାଳକ ନାରାୟଣଜୀଙ୍କ ନିକଟକୁ ଯାଇ ତାଙ୍କୁ କାତର କଣ୍ଠରେ କହିଲେ, ‘‘ମୁଁ ଗୋପ ଚାଲିଯାଉଛି । ପିଲା ଦୁଇଟି ତୁମ ଦୁହିଁଙ୍କ ହାତରେ ସମର୍ପଣ କରି ଦେଇଗଲି । ଜଗନ୍ନାଥ ଭରସା ।’’

ଶିଶୁ ମଧୁସୂଦନ ଓ ଜଗନ୍ନାଥ ମାତୁଳାଳୟରେ ଲାଳିତପାଳିତ ହେଲେ ।

ଗୋପ ଥାନାରେ ସେତେବେଳେ ଜଣେ ଦରଦୀ ଦାରୋଗା ଥିଲେ— ତାଙ୍କର ନାମ ସୁବଳ ଚନ୍ଦ୍ର ବସୁ । ଅଧୀନସ୍ଥ କର୍ମଚାରୀ ହେଲେ ମଧ୍ୟ ସେ ଜମାଦାର ଭାଗୀରଥିଙ୍କୁ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ଦେଖୁଥିଲେ; ତାଙ୍କ କର୍ତ୍ତବ୍ୟନିଷ୍ଠାରେ ବଡ଼ ସନ୍ତୁଷ୍ଟ ଥିଲେ; ତାଙ୍କ ଦୁଃଖରେ ସମଦୁଃଖୀ ଥିଲେ । ସେ ଦୁହିଁଙ୍କ ମଧ୍ୟରେ ଗଭୀର ଆତ୍ମୀୟତା ଥିଲା ।

ଗୋପରେ ପୂରା ବର୍ଷେ ରହିଛନ୍ତି କି ନାହିଁ, ଦିନେ ରାତିରେ ଭାଗୀରଥିଙ୍କୁ ଗୋଟିଏ ଅଦ୍ଭୁତ ସ୍ୱପ୍ନ ହେଲା । ଏହି ସ୍ୱପ୍ନ ଦେଖି ତାଙ୍କର ବାତ୍ସଲ୍ୟମମତାମୟ ପ୍ରାଣ ବଡ଼ ବ୍ୟଥିତ ହୋଇଉଠିଲା । ସେ ସ୍ୱପ୍ନରେ ଦେଖିଲେ— ସ୍ୱର୍ଗତା ପତ୍ନୀ ଅମ୍ବିକା ବାଈ ଆସି ଅଶ୍ରୁ ଗଦ୍‌ଗଦ୍ ସ୍ୱରରେ ତାଙ୍କୁ କହୁଛନ୍ତି, ‘‘ମୋର ପ୍ରାଣପ୍ରିୟ ସନ୍ତାନ ଦିଓଟିକି ତୁମ ହାତରେ ଦେଇଆସିଛି । ସେମାନଙ୍କର ଅଯତ୍ନ ହେଉଛି । ତୁମେ ଯଦି ପିଲାଦୁହିଁଙ୍କୁ ପାଳି ନପାରିବ, ତେବେ ମୁଁ ସାନଟିକି (ଦ୍ୱିତୀୟ ପୁତ୍ର ଜଗନ୍ନାଥ) ଏଠାକୁ ନେଇଆସିବି ।’’

ରାତି ପାହିଲା, ସକାଳ ହେଲା; କିନ୍ତୁ ଭାଗୀରଥିଙ୍କୁ ଚାରିଦିଗ ଅନ୍ଧାର ଦିଶୁଥାଏ । ବସାରେ ତ ଆଉ କେହି ନାହାନ୍ତି । ଗୋପକୁ ପିଲା ଦିଓଟିକି ଆଣି ସେ କରିବେ କ’ଣ ?

କାନ୍ଦି କାନ୍ଦି ପରମବନ୍ଧୁ ସୁବଳବାବୁଙ୍କ ପାଖକୁ ଗଲେ । ସେ ତାଙ୍କୁ ଏପରି ବିବ୍ରତ ଅବସ୍ଥାରେ ଦେଖି କୌଣସି ପ୍ରଶ୍ନ ପଚାରିବା ପୂର୍ବରୁ ଭାଗୀରଥି କାନ୍ଦି କାନ୍ଦି କହିଲେ, ''ଛୁଟି ଦିଅନ୍ତୁ, ମୋତେ ଏହିକ୍ଷଣି ପୁରୀ ଯିବାକୁ ହେବ ।'' ଦାରୋଗା ସପରିବାର ଗୋପରେ ରହୁଥା'ନ୍ତି । ଆଶ୍ୱାସନା ଦେଇ ଦରଦମିଶା କଣ୍ଠରେ ସେ କହିଲେ, ''ଚିନ୍ତା ନାହିଁ, ପିଲାଦୁଇଟିକୁ ଏହିଠାକୁ ନେଇଆସ ।''

ସ୍ନେହକାତର ଭାଗୀରଥିଙ୍କ ଅବସନ୍ନ ପିଣ୍ଡରେ ପ୍ରାଣ ପଶିଲା । ସେହିଦିନ ଭାଗୀରଥି ଗୋପରୁ ପୁରୀ ଯାତ୍ରା କଲେ ।

ସେତେବେଳେ ପୁରୀରୁ ଗୋପକୁ ଯିବା ଆସିବା କରିବାପାଇଁ ବର୍ତ୍ତମାନ ପରି ଭଲ ରାସ୍ତା ନଥିଲା । ନଅ କି ଦଶ କୋଶ ବାଟ କେବଳ ଚାଲି ଚାଲି ଯିବାକୁ ପଡ଼େ, ନୋହିଲେ ଗୋରୁଗାଡ଼ି । ଏପରି ଦୁର୍ଗମ ପଥରେ ଭାଗୀରଥି ଶିଶୁଦୁଇଟିକି କିପରି ଆଣିବେ– ଭାବି ବଡ଼ ସମସ୍ୟାରେ ପଡ଼ିଲେ । ପିଲାଦୁଇଟିକି ଆଣିବାପାଇଁ ସେ ଗୋଟିଏ ସୁନ୍ଦର ଉପାୟ ସ୍ଥିରକଲେ । ସେ ପ୍ରଥମେ ଦୁଇଟି ବଡ଼ ବେତା ଆଣି ତାହା ଭିତରେ ଧାନ ଭର୍ତ୍ତି କରି ତାକୁ ସମତଳ କରିଦେଲେ । ତା'ପରେ ସେ ଧାନ ଉପରେ ଚଉତିଚାଇତି ଖୁବ୍ ବହଳ କରି ଲୁଗାପଟା ପକାଇଦେଲେ । ସେହି ଲୁଗା ଉପରେ ଶିଶୁଦିଓଟିକି ବସାଇଦେଲେ । ଭାରୁଆ ଶିକାରେ ଦୁଇଟିଯାକ ବେତା କାନ୍ଧରେ ଧରି ପୁରୀରୁ ଗୋପ ବାହାରିଲା । ଭାଗୀରଥି ଚାଲିଚାଲି ସେ ଭାରୁଆ ସାଙ୍ଗରେ ଗଲେ ।

ଗୋପରେ ରହି ଶିଶୁଦୁଇଟି ପିତାଙ୍କଦ୍ୱାରା ଅତି ଯତ୍ନରେ ଲାଳିତପାଳିତ ହେବାକୁ ଲାଗିଲେ । ଏଥିରେ ସୁବଳବାବୁଙ୍କ ପରିବାରର ଆନ୍ତରିକ ସାହାଯ୍ୟ ଓ ସହଯୋଗ ଯେ ଥିଲା, ଏହା ସହଜରେ ଅନୁମେୟ ।

ସ୍ୱର୍ଗତା, ଅମ୍ବିକା ବାଈ ଭାଇ ନାରାୟଣଜୀଙ୍କ ଘରେ ଶିଶୁଦୁଇଟିର ଯେଉଁ ଅଯତ୍ନର କଥା ସ୍ୱପ୍ନରେ ସେଦିନ ସ୍ୱାମୀଙ୍କୁ ଚେତାଇଦେଇଥିଲେ, ସେ ସତର୍କବାଣୀରେ ସତ୍ୟର ଅପଳାପ ନଥିଲା । ମାତୁଳ ନାରାୟଣଜୀଙ୍କ ପତ୍ନୀ ସେତେବେଳେ କିଶୋରୀ ବଧୂମାତ୍ର । ତାଙ୍କ ପରିବାରରେ ଅନ୍ୟ କୌଣସି ବୟସ୍କା ନାରୀ ନଥିଲେ । ସନ୍ତାନର ଲାଳନପାଳନ ବଡ଼ ଦାୟିତ୍ୱପୂର୍ଣ୍ଣ କଥା । ଏଥିରେ ସେହି କିଶୋରୀ ବଧୂଙ୍କର କୌଣସି ଅଭିଜ୍ଞତା ନଥିଲା । ତେଣୁ ଶିଶୁ ଦୁଇଟିର ଲାଳନପାଳନରେ ସେଠାରେ ଯେ ଯତ୍ନର ଅଭାବ ପ୍ରକୃତରେ ହୋଇଥିଲା, ଏଥିରେ ଅବିଶ୍ୱାସ କରିବାର କୌଣସି କାରଣ ନାହିଁ ।

—

# ଦ୍ୱିତୀୟ ଅଧ୍ୟାୟ

## ବିଦ୍ୟାରମ୍ଭ

ଆଧୁନିକ ଓଡ଼ିଆ କଥା-ସାହିତ୍ୟ ତଥା ଗଦ୍ୟ-ସାହିତ୍ୟର ସ୍ରଷ୍ଟା ଏବଂ ମଧୁସୂଦନଙ୍କର ସମକର୍ମୀ ବ୍ୟାସକବି ଫକୀରମୋହନ ସେନାପତି ତାଙ୍କର ବିଦ୍ୟାରମ୍ଭ ଏବଂ ଶିଶୁଶିକ୍ଷା ସମ୍ବନ୍ଧରେ 'ଆତ୍ମ-ଚରିତ'ରେ ଯେଉଁ ଚମତ୍କାର ବିବରଣୀ ଦେଇଅଛନ୍ତି, ମଧୁସୂଦନଙ୍କ ବିଦ୍ୟାରମ୍ଭ ପ୍ରତି ସେଇ କଥାଗୁଡ଼ିକ ସମ୍ପୂର୍ଣ୍ଣରୂପେ ପ୍ରଯୁଜ୍ୟ । ଫକୀରମୋହନଙ୍କ ଜନ୍ମ ୧୮୪୩ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରେ; ମଧୁସୂଦନଙ୍କ ଜନ୍ମ ଏହାର ଠିକ୍ ଦଶବର୍ଷ ପରେ । ଫକୀରମୋହନଙ୍କ ସମୟରେ ତତ୍କାଳୀନ ଓଡ଼ିଶାରେ ଶିକ୍ଷାର ଅବସ୍ଥା ଯାହା, ମଧୁସୂଦନଙ୍କ ସମୟରେ ମଧ ତାହା ଥିଲା ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗ ଏବଂ ତାହାର ଅବ୍ୟବହିତ ପୂର୍ବେ ଉତ୍କଳରେ କିପରି ଶିକ୍ଷା-ପଦ୍ଧତିର ପ୍ରଚଳନ ଥିଲା, ତାହାର ଏକ କୌତୁକାବହ ଓ ରଙ୍ଗରସପୂର୍ଣ୍ଣ ଆଭାସ ଫକୀରମୋହନଙ୍କ 'ରାଣ୍ଡିପୁଅ ଅନନ୍ତା' ଗଳ୍ପରୁ ମିଳେ । ସେତେବେଳେ ବର୍ତ୍ତମାନର ନିମ୍ନପ୍ରାଥମିକ ବିଦ୍ୟାଳୟ ନଥିଲା । ପ୍ରାଥମିକ ବିଦ୍ୟାଳୟର ସର୍ବଜନସୁବିଦିତ ନାମ ଥିଲା 'ଚାଟଶାଳୀ' । ଏହି ଚାଟଶାଳୀର ସର୍ବମୟ କର୍ତ୍ତା ଥିଲେ ଅବଧାନମଣ୍ଡଳୀ । ଅବଧାନମାନଙ୍କ ମଧ୍ୟରେ ଅଧିକାଂଶ କରଣ ଜାତି; ଅଳ୍ପସଂଖ୍ୟକ ମାତ୍ର ମାଟିବଂଶ ଓଝା । ଫକୀରମୋହନଙ୍କ ଭାଷାରେ, "ବାଲେଶ୍ୱରବାସୀ ଅବଧାନଗୁଡ଼ିକ ଜାତିରେ ଜ୍ୟୋତିଷ । ଅବଧାନମାନଙ୍କ ମଧ୍ୟରେ ମାଟିବଂଶ ଓଝାମାନେ ଖୁବ୍ ଟାଣ ବୋଲି ଦେଶରେ ଖ୍ୟାତି ଥିଲା । ସେମାନଙ୍କୁ ଲୀଳାବତୀ ସୂତ୍ର ଜଣା ବୋଲି ଲୋକଙ୍କର ବିଶ୍ୱାସ । ପାଠ ବଳରେ ଓଝାମାନେ ଗଛର ପତ୍ର ଓ ଉଡ଼ନ୍ତାପକ୍ଷୀର ପର ଗଣିପାରନ୍ତି ବୋଲି ମୁଁ ପିଲା ଦିନରୁ ଶୁଣିଆସିଛି ।" (ଆତ୍ମ-ଚରିତ, ୩ୟ ପରିଚ୍ଛେଦ) କଟକ ଜିଲାର ଝଙ୍କଡ଼ ପ୍ରଗଣାରୁ ଅଧିକାଂଶ ଅବଧାନ ଆସି ପୁରୀ, କଟକ ଓ ବାଲେଶ୍ୱର ଜିଲାର ଚାଟଶାଳୀମାନଙ୍କରେ ପିଲାଙ୍କୁ ପାଠ ପଢ଼ାଉଥିଲେ । ଚାଟଶାଳୀ ପାଇଁ ସ୍ୱତନ୍ତ୍ର ଘର ନଥାଏ । ବଉଳ କିମ୍ବା ଝଙ୍କାଳିଆ ଆମ୍ବଗଛ ମୂଳରେ ଅବଧାନେ ଗୋଟିଏ ଉଚ୍ଚା ପିଣ୍ଡି ଉପରେ ବସି ପାଠ ପଢ଼ାନ୍ତି । ଗ୍ରାମ ସାନ ଥିଲେ ଦୁଇ ତିନିଟା ଗ୍ରାମରେ ଗୋଟିଏ ଚାଟଶାଳୀ ଥାଏ । ଧନୀଲୋକମାନେ ନିଜ ନିଜ ଘରେ ସ୍ୱତନ୍ତ୍ର ଭାବରେ ଜଣେ ଜଣେ ଅବଧାନ ରଖିଥା'ନ୍ତି । ଏହିପରି ଗୋଟିଏ ଚାଟଶାଳୀରେ 'ରାଣ୍ଡିପୁଅ ଅନନ୍ତା' ଗଳ୍ପର ଅବଧାନ

ବୈଷ୍ଣବ ମହାନ୍ତି ଅନନ୍ତା ଓ ସେ ଗାଁର ପିଲାଙ୍କୁ ପାଠ ପଢ଼ାଉଥିଲେ । ଅବଧାନ ଭୂଇଁରେ ଅ ଆ ଲେଖି ଦେଇ ଉପରେ ଖଡ଼ି ମଡ଼ାଇବାକୁ ନୂଆ ହୋଇ ଆସିଥିବା ପିଲାଙ୍କୁ କହନ୍ତି । ଏଇ ଅବଧାନମାନେ ପିଲାଙ୍କ ସହିତ କିପରି ବ୍ୟବହାର କରୁଥିଲେ ଏବଂ ସେମାନଙ୍କର ଶିକ୍ଷା ପଦ୍ଧତି କିପରି ଥିଲା ତାହା 'ରାଣ୍ଡିପୁଅ ଅନନ୍ତା' ଗଳ୍ପର ନିମ୍ନଲିଖିତ ପୁଙ୍ଖାନୁପୁଙ୍ଖ ବର୍ଣ୍ଣନାରୁ ସ୍ପଷ୍ଟରୂପେ ପ୍ରତିଭାତ ହୁଏ ।

"ଦିନ ପହରକ ସମୟରେ ଅବଧାନଙ୍କୁ ପଦାଆଡ଼େ ତଲବ ଦେଲା । ଡାକି ଦେଲେ, "ଆରେ ନିଆଁ ଆଣରେ, ଧୂଆଁପତ୍ର ଆଣରେ, ନୋଟା ଆଣରେ ।" ପୁଞ୍ଜାଏ କି ଛ'ଟା ଚାଟଚୋକା ଧାଇଁ ଯାଇ ସବୁ ଠିକ୍ କରିଦେଲେ । ଅବଧାନଙ୍କ ସବୁ କାମ ପିଲାମାନେ କରନ୍ତି । ଅବଧାନଙ୍କର ଗୋଡ଼ଘଷା, ପାଲଟା ଲୁଗା କଚା, ସଙ୍କୁଡ଼ି ଧୁଆ, ବିଲ୍‌କୁଲ୍ କାମ ପିଲାମାନେ କରନ୍ତି । ଯେଉଁ ଲୋକ ପୁଅ ହେଉ ପଛକେ ଅବଧାନଙ୍କ ଗୋଡ଼ ଘଷିବ । ଗୁରୁଙ୍କ ଗୋଡ଼ ଘଷିଲେ ପାଠ ଆସେ । ଅବଧାନେ ପିକାଟିଏ ଭଲ କରି ମୋଡ଼ିଲେ । ନିଆଁଖୁଣ୍ଟାରେ ପିକାଟି ଲଗାଇଦେଇ ଦି କଳ ଭିଡ଼ିଲେ । ଫୁ କରି ଧୂଆଁ ଛାଡ଼ିଦେଇ କହିଲେ, "କିବେ ମୁକୁଳା, ଧୂଆଁ ଲାଗୁନାହିଁ ଯେ ।"

ମୁକୁନ୍ଦା କହିଲା– ମୁଁ କ'ଣ କରିବି ଅବଧାନେ ? ବାପା ତ କାଲି ହାଟରୁ ଏଇ ଧୂଆଁ ଆଣିଛି ।

ଅବଧାନେ– ବେ ବିନ୍ଦିଆ, ତୋ ବାପା କଟକରୁ ଯେ ବାଲେଶ୍ୱରୀ ଧୂଆଁପତ୍ର ଆଣିଥିଲା, ତାକୁ ଆଉ ଆଣିଲୁ ନାହଁ ତ ?

ବିନୋଦ– ମୁଁ କଅଣ କରିବି ଅବଧାନେ, ମା'ତାକୁ ବିଡ଼ା ବାନ୍ଧି ଶିକା ଉପରେ ରଖିଦେଇଛି, ମୋ ହାତ ପାଇଲାନାହିଁ ।

ଅବଧାନେ– ଆଚ୍ଛା ତୁ ଗୋଟାଏ କାମ କରିବୁ । ତୋ ମା' ଯେତେବେଳେ ଗାଧୋଇଯାଇଥିବ, ତୁ ଗୋଟାଏ ବଡ଼ ପାଛିଆ ଉଗାଡ଼ି ପକାଇବୁ; ତା ଉପରେ ଚଢ଼ି ଶିକାରୁ ଧୂଆଁପତ୍ର କାଢ଼ିବୁ । ସେଥିରୁ ଦୁଇ ଚାରିଖଣ୍ଡ କାଢ଼ିନେଇ ବିଡ଼ା ବାନ୍ଧି ଶିକାରେ ଥୋଇଦେବୁ । ଖବର୍‌ଦାର ! ବେଶି ଗୁଡ଼ାଏ ଆଣିବୁ ନାହିଁ । କାଲି ସକାଳେ ଯଦି ନ ଆଣିବୁ, ଅନାଇଥା ଏ ବେତକୁ ।

ଅବଧାନଙ୍କର ଏ ବେତକୁ ଚାଟଚୋକାଙ୍କର ପ୍ରାଣରେ ଭୟ । ଅବଧାନେ ଚାଟମାନଙ୍କ ଘରେ ପାଳି କରି ରୋଜ ଖା'ନ୍ତି । ଖାଇବା ଖର୍ଚ୍ଚଟି ଏହିପରି ଓପରି ଚଳିଯାଏ । କାହା ଘରେ ଯଦି ଭାତ ଟିକିଏ ଆଣ୍ଠ ହୋଇଯାଇଥାଏ କିମ୍ବା ତରକାରିପତ୍ର ଲୁଣିଆ କି ଅଲଣା ହୋଇଥାଏ, ତେବେ ତହିଁ ଆରଦିନ ସକାଳେ ଅବଧାନଙ୍କ ରାଗଟା ସୁଝେ ପାଳି ଦେଇଥିବା ଚାଟ ଉପରେ । ତା ପିଠିରେ ହୁଏ ନିର୍ଘାତ ବେତ୍ର ପ୍ରହାର । ନୋଳା ଫାଟି ରକ୍ତ ଧାର ଧାର ହୋଇ ବୋହିଯାଏ । କାହାର ସାଧ ଅଛି ଅବଧାନଙ୍କ ଆଗେ ଏ ବିଷୟରେ ପାଟି ଫିଟାଇବ ?"

ଫକୀରମୋହନ ସେନାପତି ଏହିପରି ଅକାରଣରେ ତାଙ୍କ ଅବଧାନଙ୍କଠାରୁ ବହୁତ ମାଡ଼ ଖାଇଥିଲେ । ମାସ ଶେଷରେ ଅବଧାନେ ଦରମା ମାଗିବାକୁ ଗଲେ ଫକୀରମୋହନଙ୍କ ବଡ଼ବାପା କହନ୍ତି, ''ତୁମ୍ଭେ ତ ଫକୀରକୁ ପାଠ ପଢ଼ାଉ ନାହଁ, ଦରମା ମାଗୁଛ କ'ଣ ?'' ଅବଧାନେ ଜବାବ ଦିଅନ୍ତି, 'ମୁଁ ତ ଦିନରାତି ତାହାକୁ ପାଖରେ ବସାଇଛି, ଦଣ୍ଡେ ହେଲେ ଖେଳିବାକୁ, ବୁଲିବାକୁ ଛାଡୁନାହିଁ ।' ଅବଧାନେ ବଡ଼ବାପାଙ୍କ ମନକଥା ଭଲ କରି ବୁଝିଥିଲେ; ଚାହାଳୀରେ ମୁଁ ବସିଥିଲି, ଅକାରଣ ବେତଟା ଧରି ମୋ ପିଠିରେ ଦଶ ବାର ପାହାର ବାଡ଼େଇଦେଲେ । ମାଡ଼ର ଶବ୍ଦ ଓ ମୋହର ଚିତ୍କାର ଶୁଣି ବଡ଼ବାପା ଓ ବଡ଼ମା' ଭାରି ଖୁସି; କିନ୍ତୁ ଠାକୁରମା' ଦଉଡ଼ିଆସି କହନ୍ତି, ଅବଧାନେ, 'ତୁମର କି ପୁଅଝିଅ କିଛି ନାହିଁ ? ଅକାରଣ ପିଲାଟିକୁ ବାଡ଼ୋଉଛ । ପ୍ରତ୍ୟେକ ଥର ଅବଧାନଙ୍କ ଦରମା ଦେବାବେଳେ ଏହିପରି ଅଭିନୟ ହୋଇଥାଏ ।

ଏହି ପ୍ରକାର ଅବଧାନୀୟ ଶିକ୍ଷାରୀତିର ଅନେକ ଦୋଷ ତ୍ରୁଟି ଥିଲା । ଚାଟଶାଳୀରେ ଶ୍ରେଣୀବିଭାଗ ନଥିଲା । ବିଜ୍ଞାନସମ୍ମତ କୌଣସି ନିର୍ଦ୍ଦିଷ୍ଟ ପାଠ୍ୟ-ନିର୍ଘଣ୍ଟ ନଥିଲା । ଛପା ବହି ତ ନଥିଲା । ତାଳପତ୍ର ପୋଥିରୁ 'କେଶବ କୋଇଲି', 'ଗୋପୀଭାଷା' କିମ୍ବା 'ମନୋବୋଧ ଚଉତିଶା' ଅବଧାନ ରାଗରାଗିଣୀରେ ଆବୃତ୍ତି କରୁଥିଲେ । ଚାଟ ଜଣକ ପରେ ଜଣେ ତାଙ୍କ କୋଳରେ ବସି ଶୁଆପରି ତାହା ଆବୃତ୍ତି କରୁଥିଲେ । ଚାଟଶାଳୀର ନାନା କଠୋର ଦଣ୍ଡବ୍ୟବସ୍ଥା; ଯଥା—(କ) ବେତ୍ରାଘାତ, (ଖ) ଏକଗୋଡ଼ିଆ, (ଗ) ନାକବାଳ, (ଘ) ଆଣ୍ଠୁଆଗୋପାଳ ଏବଂ (ଙ) ମଡୁଆଶାଙ୍କୁଳି ପ୍ରଭୃତି ଅବଧାନୀୟ ଶିକ୍ଷାରୀତିର ମୁଖ୍ୟ ବିଧାନ ଓ ଅମୋଘ ଅସ୍ତ୍ର ଥିଲା । ଏହି ଶିକ୍ଷାରୀତିରେ ଛାତ୍ରମାନଙ୍କର ମନ-ବିନୋଦନର କୌଣସି ବ୍ୟବସ୍ଥା ନଥିଲା । ଅବଧାନଙ୍କ ମୁଖନିଃସୃତ ବାଣୀ ଥିଲା ବେଦର ଗାର । ଛାତ୍ରମାନେ ପ୍ରବଳ ହୃତ୍‌କମ୍ପର ସହିତ ବିମର୍ଷ ବଦନରେ ଚାଟଶାଳୀକୁ ଆସୁଥିଲେ । ଅବଶ୍ୟ ଚାଟଶାଳୀ ପାଠ ଶେଷ କରି କୌଣସି କୌଣସି ବୁଦ୍ଧିମାନ୍ ଓ ଜ୍ଞାନପିପାସୁ ଛାତ୍ର ଉଚ୍ଚତର ଶିକ୍ଷା ଲାଭ କରିବା ନିମନ୍ତେ ଉପଯୁକ୍ତ ଅଧ୍ୟାପକମାନଙ୍କ ନିକଟକୁ ଯାଇ ଟୋଲ, ଚତୁଷ୍ପାଠୀ କିମ୍ବା ଏହପରି କୌଣସି ଶିକ୍ଷାୟତନରେ ଓଡ଼ିଆ ସାହିତ୍ୟ, ସଂସ୍କୃତ କାବ୍ୟବ୍ୟାକରଣଅଳଙ୍କାର, ସ୍ମୃତି, ପୁରାଣ-ଜ୍ୟୋତିଷ, ଆୟୁର୍ବେଦ ବା ଷଡ଼ଙ୍ଗ ଦର୍ଶନ ଅଧ୍ୟୟନ କରୁଥିଲେ ।

ପ୍ରାକ୍-ଇଂରେଜ ଶିକ୍ଷାପ୍ରଣାଳୀ ଯେ ସଂପୂର୍ଣ୍ଣରୂପେ ଉପଯୋଗିତାଶୂନ୍ୟ ଥିଲା, ତାହା କହିହେବ ନାହିଁ । ଏହି ଅବଧାନୀୟ କିମ୍ବା ଉଚ୍ଚତର ଦେଶୀ ଶିକ୍ଷାପଦ୍ଧତି ଛାତ୍ରମାନଙ୍କ ପ୍ରତି ଅତ୍ୟନ୍ତ ବ୍ୟୟସାପେକ୍ଷ ନଥିଲା । ଆଜିକାଲି ପରି ଏ ଶିକ୍ଷା କେବଳ ଅର୍ଥକରୀ ଓ ବ୍ୟବସାୟବୁଦ୍ଧି ସଂଜାତ ନଥିଲା । ଶିକ୍ଷାୟତନମାନଙ୍କରେ ଯେଉଁ କଠୋର

ଶୃଙ୍ଖଳାବିଧାନ ଥିଲା, ତାହା ହୁଏତ କେତେକ ପରିମାଣରେ ଛାତ୍ରମାନଙ୍କ ଭବିଷ୍ୟତ ଜୀବନକୁ ଶୃଙ୍ଖଳିତ ଓ ସଂଯତ କରିବାରେ ସାହାଯ୍ୟ କରୁଥିଲା ।

ପୁରୀରୁ ଗୋପକୁ ଆସିବା ପରେ ଏହିପରି ଗୋଟିଏ ଗ୍ରାମ୍ୟ ଚାଟଶାଳୀରେ ସପ୍ତମବର୍ଷ ବୟସରେ ମଧୁସୂଦନଙ୍କର ବିଦ୍ୟାରମ୍ଭ ହୋଇଥିଲା । ଫକୀରମୋହନଙ୍କ ଆତ୍ମଚରିତରୁ ଜଣାଯାଏ, ଚାଟଶାଳୀରେ ପଢ଼ା ଆରମ୍ଭ ସମୟକୁ ତାଙ୍କର ପ୍ରାୟ ୯ବର୍ଷ ବୟସ ହୋଇଥିଲା ।

ଚାଟଶାଳୀର ପାଠ୍ୟରୀତି ଅନୁସାରେ ମଧୁସୂଦନଙ୍କୁ ସେଠାରେ ପଢ଼ିବାକୁ ହେଲା— ଶୋଧି, ଫେଡ଼ାଙ୍କ, ଓଡ଼ାଙ୍କ, କୁଟା, ନଳ, ସୁଧକଷା ଓ ଲୀଳାବତୀ ସୂତ୍ର; କିନ୍ତୁ ଏହି ଚାଟଶାଳୀରେ ମଧୁସୂଦନଙ୍କୁ ବେଶି ସମୟ ରହିବାକୁ ପଡ଼ିନଥିଲା । ପଡ଼ିଥିଲେ, ପ୍ରତ୍ୟକ୍ଷ ଶିକ୍ଷା ଓ ସଂସ୍କୃତିର ସଂସ୍ପର୍ଶରେ ଆସିବାକୁ ତାଙ୍କର ବିଳମ୍ବ ହୋଇଥା'ନ୍ତା । ଭଗବାନ୍ ଯାହା କରନ୍ତି ମଙ୍ଗଳ ନିମିତ୍ତ । ସେ ଚାଟଶାଳୀରେ ବର୍ଷେ ଖଣ୍ଡେ ପଢ଼ିଥିବେ ପିତା ଭାଗୀରଥି ରାଓଙ୍କୁ ଭୁବନେଶ୍ୱର ବଦଳି ଆଦେଶ ହେଲା । ସେତେବେଳକୁ ଭୁବନେଶ୍ୱରରେ ଗୋଟିଏ ସରକାରୀ ମଧ-ଭର୍ଣ୍ଣାକୁଲାର ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ଭୁବନେଶ୍ୱରରେ ପହଞ୍ଚି ପିତା ପୁତ୍ରକୁ ସେହି ବିଦ୍ୟାଳୟରେ ଭର୍ତ୍ତି କରିଦେଲେ । ଇଂରେଜ ସରକାର ପ୍ରବର୍ତ୍ତିତ 'ବିଜ୍ଞାନ-ଭିତ୍ତିକ' ଶିକ୍ଷାପଦ୍ଧତିର ସୂତ୍ରପାତ ହେଲା ମଧୁସୂଦନଙ୍କ ଜୀବନରେ ଏହିଠାରୁ । ପ୍ରାଚ୍ୟ ଓ ପ୍ରତୀଚ୍ୟର ସଙ୍ଗମର ଆରମ୍ଭ ହେଲା ଏହି ବିଦ୍ୟାଳୟରୁ ।

ଐତିହାସିକ ହଣ୍ଟର୍ ସାହେବଙ୍କ ଶିକ୍ଷା ସଂକ୍ରାନ୍ତ ବିବରଣୀରୁ ଜଣାଯାଏ, ରକ୍ଷଣଶୀଳ ଲୋକମାନଙ୍କର ନିରୁତ୍ସାହ ଓ ପ୍ରତିକୂଳ ଉଦ୍ୟମ ଯୋଗୁଁ ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷାର ପ୍ରଗତି ଅତି ଧୀର ମନ୍ଥର ଥିଲା । ୧୮୫୫ରୁ ୧୮୫୯ ମସିହା ମଧ୍ୟରେ ଓଡ଼ିଶାରେ ୧୯ଟି ପ୍ରାଥମିକ ଓ ମଧ-ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ହଣ୍ଟର୍ ସାହେବଙ୍କ ରିପୋର୍ଟରୁ ଆଉରି ମଧ ଜଣାଯାଏ, "୧୮୩୮ ମସିହାରେ ଇଷ୍ଟ୍ ଇଣ୍ଡିଆ କମ୍ପାନୀର ସରକାର ପ୍ରଥମେ ଶିକ୍ଷାକ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ପୁରୀ ନଗରୀରେ ଗୋଟିଏ ଇଂରାଜୀ ଓ ସଂସ୍କୃତ ବିଦ୍ୟାଳୟ ସ୍ଥାପନ କଲେ; କିନ୍ତୁ ସ୍ଥାନୀୟ ଲୋକଙ୍କ ଅଜ୍ଞାନତା ଓ ଧର୍ମାନ୍ଧତାର ବନ୍ୟାରେ ସରକାରୀ ପ୍ରଚେଷ୍ଟା ଭାସିଗଲା । ବିଦ୍ୟାଳୟ ଚଳିଲା ନାହିଁ । ତତ୍ପରେ ୧୮୪୧ ଖ୍ରୀଷ୍ଟାବ୍ଦରେ କଟକରେ ପ୍ରଥମ ଉଚ୍ଚ ଇଂରାଜୀ ସ୍କୁଲ ସ୍ଥାପିତ ହେଲା । ବହୁ ବାଧା ବିଘ୍ନ ଅତିକ୍ରମ କରି ଏହି ବିଦ୍ୟାଳୟ ତିଷ୍ଠିଗଲା ଏବଂ ବହୁକାଳ ପର୍ଯ୍ୟନ୍ତ ଏହାହିଁ ଓଡ଼ିଶାର ପ୍ରଥମ ଶିକ୍ଷାକ୍ଷେତ୍ର ରୂପେ ବିରାଜମାନ ରହିଲା । ଲର୍ଡ ହାର୍ଡ଼ିଞ୍ଜଙ୍କ ଶାସନକାଳରେ ୧୮୪୫ଖ୍ରୀଷ୍ଟାବ୍ଦରେ ଦୁଇଟି ଓଡ଼ିଆ ବିଦ୍ୟାଳୟ ସ୍ଥାପିତ ହେଲା । ୧୮୪୮ରେ ଏହିପରି ଆଉ ଗୋଟିଏ ବିଦ୍ୟାଳୟ ଏବଂ ୧୮୫୩ରେ ବାଲେଶ୍ୱର ଓ ପୁରୀରେ ଗୋଟିଏ ଗୋଟିଏ ଇଂରାଜୀ ବିଦ୍ୟାଳୟ ସ୍ଥାପିତ ହେଲା । ୧୮୫୪ ଖ୍ରୀଷ୍ଟାବ୍ଦରେ ବିଲାତର 'ବୋର୍ଡ ଅଫ୍

କଣ୍ଟ୍ରୋଲ’ର ସଭାପତି (President of the Board of Control) ଉଡ୍ ସାହେବଙ୍କ ବିଖ୍ୟାତ despatch ବା କମ୍ପାନୀର ଭାରତ ସରକାରଙ୍କ ନିକଟକୁ ପ୍ରେରିତ ଶିକ୍ଷାବିଷୟକ ନିର୍ଦ୍ଦେଶପତ୍ର ଭାରତରେ ପାଶ୍ଚାତ୍ୟ ଶିକ୍ଷା ବିସ୍ତାରର ଏକ ନବଯୁଗ ଆନୟନ କଲା ।’’

୧୮୫୩ ଖ୍ରୀଷ୍ଟାବ୍ଦରେ ବଙ୍ଗ-ବିହାର-ଓଡ଼ିଶାର ପ୍ରଥମ ଛୋଟଲାଟ ହାଲିଡେ ସାହେବ ସେ ସମୟର ଭାରତର ବଡ଼ଲାଟଙ୍କୁ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ପ୍ରଣୀତ ଗୋଟିଏ ପ୍ରାଥମିକ ଶିକ୍ଷାର ଯୋଜନା ପ୍ରେରଣ କରିଥିଲେ । ଏହି ଯୋଜନାରେ ଅନ୍ୟାନ୍ୟ ପ୍ରସ୍ତାବ ମଧ୍ୟରେ ବିଦ୍ୟାସାଗର ଲେଖିଥିଲେ, ‘‘କେବଳ ମାତ୍ର ସାମାନ୍ୟ ବଙ୍ଗଳା ଲେଖାପଢ଼ା କିମ୍ବା ଟିକିଏ ଗଣିତବିଦ୍ୟା ଶିଖାଇଲେ ଚଳିବ ନାହିଁ । ଶିକ୍ଷାକୁ ସଂପୂର୍ଣ୍ଣ କରିବାକୁ ହେଲେ ଭୂଗୋଳ, ଇତିହାସ, ଜୀବନ-ଚରିତ, ପାଟୀଗଣିତ, ଜ୍ୟାମିତି, ପଦାର୍ଥବିଦ୍ୟା, ନୀତିବିଜ୍ଞାନ, ରାଷ୍ଟ୍ରବିଜ୍ଞାନ ଓ ଶରୀରତତ୍ତ୍ୱ ପ୍ରଭୃତି ଶିକ୍ଷା ଦେବାର ପ୍ରୟୋଜନ ଅଛି ।’’ ଏହି ବ୍ୟାପକ ଓ ସୁଦୂରପ୍ରସାରୀ ବିଜ୍ଞାନ-ଭିତ୍ତିକ ଶିକ୍ଷା-ପଦ୍ଧତିକୁ ଭାରତ ସରକାର କେତେକାଂଶରେ ଗ୍ରହଣ କରି ନେଇଥିଲେ । ପ୍ରାଥମିକ ଓ ମଧ୍ୟ-ଭର୍ଣ୍ଣାକୁଲାର ବିଦ୍ୟାଳୟମାନଙ୍କରେ ଏହି ଶିକ୍ଷାନୀତି ଯଥାସାଧ୍ୟ ପ୍ରଚଳନ କରାଗଲା । କିନ୍ତୁ ସେତେବେଳେ ମଧୁସୂଦନ ଭୁବନେଶ୍ୱରରେ ପ୍ରତିଷ୍ଠିତ ଯେଉଁ ବିଦ୍ୟାଳୟରେ ପ୍ରବେଶ କଲେ, ତାହାର ପ୍ରଧାନ ତ୍ରୁଟି ଥିଲା– ଏହାର ଶିକ୍ଷକମାନେ ଥିଲେ ସମସ୍ତେ ପ୍ରାୟ ବଙ୍ଗାଳୀ । ଶିକ୍ଷା ବଙ୍ଗଭାଷା ମାଧ୍ୟମରେ ଦିଆଯାଉଥିଲା । ଓଡ଼ିଆରେ ସେତେବେଳେ ଏହି ବିଦ୍ୟାଳୟ ଉପଯୋଗୀ କୌଣସି ପାଠ୍ୟପୁସ୍ତକ ନଥିଲା । ଓଡ଼ିଶାରେ ଅବଶ୍ୟ ଏହା ପୂର୍ବରୁ ଖ୍ରୀଷ୍ଟିଆନ ମିଶନାରୀମାନଙ୍କଦ୍ୱାରା ଓଡ଼ିଆ ଛାପାଖାନା ସ୍ଥାପିତ ହୋଇଥିଲା । ଏମାନେ କଲିକତା ‘ସ୍କୁଲ ବୁକ୍ ସୋସାଇଟି’ଦ୍ୱାରା (School Book Society) ପ୍ରକାଶିତ ବଙ୍ଗଳା ସ୍କୁଲ ପାଠ୍ୟ ପୁସ୍ତକରୁ କେତୋଟି ଓଡ଼ିଆରେ ଅନୁବାଦ କରି ଛପାଇଥିଲେ; କିନ୍ତୁ ସେ ବହିର ଭାଷା ଏପରି ବିଚିତ୍ର ଓ କୌତୁକପୂର୍ଣ୍ଣ ଥିଲା ଯେ, ତାହା ବିଦ୍ୟାଳୟର ଛାତ୍ରମାନେ ମୋଟେ ବୁଝିପାରୁନଥିଲେ ।

ଫକୀରମୋହନଙ୍କ ଆତ୍ମଚରିତ ଏ ସମ୍ପର୍କରେ ଜୀବନ୍ତ ସାକ୍ଷ୍ୟ ଦେଇ କହେ, ‘‘ସେ ସମୟରେ ବାଇବେଲ ଛଡ଼ା ଓଡ଼ିଆରେ ଅନ୍ୟ କୌଣସି ଛାପା ପୁସ୍ତକ ନଥିଲା । କଟକ ମିସନ୍ ପ୍ରେସ ଛଡ଼ା ଓଡ଼ିଶାରେ ଅନ୍ୟ କୌଣସି ଛାପାଖାନା ମଧ୍ୟ ନଥିଲା । ବାଲେଶ୍ୱରରେ ପାଦ୍ରୀସାହେବଙ୍କର ଗୋଟିଏ ସ୍କୁଲ ଥିଲା । ସେଥିରେ ବାଇବେଲ ଛଡ଼ା ଅନ୍ୟ କୌଣସି ପୁସ୍ତକ ପଢ଼ା ହେଉ ନଥିଲା । ମାତ୍ର ପାଦ୍ରୀ ସାହେବଙ୍କ ସ୍କୁଲରେ ଛାପା ପୋଥି ପଢ଼ିଲେ ‘ଜାତି ଯିବ’– ଏହି ଭୟରେ କେହି ହିନ୍ଦୁପିଲା ସେ ସ୍କୁଲରେ ପଢୁନଥିଲେ ।’’ ଇଂରେଜୀରୁ ଓଡ଼ିଆ ଅନୁବାଦ ଏହିପରି କରାଯାଉଥିଲା, ‘‘ଅଛନ୍ତି ଏପରି ଢେର୍ ଲୋକ ପୃଥିବୀରେ ଯେଉଁମାନେ ବିଶ୍ୱାସ କଲେ ନାହିଁ ଅଛନ୍ତି ପରମେଶ୍ୱର ଜଗତରେ ।’’

ଓଡ଼ିଆ ପାଠ୍ୟପୁସ୍ତକ ଅଭାବରେ ଭୁବନେଶ୍ୱରରେ ମଧୁବାବୁଙ୍କୁ ପଢ଼ିବାକୁ ପଡ଼ିଲା ବଙ୍ଗଳା ପାଠ୍ୟପୁସ୍ତକ । ଛାତ୍ରର ଶିକ୍ଷା କୌଣସି ଭାଷା-ମାଧ୍ୟମରେ ହେଉନା କାହିଁକି, ତାହା ପିପଠିଷୁ ଓ ବୁଦ୍ଧିମାନ୍ ଛାତ୍ରର ମେଧା ଓ ବୁଦ୍ଧିର ବିକାଶରେ ଯେ ବିଶେଷ ଅନ୍ତରାୟ ସୃଷ୍ଟି କରିନପାରେ, ତାହାର ପ୍ରମାଣ ନିଜେ ମଧୁସୂଦନ । ତାଙ୍କର ବୁଦ୍ଧିର ବିଚକ୍ଷଣତା, ଅଧ୍ୟୟନରେ ଆଗ୍ରହ ଓ କର୍ତ୍ତବ୍ୟନିଷ୍ଠା ଦେଖି ସେ ବିଦ୍ୟାଳୟର ଶିକ୍ଷକମାନେ ତାଙ୍କ ଉପରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଥିଲେ । ସେତେବେଳେ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଜନୈକ ବଙ୍ଗୀୟ ଭଦ୍ରବ୍ୟକ୍ତି । ତାଙ୍କର ନାମ ଶ୍ରୀହରି ଭଟ୍ଟାଚାର୍ଯ୍ୟ । ଭଟ୍ଟାଚାର୍ଯ୍ୟ ଗୁଣୀ ଶିକ୍ଷକ ଥିଲେ, ଛାତ୍ରମାନଙ୍କର ପ୍ରାଣର କଥା ବୁଝୁଥିଲେ । ସେମାନଙ୍କର ଭବିଷ୍ୟତ ପ୍ରତି ତାଙ୍କର ସଜାଗ ତୀକ୍ଷ୍ଣ ଦୃଷ୍ଟି ଥିଲା । ମଧୁସୂଦନଙ୍କ ପାଠୋନ୍ନତି ଓ ସଦାଚାରରୁ ସେ ବୁଝିପାରିଥିଲେ, ପିଲାଟି ଉଚ୍ଚଶିକ୍ଷା ପାଇଲେ ଜୀବନରେ କିଛି ମହତ୍ କାର୍ଯ୍ୟ କରିପାରନ୍ତା । କିନ୍ତୁ ଭାଗୀରଥିଙ୍କର ଆର୍ଥିକ ଅବସ୍ଥା ଦେଖି ସେ ସାହସ କରି ଏକଥା ତାଙ୍କୁ କହିପାରୁନଥିଲେ ।

ମଧୁସୂଦନ ତାଙ୍କ ଭବିଷ୍ୟତ ଜୀବନରେ ଦିନେ କୃପାପାରାବାର ଭଗବାନ୍‌ଙ୍କଠାରେ ଆତ୍ମସମର୍ପଣ କରିବାକୁ ଯାଇ ପ୍ରେମବିହ୍ୱଳ କଣ୍ଠରେ ଗାଇଥିଲେ—

ସଙ୍ଖାଳି ଏକମାତ୍ର ମୋହର ହେ
ମଙ୍ଗଳଦାତା ବିଶ୍ୱ ଈଶ୍ୱର ହେ ।

x x x

ତୁମ୍ଭ କୃପାର ଡୋର ଟାଣି ଏ ପ୍ରାଣେ ମୋର
ଆଣିଛି ପଦତଳେ ତୁମ୍ଭର ହେ,
ସେ ପ୍ରାଣ ସମର୍ପଣ କଲି ମୁଁ ଅକିଞ୍ଚନ
କର ତାହାକୁ ଚିରକିଙ୍କର ହେ ।

ସେହି 'ଅଗତିର ଗତି' ବିଶ୍ୱବିଧାତା ଶିଶୁ ମଧୁସୂଦନଙ୍କ ଉପରେ କୃପାକଣିକା ବର୍ଷଣ କରି ତାଙ୍କ ଜୀବନରେ ଆଶାର ଉଜ୍ଜ୍ୱଳ ବର୍ତ୍ତିକା ଜାଳିଦେଲେ । ଉଚ୍ଚଶିକ୍ଷାର ପଥ ସୁଗମ ହେଲା । ଭାଗୀରଥି ଦୁର୍ଭାବନାରୁ ମୁକ୍ତିଲାଭ କଲେ ।

ସେ ଆଶାତୀତ ଦୈବ ସୁଯୋଗଟି ଆସିଲା ବଡ଼ ଆଚମ୍ବିତ ଓ ଆକସ୍ମିକ ଭାବରେ । ସେତେବେଳେ ଉଡ୍ରୋ ସାହେବ ଥିଲେ ବିଦ୍ୟାଳୟଗୁଡ଼ିକର ସର୍ବୋଚ୍ଚ ପରିଦର୍ଶକ କର୍ମଚାରୀ । ତାଙ୍କର ଇଚ୍ଛା ହେଲା ଭୁବନେଶ୍ୱର ନିକଟବର୍ତ୍ତୀ ଇତିହାସ-ପ୍ରସିଦ୍ଧ ଖଣ୍ଡଗିରି ଓ ଉଦୟଗିରି ପାହାଡ଼ ଦେଖିବାକୁ । ପାହାଡ଼ ଦେଖିସାରି ଭୁବନେଶ୍ୱର ବିଦ୍ୟାଳୟ ପରିଦର୍ଶନ କରିବାକୁ ଗଲେ । ସାହେବ ଲୋକ, ରହିବେ କେଉଁଠାରେ ? ମହାଭାଳେଣି ଆସି ଉପସ୍ଥିତ । ପ୍ରଧାନ ଶିକ୍ଷକ ମହୋଦୟ କୌଣସି ଉପାୟ ନଦେଖି ଭୁବନେଶ୍ୱର

ପୂଲିସ ଥାନାରେ ସାହେବଙ୍କ ରହିବା ଓ ଖିଆପିଆର ବ୍ୟବସ୍ଥା କରିଦେଲେ । ସାହେବ ହେଲେ ଥାନାର ବିଶିଷ୍ଟ ଅତିଥି । ଅତିଥି-ସତ୍କାର ଦାୟିତ୍ୱ ପଡ଼ିଲା ଜମାଦାର ଭାଗୀରଥିଙ୍କ ଉପରେ । ଭାଗୀରଥି ବେଶି ପାଠଶାଠ ପଢ଼ିନଥିଲେ କ'ଣ ହେଲା, ସାଂସାରିକ ବିଷୟ ବୁଦ୍ଧି ତାଙ୍କର ମନ୍ଦ ନଥିଲା । ଆତିଥ୍ୟ ଓ ସୌଜନ୍ୟପୂର୍ଣ୍ଣ ବ୍ୟବହାରରେ ସେ ସାହେବଙ୍କୁ ସନ୍ତୁଷ୍ଟ କରିଦେଇଥିଲେ । ତା'ପରେ ସାହେବ ବିଦ୍ୟାଳୟ ପରିଦର୍ଶନ କରିବାକୁ ଗଲେ । ଭାଗୀରଥି ତାଙ୍କ ସାଙ୍ଗରେ ଯାଇଥିଲେ । ବିଦ୍ୟାଳୟରେ ମଧୁସୂଦନଙ୍କୁ ଦେଖି ସେ ତାଙ୍କ ଚେହେରାରେ ବିମୋହିତ ହୋଇ ପଚାରିଲେ, 'ଏଇଟି କାହା ପୁଅ ?' ଭାଗୀରଥି ହିନ୍ଦୀରେ ଉତ୍ତର ଦେଲେ, 'ଏଇଟି ମୋ ପୁଅ ।' ଭାଗୀରଥିଙ୍କ ଉପରେ ତ ସାହେବ ଆଗରୁ ସନ୍ତୁଷ୍ଟ ଥିଲେ; ଏ ସୁନ୍ଦର ପିଲାଟି ତାଙ୍କର ପୁଅ, ଏ କଥା ଶୁଣି ତାଙ୍କର ଆନନ୍ଦ ଦ୍ୱିଗୁଣିତ ହୋଇଗଲା । ସେ ମନେ ମନେ କ'ଣ ଭାବି କହିଲେ, ''ଆଚ୍ଛା, ତୁମ ପୁଅକୁ ପାଠ ପରୀକ୍ଷା କରିବା ।'' ପ୍ରଥମେ ଭାରତର ମାନଚିତ୍ର ଦେଖାଇ ଭୂଗୋଳରୁ କେତେଗୁଡ଼ିଏ ପ୍ରଶ୍ନ ପଚାରିଲେ । ମଧୁସୂଦନ ପ୍ରଶ୍ନଗୁଡ଼ିକର ଉତ୍ତର ନିର୍ଭୀକ ଭାବରେ ଦେଲେ । ତା'ପରେ ଆରମ୍ଭ ହେଲା ଗଣିତ-ପରୀକ୍ଷା । ମଧୁସୂଦନ ସବୁ ଗଣିତଗୁଡ଼ିକ ଠିକ୍‌ଠାକ୍ କରି କଷିଦେଲେ । ତା'ପରେ ସେ ଭାଗୀରଥିଙ୍କୁ ପାଖକୁ ଡାକି କହିଲେ, ''ଏ ପିଲାଟିକୁ ପୁରୀ ଜିଲାସ୍କୁଲକୁ ପଠାଇଦିଅ । ଏ ଯେପରି ସେଠାରେ ପାଞ୍ଚବର୍ଷ ବିନା ବେତନରେ ପଢ଼ିପାରିବ, ମୁଁ ତାହାର ବିହିତ ବ୍ୟବସ୍ଥା କରୁଛି ।'' ବ୍ୟବସ୍ଥା କାର୍ଯ୍ୟରେ ପରିଣତ ହେଲା । ଏ ସୁବର୍ଣ୍ଣ ସୁଯୋଗ ହାତଛଡ଼ା କରିବା ବିବେକୀର କାର୍ଯ୍ୟ ନୁହେଁ ଭାବି ଭାଗୀରଥି ପୁଅକୁ ପୁରୀ ଜିଲ୍ଲାସ୍କୁଲରେ ଭର୍ତ୍ତି କରିବାକୁ ଚେଷ୍ଟା କଲେ ।

—

# ତୃତୀୟ ଅଧ୍ୟାୟ

## ପୁରୀ ଜିଲାସ୍କୁଲର ଛାତ୍ର

ଭାଗୀରଥିଙ୍କର ପଥୁରିଆ ସାହି ଘରେ ସେତେବେଳେ କେହି ନଥିଲେ । ପୁରୀର ବଳରାମଜୀ ନାମରେ ଜଣେ ସାଧୁ ବ୍ୟକ୍ତି ତାଙ୍କର ଘନିଷ୍ଠ ବନ୍ଧୁ ଥିଲେ । ବଳରାମଜୀ ବଡ଼ ଭଗବଦ୍‌ବିଶ୍ୱାସୀ ଥିଲେ । ମଧୁସୂଦନଙ୍କୁ ତାଙ୍କରି ଘରେ ରଖିବାର ସ୍ଥିର ହେଲା । ସେତେବେଳକୁ ଅନୁମାନ, ତାଙ୍କୁ ନଅ ବର୍ଷ ବୟସ ।

ଅବନ୍ତୀ ଦେବୀ ପିତାଙ୍କର ସ୍ମୃତିତର୍ପଣ କରିବାକୁ ଯାଇ ଏ ସଂପର୍କରେ ଲେଖିଅଛନ୍ତି, ସେ ପିତାଙ୍କ ମୁହଁରୁ ଶୁଣିଛନ୍ତି, ସେ ଯେଉଁ ଦିନ ଭୁବନେଶ୍ୱରରୁ ଆସି ବଳରାମଜୀଙ୍କୁ ତାଙ୍କ ଘର ଅଗଣାରେ ହାତଯୋଡ଼ି ନମସ୍କାରକଲେ, ବଳରାମଜୀ ସ୍ନେହବିହ୍ୱଳ ହୋଇ ତାଙ୍କୁ ଗାଢ଼ ଆଲିଙ୍ଗନ କରି ଜଗନ୍ନାଥଙ୍କ ଦେଉଳର ନୀଳଚକ୍ର ଆଡ଼କୁ ଅଶ୍ରୁପୂର୍ଣ୍ଣ ଚକ୍ଷୁରେ ଚାହିଁ କହିଲେ, ''ହେ ଚକ୍ରଧର, ଏହି ବାଳକକୁ ତୁମ୍ଭର ଚକ୍ର ଉହାଡ଼ରେ ରକ୍ଷାକର ।''

ଶିକ୍ଷାର ଉନ୍ନତି ନିମନ୍ତେ ଭୁବନେଶ୍ୱରଠାରୁ ପୁରୀ ପ୍ରଶସ୍ତତର କ୍ଷେତ୍ର । ଜିଲା ସ୍କୁଲରେ ବହୁତ ଛାତ୍ର ଏବଂ ଅନେକ ଉଚ୍ଚଶିକ୍ଷାପ୍ରାପ୍ତ ଶିକ୍ଷକ । କିନ୍ତୁ ମଧୁସୂଦନ ପିଲାଙ୍କ ଦୁଷ୍ଟାମି ଓ ଗଣ୍ଡଗୋଳ ମଧ୍ୟରେ ନଥା'ନ୍ତି । ଅଧ୍ୟୟନକୁ ସେ ଏହି ସମୟରୁ ଜୀବନର ପରମବ୍ରତ ବୋଲି ଧରିନେଇଥିଲେ । ଜ୍ଞାନତୃଷ୍ଣା ତାଙ୍କଠାରେ ଥିଲା ସହଜାତ ଓ ସ୍ୱତଃସ୍ଫୂର୍ତ୍ତ । ଶିକ୍ଷକ କ୍ଲାସରେ ନଥିଲାବେଳେ ପିଲାମାନେ ଗୋଳମାଳ ଓ ପାଣ୍ଡିତୁଣ୍ଡ କରି ଘର ଭାଙ୍ଗିପକାନ୍ତି । କିନ୍ତୁ ମେଧାବୀ ମଧୁସୂଦନ ବହିଖଣ୍ଡିଏ ଧରି ମନୋଯୋଗ ସହିତ ତାଙ୍କ ସ୍ଥାନରେ ବସି ପଢ଼ା ପ୍ରସ୍ତୁତ କରୁଥା'ନ୍ତି । ସାଙ୍ଗସାଥୀମାନେ ଡାକିଲେ ସେ ବିରକ୍ତ ହୁଅନ୍ତି । ପିଲାଦିନରୁ ତାଙ୍କର ଏ ଗମ୍ଭୀରତା ଦେଖି ସେମାନେ ବିସ୍ମିତ ହୁଅନ୍ତି । ଗଭୀର ଅଭିନିବେଶ ସହକାରେ ଓ ନିୟମିତ ଭାବରେ ସେ ପଢ଼ାପଢ଼ି କରୁଥିବାରୁ ପ୍ରାୟ ପ୍ରତ୍ୟେକ ବର୍ଷ ବାର୍ଷିକ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ ।

ସେତେବେଳେ ପୁରୀରେ ବକ୍‌ସଓୟେଲ ନାମକ ଜଣେ ଇଂରେଜ ଜିଲା ମାଜିଷ୍ଟ୍ରେଟ ଥିଲେ । ସେ ଶାସକ ହେଲେ ମଧ୍ୟ ଜଣେ ଶିକ୍ଷାପ୍ରେମୀ ଥିଲେ । ପୁରୀ ଜିଲା ସ୍କୁଲର ଛାତ୍ରମାନଙ୍କର ପାଠୋନ୍ନତି ନିମନ୍ତେ ସେ ଗୋଟିଏ ସୁନ୍ଦର ପ୍ରତିଯୋଗିତାମୂଳକ ବ୍ୟବସ୍ଥା କରିଥିଲେ । ସେହି ବ୍ୟବସ୍ଥାନୁସାରେ ପ୍ରତିବର୍ଷ ଚାରୋଟି ବିଷୟରେ ପ୍ରତ୍ୟେକରୁ ପାଞ୍ଚୋଟି କରି କୋଡ଼ିଏଟି ପ୍ରଶ୍ନ ପଚରାଯିବ । ଯେଉଁ ଛାତ୍ର ଏସବୁ ପ୍ରଶ୍ନର ଠିକ୍ ଉତ୍ତର ଦେବ, ତାହାକୁ ପ୍ରତ୍ୟେକ ଉତ୍ତର ନିମନ୍ତେ ପାଞ୍ଚଟଙ୍କା କରି ସର୍ବମୋଟ ଶହେ ଟଙ୍କା ପୁରସ୍କାର ଦିଆଯିବ ।

ଛାତ୍ରମାନଙ୍କ ମଧ୍ୟରେ ମଧୁସୂଦନ କେବଳ କ୍ରମାନ୍ୱୟରେ ତିନି ବର୍ଷ କାଳ ଏହି ପୁରସ୍କାର ଅର୍ଜନ କରି ବୁଦ୍ଧିମତ୍ତା, ଅଧ୍ୟବସାୟ ଓ କୃତିତ୍ୱର ଅସାମାନ୍ୟ ପରିଚୟ ଦେଇଥିଲେ ।

ଏହାଛଡ଼ା ରେଉଆ ନାମକ ଦେଶୀୟ ରାଜ୍ୟର ରାଜା ୪୦।୫୦ ଭରି ଓଜନର ଗୋଟିଏ ରୌପ୍ୟ ପଦକ ଜିଲାସ୍କୁଲର କର୍ତ୍ତୃପକ୍ଷଙ୍କୁ ଏହି ସର୍ତ୍ତରେ ଦେଇଥିଲେ ଯେ, ପୁରୀ ଜିଲ୍ଲାସ୍କୁଲର ଯେଉଁ ଛାତ୍ର ବାର୍ଷିକ ପରୀକ୍ଷାରେ ସବୁ ବିଷୟରେ ପ୍ରଥମ ସ୍ଥାନ ଅଧିକାର କରିବ, ତାହାକୁ ଏହି ପଦକଟି ସାତଦିନ ନିମନ୍ତେ ଦିଆଯିବ । ତା'ପରେ ସେହି ଛାତ୍ର ପଦକଟିକୁ ସ୍କୁଲକୁ ଫେରାଇଦେବ । କିନ୍ତୁ ଯେଉଁ ଛାତ୍ର କ୍ରମାନ୍ୱୟରେ ତିନି ବର୍ଷ ଏହି ପଦକ ଲାଭ କରିବ, ପଦକଟି ସେତେବେଳେ ତା'ର ନିଜର ହୋଇଯିବ । ଏଇ ସର୍ତ୍ତାନୁସାରେ ମଧୁସୂଦନ ଏହି ପଦକ ଦୁଇବର୍ଷ ପାଇଥିଲେ; କିନ୍ତୁ ତୃତୀୟ ବର୍ଷ ହଠାତ୍ ଶରୀର ଅସୁସ୍ଥ ହେବାରୁ ପ୍ରବେଶିକା ପରୀକ୍ଷା ଦେଇ ପାରିଲେ ନାହିଁ । ତା' ପରବର୍ଷ ପରୀକ୍ଷା ଦେଇ ପୁରୀ ଜିଲ୍ଲାସ୍କୁଲରୁ ପ୍ରଥମ ସ୍ଥାନ ଅଧିକାର କରି ମାସିକ ୧୦ ଟଙ୍କା ବୃତ୍ତି ଲାଭ କରିଥିଲେ । ପରବର୍ଷ ହରିକୃଷ୍ଣ ଦାସ ନାମରେ ଜଣେ ଛାତ୍ର ପୁରୀ ଜିଲ୍ଲାସ୍କୁଲରୁ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ମାସିକ ଟ ୧୫ ବୃତ୍ତି ପାଇଲେ ଏବଂ ଏହି ପଦକଟି ଦାବି କଲେ । କିନ୍ତୁ ଗୁଣଗ୍ରାହୀ ଓ ନ୍ୟାୟବାନ୍ ବକ୍‌ସଓୟେଲ ସାହେବଙ୍କ ନିର୍ଦ୍ଦେଶମତେ ଏହା ମଧୁସୂଦନଙ୍କୁ ଦେବାର ସ୍ଥିର କରାଗଲା । କିନ୍ତୁ ଯେଉଁଦିନ ମଧୁସୂଦନଙ୍କୁ ଏହି ପଦକଟି ଦିଆଯାଇଥା'ନ୍ତା, ସେହି ଦିନ କେହି ଜଣେ ବିଦ୍ୱେଷ-ଜର୍ଜ୍ଜରିତ ନୀଚମନା ଛାତ୍ର ସ୍କୁଲଘରେ ନିଆଁ ଲଗାଇଦେଲା । ଫଳରେ ରୌପ୍ୟ ପଦକ ସହିତ ସ୍କୁଲର ଅନେକ ମୂଲ୍ୟବାନ୍ ବହିପତ୍ର ଓ ଆସବାବପତ୍ର ପୋଡ଼ି ଛାରଖାର ହୋଇଗଲା ।

ମଧୁସୂଦନ କେବଳ ପୁସ୍ତକଗତପ୍ରାଣ କିମ୍ବା ଗ୍ରନ୍ଥକୀଟ ନଥିଲେ । ସବୁ ଦିଗକୁ ତାଙ୍କର ଦୃଷ୍ଟିଥିଲା । ପରର ଦୁଃଖ ଦେଖିଲେ ତାଙ୍କର କୋମଳ ପ୍ରାଣ ବ୍ୟଥାରେ ଥରିଉଠୁଥିଲା । ବାଲ୍ୟାବସ୍ଥାରୁ ସେ ମଧ୍ୟ ଧର୍ମପରାୟଣ ଥିଲେ । ମନୁଷ୍ୟ ମାତ୍ରେ ଭଗବାନଙ୍କର ସନ୍ତାନ, ଏ ବିଶ୍ୱାସ ତାଙ୍କର ଛାତ୍ରାବସ୍ଥାର ପ୍ରଥମ ପର୍ଯ୍ୟାୟରୁ ଅଙ୍କୁରିତ ହୋଇଥିଲା । ଏ ଜିନିଷ କିଏ କାହାକୁ ଶିଖାଏ ନାହିଁ । ଗୋପବନ୍ଧୁଙ୍କୁ କିଏ ଶିଖାଇନଥିଲା ଯେ, ସେ ନିଜ ଜୀବନକୁ ତୁଚ୍ଛ କରି ଦୀନଦୁଃଖୀମାନଙ୍କର ସେବାରେ ଆତ୍ମ-ବିସର୍ଜ୍ଜନ କରିବେ । ଭକ୍ତକବି ମଧୁସୂଦନ ଓ ଉତ୍କଳମଣି ଗୋପବନ୍ଧୁଙ୍କ ମଧ୍ୟରେ ମାନବିକ ମହତ୍ତ୍ୱର ବହୁ ସାମଞ୍ଜସ୍ୟ ବିଦ୍ୟମାନ । ସେ ଆଲୋଚନା ଯଥାସ୍ଥାନରେ କରାଯିବ ।

୧୮୬୬ରୁ ୧୮୬୯ ଏହି ତିନୋଟି ବର୍ଷ ଉତ୍କଳ ଇତିହାସରେ ଅବିସ୍ମରଣୀୟ । ଏକ ପ୍ରଳୟଙ୍କର ଦୁର୍ଭିକ୍ଷରେ ଓଡ଼ିଶାର ଜାତୀୟ ଜୀବନର ମେରୁଦଣ୍ଡ ଏହି ତିନିବର୍ଷ ମଧ୍ୟରେ ଭାଜି ସତେ ଯେପରି ଚୂରମାର ହୋଇଗଲା । ଏହାର ସୁପରିଚିତ ନାମ 'ନ-ଅଙ୍କ' । ସରକାରୀ ହିସାବ ଅନୁସାରେ ଏହି ଦୁର୍ଭିକ୍ଷ ଦାଉରେ ଓଡ଼ିଶାର ଏକ-ତୃତୀୟାଂଶ ଲୋକ କ୍ଷୁଧା ଯନ୍ତ୍ରଣାରେ ଛଟପଟ ହୋଇ 'ହା ଅନ୍ନ' ଚିତ୍କାରରେ ଆକାଶ ମେଦିନୀ ବିଦୀର୍ଣ୍ଣ କରି ରାସ୍ତାଘାଟରେ ପୋକମାଛି ପରି ଟଳିପଡ଼ିଥିଲେ । କବି ରାଧାନାଥ କହିଛନ୍ତି—

''ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର
ପାରିଲେ ଫିଙ୍ଗି ସେ ଲଭନ୍ତା ନିସ୍ତାର ।''

ରାଧାନାଥ ନନ୍ଦିକା ପ୍ରେମର ଦୁଃସହ ଜ୍ୱାଳାରେ ବ୍ୟଥିତ ହୋଇ ଏହା କହିଥିଲେ । କିନ୍ତୁ ଏ ପ୍ରାଣସ୍ପର୍ଶୀ ଉକ୍ତିଟି ଏ କ୍ଷେତ୍ରରେ ମଧ୍ୟ ସମାନ ଭାବରେ ପ୍ରଯୋଜ୍ୟ । 'ନ-ଅଙ୍କ'ର ଏ ଯେଉଁ ଭୟାବହ ମର୍ମନ୍ତୁଦ ଜୀବନଘାତୀ ସ୍ମୃତି, ଏହା ଓଡ଼ିଶାର ଜାତୀୟ ଜୀବନରେ ଏକ ଅଲିଭା ଗାର । ଏ ସ୍ମୃତି ସହଜରେ ଲିଭିବ ନାହିଁ । ଏ ଜାତିର କବି, ଶିଳ୍ପୀ ଓ ଔପନ୍ୟାସିକ ଏପର୍ଯ୍ୟନ୍ତ ଏହାକୁ ଭୁଲିପାରିନାହାନ୍ତି ।

ଏ ନ'ଅଙ୍କର ପ୍ରତ୍ୟକ୍ଷଦର୍ଶୀ ଜାତୀୟଭାବାପନ୍ନ ଫକୀରମୋହନ ତାଙ୍କ 'ଆତ୍ମଚରିତ'ରେ ଏହି ଦୁର୍ଭିକ୍ଷର ଯେଉଁ କରୁଣ, ପ୍ରାଞ୍ଜଳ ଓ ବାସ୍ତବ ଚିତ୍ର ଅଙ୍କନ କରିଅଛନ୍ତି, ତାହା ପାଠକଲେ ଏବେ ସୁଦ୍ଧା ପାଠକ ଭୟରେ ଶିହରିଉଠେ । ତାହାଠାରୁ ଆଉରି ମର୍ମବିଦାରକ କଥା— ଯେତେବେଳେ ଲୋକେ ଭାତମୁଠାକ ସକାଶେ ପ୍ରାଣବିକଳରେ ଏଣେତେଣେ ପଳାଉଥିଲେ କିମ୍ବା ରାସ୍ତାଘାଟରେ ମରି ଶୋଉଥିଲେ, ସେତେବେଳେ ଆମ୍ଭମାନଙ୍କର 'ସ୍ୱନାମଧନ୍ୟ' ଇଂରେଜ ସରକାରଙ୍କଠାରୁ ଓଡ଼ିଶାର କମିଶନର ସାହେବଙ୍କ ନିକଟକୁ ପରିହାସ ଓ ରସିକତାପୂର୍ଣ୍ଣ ଟେଲିଗ୍ରାମ୍ ଆସିଥିଲା— ''ତୁମ୍ଭେ ଚାଉଳ ପଠାଇବା ସକାଶେ ଟେଲିଗ୍ରାମ୍ କରିଅଛ, ମାତ୍ର ଟେଲିଗ୍ରାମ୍‌ରେ ତ ଚାଉଳ ପଠାଯାଇ ନପାରେ ।''

ଫକୀରମୋହନ ଲେଖିଛନ୍ତି, ''ଫଗୁଣ ଆରମ୍ଭଠାରୁ ଲୋକେ ମରିବାର ଆରମ୍ଭ ହେଲା । ମୃତ୍ୟୁସଂଖ୍ୟା ଦିନକୁ ଦିନ ବଢ଼ିବାକୁ ଲାଗିଲା । ବାଟ, ଘାଟ, ତୋଠ, ପଡ଼ିଆ, ଅରଣ୍ୟ— ଯେଉଁଠାକୁ ଯାଅ, ସେଠାରେ ମଡ଼ା ପଡ଼ିଥିବାର ଦେଖିବ । କ୍ରମଶଃ ମୃତ-ଶରୀରରେ ଦେଶଟା ଯେମନ୍ତ ଛାଇହୋଇଗଲା ।''

ବାଲେଶ୍ୱର ଜିଲା ଏ ଦୁର୍ଭିକ୍ଷରେ ବିଶେଷଭାବରେ କ୍ଷତିଗ୍ରସ୍ତ ହୋଇଥିଲେ ସୁଦ୍ଧା ଓଡ଼ିଶାର ଅନ୍ୟାନ୍ୟ ଜିଲାରେ ମଧ୍ୟ ବହୁସଂଖ୍ୟାରେ ଏହି ଦୁର୍ଭିକ୍ଷ-ପ୍ରପୀଡ଼ିତ ଲୋକେ ମୁଠେ ଅନ୍ନ ପାଇଁ ନିରାଶ ପ୍ରାଣରେ ଏଣେତେଣେ ବୁଲୁଥିବାର ଦେଖାଯାଉଥିଲା । ଏମାନଙ୍କର ଏ ହୃଦୟବିଦାରକ ଦୁଃଖ ଦେଖି କୋମଳମତି ମଧୁସୂଦନଙ୍କ ପ୍ରାଣ ଶୋକରେ ହାହାକାର କରିଥିଲା । ଏହି ସମୟରେ ପୁରୀରେ ସରକାରଙ୍କ ପକ୍ଷରୁ ଦୁର୍ଭିକ୍ଷଗ୍ରସ୍ତ ଲୋକମାନଙ୍କ ମଧ୍ୟରେ ଚାଉଳ ବାଣ୍ଟିବାର ବ୍ୟବସ୍ଥା କରାଯାଇଥିଲା । ସୁପଣ୍ଡିତ ମହନ୍ତ ନାରାୟଣ ଦାସ ଏହି ଚାଉଳ ବିତରଣ କାର୍ଯ୍ୟରେ ଆଗଭର ହୋଇ ବାହାରିଥିଲେ । ତାଙ୍କରି ଅନୁରୋଧକ୍ରମେ ଚାଉଳ ବାଣ୍ଟିବା ଭାର ଦ୍ୱିତୀୟ ଶ୍ରେଣୀର ଛାତ୍ର ମଧୁସୂଦନଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ମଧୁସୂଦନ ନିଷ୍ପାପର ଭାବରେ ଏହି ଜନହିତକର-କାର୍ଯ୍ୟ-ସାଧନ କରି ସେତେବେଳେ ଜିଲ୍ଲାସ୍କୁଲର ଶିକ୍ଷକ ଓ ଜନ-ସାଧାରଣଙ୍କର ସନ୍ତୋଷଭାଜନ ହୋଇଥିଲେ । ମଧୁସୂଦନ ମୃତ୍ୟୁ ପର୍ଯ୍ୟନ୍ତ ଏହି ପବିତ୍ର ଜନସେବା

ଭାବରେ ଉଦ୍‌ବୁଦ୍ଧ ଥିଲେ । ଦୁଃଖୀ-ରଙ୍କୀଭିଖାରି, କେହି ତାଙ୍କ ପାଖରୁ ଶୂନ୍ୟହସ୍ତରେ ଫେରୁ ନଥିଲେ । ରାମକୃଷ୍ଣ ପରମହଂସଙ୍କ 'ଶିବଜ୍ଞାନରେ ଜୀବସେବା' ନୀତି ତାଙ୍କ ଧର୍ମନୀତିର ଅପରିହାର୍ଯ୍ୟ ଅଙ୍ଗ ଥିଲା ।

ମଧୁସୂଦନ ଜିଲାସ୍କୁଲରେ ନାମ ଲେଖାଇବାର କିଛିଦିନ ପରେ ବିପତ୍ନୀକ ଭାଗୀରଥି ଦ୍ୱିତୀୟ ଦାର ପରିଗ୍ରହ କଲେ । ଏହି ପତ୍ନୀଙ୍କ ନାମ ତୁଳସୀବାଈ । ସେ ମଧୁସୂଦନଙ୍କଠାରୁ ଦୁଇ ତିନିବର୍ଷ ବଡ଼ ଥିଲେ । କିନ୍ତୁ ମଧୁସୂଦନ ଓ ଜଗନ୍ନାଥଙ୍କ ପ୍ରତି ତାଙ୍କର ବ୍ୟବହାର ସ୍ନେହପୂର୍ଣ୍ଣ ଥିଲା । ବିମାତା ଯଥାସମୟରେ ଭାଗୀରଥିଙ୍କ ଘରକୁ ଆସିଲେ । ଭାଗୀରଥିଙ୍କ ଭଙ୍ଗାଘର ପୁଣି ସଜାଡ଼ିହୋଇଗଲା । ମୁମୂର୍ଷୁ ପ୍ରାଣରେ ହାସ୍ୟ ଅଙ୍କୁରି ଉଠିଲା । ମଧୁସୂଦନ ବଳରାମଜୀଙ୍କ ଘରୁ ତାଙ୍କ ପଥୁରିଆ ସାହୀ ଘରକୁ ଫେରିଆସିଲେ ।

ପ୍ରାୟ ବାରବର୍ଷ ବୟସରେ ପୁରୀ ନିବାସୀ ବଳରାମଜୀଙ୍କ ଦ୍ୱିତୀୟା କନ୍ୟା ଚମ୍ପାବାଈଙ୍କ ସହିତ ମଧୁସୂଦନଙ୍କର ପରିଣୟ କାର୍ଯ୍ୟ ସମ୍ପନ୍ନ ହୋଇଥିଲା । ମହାରାଷ୍ଟ୍ରୀୟ ରୀତି ଅନୁସାରେ ପତିଗୃହରେ ଚମ୍ପାବାଈଙ୍କର ନାମ ହେଲା 'ପଦ୍ମାବାଈ' ।

ପୁରୀ ଜିଲାସ୍କୁଲର ଛାତ୍ର ଥିବାବେଳେ ମଧୁସୂଦନଙ୍କ ଜୀବନରେ ଗୋଟିଏ ଉଲ୍ଲେଖଯୋଗ୍ୟ ଘଟନା ହେଉଛି କବି ରାଧାନାଥଙ୍କ ସହିତ ତାଙ୍କର ପରିଚୟ । ଏପରି ଅକପଟ ଆତ୍ମୀୟତା ଓ ଗଭୀର ବନ୍ଧୁତା ସଚରାଚର କ୍ୱଚିତ୍ ଦେଖିବାକୁ ମିଳେ । ଗୁରୁ-ଶିଷ୍ୟର ଏପରି ଅଚ୍ଛେଦ୍ୟ ସମ୍ପର୍କ ଏ ଯୁଗରେ ସ୍ୱପ୍ନର ଅତୀତ ବସ୍ତୁ । ରାଧାନାଥ ସେତେବେଳେ ବାଲେଶ୍ୱର ଜିଲାସ୍କୁଲର ଶିକ୍ଷକ । ସେ ଥରେ ଜଗନ୍ନାଥଦର୍ଶନକୁ ପୁରୀ ଆସିଥିଲେ । ଦିନେ ସ୍ଥାନୀୟ ଜିଲାସ୍କୁଲ ଦେଖିବାକୁ ଗଲେ । ସେଦିନ ରାଧାନାଥ ଦେଖିଲେ, ଗୋଟିଏ ବାଳକ ନିବିଷ୍ଟ ମନରେ ପୁସ୍ତକ ପାଠକରୁଛି । ପାଖରେ ବସିଥିବା ପିଲାଟିଏ ତାଙ୍କ ହାତ ଝୁଙ୍କାଇଦେଇ ତାଙ୍କୁ କ'ଣ କହିବାକୁ ଚେଷ୍ଟା କରୁଛି । ମାତ୍ର ପଠନରତ ବାଳକଟି ବିରକ୍ତ ହୋଇ କହିଲା, "Don't bother me now" (ମତେ ବର୍ତ୍ତମାନ ବିରକ୍ତ କରନାହିଁ) । ରାଧାନାଥ ଏ ଦୃଶ୍ୟ ଦେଖି ବିସ୍ମିତ ହେଲେ । ପିଲାଟିକୁ ପାଖକୁ ଡାକି ତା'ର ପରିଚୟ ପଚାରି ବୁଝିଲେ, ସେ ମଧୁସୂଦନ ।

ଏ ଘଟନାର କେତେକ ମାସ ପରେ ରାଧାନାଥ ବାଲେଶ୍ୱର ଜିଲାସ୍କୁଲରୁ ପୁରୀ ଜିଲାସ୍କୁଲର ଦ୍ୱିତୀୟ ଶିକ୍ଷକରୂପେ ନିଯୁକ୍ତ ହୋଇ ପୁରୀକୁ ଆସିଲେ । ସେ ସ୍କୁଲରେ ଇତିହାସ ଓ ଭୂଗୋଳ ପଢ଼ାଇଲେ । ପୂର୍ବବର୍ଷ ରୋଗାକ୍ରାନ୍ତ ହୋଇପଡ଼ିଥିବା ଯୋଗୁ ମଧୁସୂଦନ ପରୀକ୍ଷା ଦେଇପାରିନଥିଲେ । କ୍ଲାସରେ ଆଉ ବର୍ଷେ ପଢୁଥିଲେ । ଏ ମଙ୍ଗଳମୟ 'ଦୁର୍ଯ୍ୟୋଗ' ସତେ ଯେପରି ବିଧି-ନିର୍ଦ୍ଦିଷ୍ଟ । ରାଧାନାଥ ମଧୁସୂଦନଙ୍କୁ ଛାତ୍ରରୂପେ ଲାଭକରି ଯେପରି ଯତ୍‌ପରୋନାସ୍ତି ଆପ୍ୟାୟିତ, ସେହିପରି ମଧୁସୂଦନ ରାଧାନାଥଙ୍କୁ ଗୁରୁରୂପେ ପାଇ ନିଜକୁ ପରମ ଭାଗ୍ୟବାନ୍ ମନେକରିଥିଲେ । 'କୈଶୋର ଗୁରୁ' ରାଧାନାଥଙ୍କୁ ମଧୁସୂଦନ ନିଜର ସୌଜନ୍ୟପୂର୍ଣ୍ଣ ଶିଷ୍ଟାଚରଣ,

ଅଧ୍ୟୟନରେ ଗଭୀର ନିଷ୍ଠାପରତା ଓ ତୀକ୍ଷ୍ଣ ବୁଦ୍ଧିମତ୍ତାଦ୍ୱାରା ଅଳ୍ପ ସମୟ ମଧ୍ୟରେ ବିମୋହିତ କରିପକାଇଲେ । ଏ ବର୍ଷ ମଧ୍ୟ ମଧୁସୂଦନଙ୍କର ସନ୍ଦେହ ଥିଲା, ଶେଷ ପରୀକ୍ଷା ସେ ହୁଏତ ପୂର୍ବବର୍ଷ ପରି ଦେଇପାରିବେନାହିଁ । କିନ୍ତୁ ଏ ସନ୍ଦେହ ଓ ନୈରାଶ୍ୟ ତାଙ୍କ ମନରୁ ଅପସାରଣ କରି ରାଧାନାଥ ତାଙ୍କ ଦୋଦୁଲ୍ୟମାନ ଚିତ୍ତରେ ଅପୂର୍ବ ଶକ୍ତି ଓ ସାହସର ସଞ୍ଚାର କରିଥିଲେ । ମଧୁସୂଦନ ଅଙ୍କରେ ଟିକିଏ ଦୁର୍ବଳ ଥିଲେ । ରାଧାନାଥ ପ୍ରତିଦିନ ତାଙ୍କ ଘରକୁ ଯାଇ ତାଙ୍କୁ ଅଙ୍କ ପଢ଼ାଇଦେଇ ଆସୁଥିଲେ । ଗୁରୁ-ଶିଷ୍ୟ ସମ୍ପର୍କ ଦିନକୁ ଦିନ ଚନ୍ଦ୍ରକଳାପରି ବର୍ଦ୍ଧିତ ଓ ବିକଶିତ ହେବାରେ ଲାଗିଲା । ମୃତ୍ୟୁ ପରେ ମଧ୍ୟ ସେ ସମ୍ପର୍କ ଛିନ୍ନହୋଇନାହିଁ – 'ମରଣେ ଲଭିଲେ ଏକତ୍ର ସମାଧି' ଏହାହିଁ ତା'ର ଚୂଡ଼ାନ୍ତ ପ୍ରମାଣ ।

କିନ୍ତୁ ଅବନ୍ତୀ ଦେବୀ ପୁରୀରେ ରାଧାନାଥ-ମଧୁସୂଦନ ସମ୍ପର୍କ ସମ୍ବନ୍ଧରେ ଗୋଟିଏ କୌତୁକାବହ ବିଷୟ ଲେଖିନାହାନ୍ତି; ଯାହା ରାଧାନାଥଙ୍କ ସୁବୃହତ୍ ଜୀବନୀରେ ଦେଖିବାକୁ ମିଳେ । ରାଧାନାଥଙ୍କର ଜୀବନୀକାର କହନ୍ତି, ''ଥରେ ମଧୁସୂଦନ କୌଣସି କାରଣରୁ ହେଡ୍‌ମାଷ୍ଟ୍ରଙ୍କ (ପୁରୀ ଜିଲାସ୍କୁଲର) କର୍ତ୍ତୃକ ଲାଞ୍ଛିତ ଓ ପ୍ରହୃତ ହୋଇ ବୈରନିର୍ଯ୍ୟାତନସ୍ପୃହା ମେଣ୍ଟାଇବା ସକାଶେ ଅପର ଛାତ୍ରମାନଙ୍କ ସହିତ ସଂଘବଦ୍ଧ ହୋଇ ପୁରୀ କୁଣ୍ଡେଇବେଣ୍ଟ ସାହିର ଗୋଟିଏ ନିଭୃତ ଅଂଶରେ ଅନେକଗୁଡ଼ିଏ ଲୋଷ୍ଟ୍ର ରାଶୀକୃତ କରି ଲୁକ୍‌କାୟିତ ରହିଥିଲେ । ହେଡ୍‌ମାଷ୍ଟ୍ର ମହୋଦୟ ପ୍ରାତ୍ୟହିକ ସାନ୍ଧ୍ୟଭ୍ରମଣ ସକାଶେ ସେହି ମାର୍ଗରେ ଆସିଲେ ତାହାଙ୍କୁ ଅନବରତ କେତେ କ୍ଷଣ ଲୋଷ୍ଟ୍ର ନିକ୍ଷେପ କରିବେ ବୋଲି ଛକି ରହିଥିଲେ । ମାତ୍ର ହେଡ୍‌ମାଷ୍ଟ୍ରରଙ୍କ ପରିବର୍ତ୍ତେ ସେଦିନ ରାଧାନାଥ ସେହି ମାର୍ଗରେ ଭ୍ରମଣାର୍ଥେ ଆସି ଏହି ଛାତ୍ରମାନଙ୍କୁ ଏକତ୍ର ଦେଖି ସେମାନଙ୍କ ଉଦ୍ଦେଶ୍ୟ ବୁଝିପାରିଥିଲେ ଏବଂ ମଧୁସୂଦନ ପ୍ରଭୃତିଙ୍କୁ ସଙ୍ଗରେ ନେଇ ନାନାପ୍ରକାର ବୁଝାଇ ଶାନ୍ତ କରିଦେବାରୁ ସେଦିନ ଏକ ଅପ୍ରୀତିକର ଘଟଣା ଘଟିନଥିଲା ।''

ଏ ଘଟନା ଜୀବନୀକାର କେଉଁ ସୂତ୍ରରୁ ପାଇଲେ ତାହା ସେ ଅବଶ୍ୟ ଉଲ୍ଲେଖ କରିନାହାନ୍ତି । ମଧୁସୂଦନ ତାଙ୍କର ଶୈଶବର ସ୍ମୃତି ସବୁ ତାଙ୍କ ପୁତ୍ରକନ୍ୟା ଆଗରେ କହିବାକୁ ଭଲପାଉଥିଲେ । ଏସବୁ ସ୍ମୃତି ବର୍ଣ୍ଣନା କରିବା ସମୟରେ ସେ ବେଳେବେଳେ ଭାବାବେଶରେ ଏପରି ତନ୍ମୟ ହୋଇଯାଉଥିଲେ ଯେ, ତାଙ୍କ ଚକ୍ଷୁ ସଜଳ ହୋଇଉଠୁଥିଲା । ଏପରି ଗୋଟିଏ ଦୁଷ୍କୃତ ଯଦି ସେ ଦୁଃସଙ୍ଗରେ ପଡ଼ି କରିବାକୁ ଯାଇଥା'ନ୍ତେ, ଆମରଣ ପାପତ୍ରାସରେ ଭୟଭୀତ ଓ ଅନୁତପ୍ତ ମଧୁସୂଦନ ସେ ବିଷୟ ନିଶ୍ଚୟ ତାଙ୍କ ପୁତ୍ରକନ୍ୟାମାନଙ୍କ ଆଗେ କହିଥା'ନ୍ତେ; କାରଣ ଶୈଶବରୁ ନିଜ ସନ୍ତାନମାନଙ୍କର ନୈତିକଜୀବନ ଗଠନ କରିବା ଦିଗରେ ସେ ଅତ୍ୟନ୍ତ ବ୍ୟାକୁଳ ଓ ସଚେଷ୍ଟ ଥିଲେ । ତା'ପରେ ଯେଉଁ ମଧୁସୂଦନ ନିଜର ବୁଦ୍ଧି, ବିଚକ୍ଷଣତା ଓ ବିନମ୍ର ବ୍ୟବହାର ଯୋଗୁଁ ପୁରୀ ଜିଲାସ୍କୁଲର ଶିକ୍ଷକମାନଙ୍କର ସ୍ନେହଭାଜନ ହୋଇଥିଲେ,

ତାଙ୍କର ହେଡ଼ମାଷ୍ଟ୍ରଙ୍କ ସହିତ ଶତ୍ରୁତା ଉପୁଜିବାର ଅବକାଶ କେଉଁଠାରେ ? ଏବଂ ଯେଉଁ ମଧୁସୂଦନ କ୍ଲାସରେ ବସି ପାଠ ପଢ଼ିଲାବେଳେ କୌଣସି ପିଲା ଯଦି ତାଙ୍କୁ କିଛି ପଚାରେ, ସେ କହନ୍ତି, "Don't bother me now", ସେ ଦୁର୍ଜନ ପିଲାମାନଙ୍କ ସହିତ ଏପରି ଅବାଞ୍ଛନୀୟ ଭାବରେ ମିଳାମିଶା କରି ଦୁଷ୍କର୍ମରେ ଲିପ୍ତ ହେବା ନିତାନ୍ତ ଅସ୍ୱାଭାବିକ ବୋଲି ମନେହୁଏନାହିଁ କି ? ତୃତୀୟତଃ ଆଧୁନିକ ଯୁଗପରି ସେତେବେଳେ ଛାତ୍ରଉଚ୍ଛୃଙ୍ଖଳତା ଏପରି ଅଶୋଭନୀୟ ପରିସ୍ଥିତିରେ ଉପନୀତ ହୋଇଥିବ, ଏହା ବି ଅନୁମାନ ସୁଦ୍ଧା କରାଯାଇନପାରେ ।

ଯାହାହେଉ ପୁରୀରେ ରାଧାନାଥଙ୍କ ସଂସ୍ପର୍ଶରେ ଆସି ମଧୁସୂଦନଙ୍କର ନବଜାଗରଣ ଘଟିଥିଲା । ତାଙ୍କ କବି-ପ୍ରତିଭାର ଉନ୍ମେଷ କାହିଁକି, ବିକାଶ ବି ଘଟିଥିଲା ଏହିଠାରେ ରାଧାନାଥଙ୍କ ସାନ୍ନିଧ ଲାଭକରି । ରାଧାନାଥ ଥିଲେ ପ୍ରକୃତିର ପଟ୍ଟପୁରୋଧା, ସୌନ୍ଦର୍ଯ୍ୟର ଏକନିଷ୍ଠ ପୂଜାରୀ । କବିପ୍ରତିଭା ପ୍ରତି ତାଙ୍କର ଏହି ସୌନ୍ଦର୍ଯ୍ୟବୋଧ ଥିଲା ନୈସର୍ଗିକ । ରାଧାନାଥଙ୍କ ନିବିଡ଼ ସଂସ୍ପର୍ଶରେ ଆସି ମଧୁସୂଦନଙ୍କର ସୌନ୍ଦର୍ଯ୍ୟ ଚେତନା କ୍ରମେ ଉଦ୍ଦୀପ୍ତ ହେବାକୁ ଲାଗିଲା; ସାରସ୍ୱତ ସାଧନାର ବୀଜ ଅଙ୍କୁରିତ ହେଲା । ଦୁହେଁ ଏକତ୍ର ଜ୍ୟୋସ୍ନାସ୍ନାତ ରଜନୀରେ ମହୋଦଧିର ବିଚିତ୍ର ସୌନ୍ଦର୍ଯ୍ୟ ଓ ବିଶାଳ ମହିମା ଦେଖି ତନ୍ମୟ ହୁଅନ୍ତି । ସ୍ୱର୍ଗଦ୍ୱାରଠାରେ ନିର୍ଜନ ସିକତାମୟ ବେଳାଭୂମିରେ ବସି ଶ୍ମଶାନର ଦୃଶ୍ୟ ଦେଖନ୍ତି । ମନୁଷ୍ୟଜୀବନର ବିଚିତ୍ର ରହସ୍ୟ କଥା ଭାବି ଚିନ୍ତାମଗ୍ନ ହୁଅନ୍ତି । ଜଗତର ନଶ୍ୱର ଲୀଳା ଦେଖି ବିଶ୍ୱବିଧାତାଙ୍କର ଅପାର ମହିମା-ସାଗରରେ ନିମଜ୍ଜିତ ହୁଅନ୍ତି ।

ପୁରୀ ଜିଲାସ୍କୁଲର ଛାତ୍ର ଥିଲାବେଳେ ମଧୁସୂଦନଙ୍କ ଉପରେ ଆହୁରି କେତେକ ସୁସ୍ଥ ଓ କଲ୍ୟାଣକର ପ୍ରଭାବ ପଡ଼ିଥିଲା । ସେହି ପ୍ରଭାବ ତାଙ୍କର ଭବିଷ୍ୟତ ଧର୍ମ ଓ ସାହିତ୍ୟ-ଜୀବନକୁ ବହୁଭାବରେ ନିୟନ୍ତ୍ରିତ ଓ ଆଦର୍ଶାୟିତ କରିଅଛି ।

ସେତେବେଳେ ପୁରୀରେ ହରିହର ଦାଶ ନାମରେ ଜଣେ ଅଦ୍ୱିତୀୟ ପଣ୍ଡିତ ଥିଲେ । ତାଙ୍କରି ଚେଷ୍ଟାରେ ପୁରୀର ବର୍ତ୍ତମାନ ସଂସ୍କୃତ କଲେଜ ବା ମହାବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ସଂସ୍କୃତ ଭାଷାରେ ସେ ଦୀର୍ଘ ସମୟଧରି ଅନର୍ଗଳ ଭାବରେ ବକ୍ତୃତା ଦେଇ ପଣ୍ଡିତମାନଙ୍କୁ ମୁଗ୍ଧ ଓ ବିସ୍ମିତ କରିଦେଉଥିଲେ । ପୁରୀର ମାଜିଷ୍ଟ୍ରେଟ ବକ୍ସଓୟେଲ ସାହେବ ତାଙ୍କଠାରୁ ସଂସ୍କୃତ ଶିକ୍ଷା କରି ଏହି ଭାଷାରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ହରିହର ଦାଶଙ୍କର ପ୍ରତିଭା, ସାଧନା କିମ୍ବା ବିଶେଷତ୍ୱ କେବଳ ସଂସ୍କୃତ ଭାଷାରେ ଏହି ଅନନ୍ୟସାଧାରଣ ବ୍ୟୁତ୍ପତ୍ତିରେ ନିହିତ ନଥିଲା । ସେ ସମୟର ଜଣେ ପଣ୍ଡିତ ହୋଇ ସୁଦ୍ଧା ସେ ଥିଲେ ଜଣେ ପରମ ଦେଶହିତୈଷୀ, ନିର୍ଭୀକ ସମାଲୋଚକ, ଅପରାଜେୟ ତର୍କ-ବୀର ଏବଂ ସମାଜ-ସଂସ୍କାରକ । ତାଙ୍କର ଈଶ୍ୱରବିଶ୍ୱାସ ନଥିଲା । ସେ ଥିଲେ ନାସ୍ତିକ ଦାର୍ଶନିକ । ହିନ୍ଦୁଧର୍ମାନୁମୋଦିତ ଆଚାର-ବ୍ୟବହାର ସେ ମାନୁନଥିଲେ । ପ୍ରାଚୀନ ଓ ନବୀନର ଅପୂର୍ବ ସମନ୍ୱୟ ତାଙ୍କଠାରେ ଘଟିଥିଲା । କଥିତ ଅଛି, ତାଙ୍କର ପାଣ୍ଡିତ୍ୟ,

ପ୍ରତିଭା ଓ ସଂସ୍କାର-ପ୍ରବଣତାରେ କେହି କେହି ପଣ୍ଡିତ ଈର୍ଷାପରବଶ ଓ କ୍ରୋଧାନ୍ୱିତ ହୋଇ ତନ୍ତ୍ରମନ୍ତ୍ରଦ୍ୱାରା ତାଙ୍କୁ ମୂକକରିଦେଇଥିଲେ । ସେତେବେଳେ ପୁରୀରେ ଏପରି ଶିକ୍ଷିତ ଲୋକ ନଥିଲେ ଯେ ହରିହରଙ୍କ ପାଣ୍ଡିତ୍ୟ ଓ ଅପୂର୍ବ ନୈତିକ ସାହସ ପ୍ରତି ଶ୍ରଦ୍ଧା ଭକ୍ତି ପ୍ରଦର୍ଶନ କରୁନଥିଲେ । ତାଙ୍କ ମୁହଁରୁ ପଦେ କଥା ଶୁଣିଲେ ଜ୍ଞାନପିପାସୁ ବ୍ୟକ୍ତି ନିଜକୁ କୃତାର୍ଥ ମନେକରୁଥିଲେ । ତାଙ୍କୁ ଭଲକରି ଚିହ୍ନିଥିଲେ ଉତ୍କଳମଣି ଗୋପବନ୍ଧୁ । ତାଙ୍କରି ନାମାନୁସାରେ ତାଙ୍କ ପ୍ରତିଷ୍ଠିତ ବନବିଦ୍ୟାଳୟର ଲାଇବ୍ରେରୀର ନାମକରଣ ହୋଇଥିଲା 'ହରିହର ଲାଇବ୍ରେରୀ' । ହିନ୍ଦୁ-ସମାଜର ନବଜାଗୃତି ଓ ନବୀକରଣ ଥିଲା ହରିହରଙ୍କ ଜୀବନର ଏକମାତ୍ର ଧ୍ୟାନ । ଗୁଣଗ୍ରାହୀ ଗୋପବନ୍ଧୁ ଏହି ପ୍ରଜ୍ଞାଶାଳୀ ମହାପୁରୁଷଙ୍କ ପ୍ରତି ଭକ୍ତିର ଅର୍ଘ୍ୟ ନିବେଦନ କରି ଲେଖିଅଛନ୍ତି :

''ଆହେ ହରିହର ! ସୁଯୋଗ୍ୟ କୁମାର ଥିଲ ଉତ୍କଳ-ମାତାର,<br>
କି ମଙ୍ଗଳ କ୍ଷଣେ ଉତ୍କଳ-ଭୁବନେ ହେଲା ତୁମ୍ଭ ଅବତାର !<br>
ସମାଜ-ଦୁର୍ଗତି ସମୟର ରୀତି ବୁଝିଥିଲ ତୁମ୍ଭେ ଏକା,<br>
ସଂସ୍କାର ବାସନା ସାଧୁପ୍ରାଣେ ସିନା ତେଣୁ ଦେଇଥିଲ ଦେଖା ।

X X X X

ମୂକ ହୋଇକରି ଆଜିଯାଏ ହରି ଯେବେ ରହିଥାନ୍ତ ବଞ୍ଚି,<br>
ଓଡ଼ିଆଙ୍କ ହାତେ ଦେଇଥାନ୍ତ ସତେ ଉନ୍ନତି-ଭଣ୍ଡାର-କଞ୍ଚି ।<br>
ନବ୍ୟ-ପୁରାତନ ରୁଚି ସମ୍ମିଳନ କରିବ ଏବେ କିଏ ସେ ?<br>
ଉତ୍ସାହ ଉଦ୍ୟମ ସାହସ ଅଦମ୍ୟ କାହିଁ ଏ ଉତ୍କଳ ଦେଶେ ?

X X X X

ଉତ୍କଳ ମଣ୍ଡଳେ ନବ୍ୟ ସଭ୍ୟ ଦଳେ ସର୍ବେ ଆଜି ସ୍ୱାର୍ଥପର,<br>
ଆମ ହରିହର ପଣ୍ଡିତପ୍ରବର ସମାଜ ସଂସ୍କାର କର ।''

ମଧୁସୂଦନଙ୍କ ଜୀବନୀ ସମଗ୍ରଭାବରେ ପର୍ଯ୍ୟାଲୋଚନା କଲେ ଦେଖିବାକୁ ମିଳେ 'ପଣ୍ଡିତ-ପ୍ରବର' ହରିହର ଦାଶଙ୍କ ଜୀବନଇତିହାସ ସହିତ ମଧୁସୂଦନଙ୍କ ଜୀବନ-ଇତିହାସର ଏକମାତ୍ର ସାମଞ୍ଜସ୍ୟ ନିହିତ ଅଛି ଗୋପବନ୍ଧୁଙ୍କର ସେଇ ଗୋଟିଏ ମାତ୍ର ସାରଗର୍ଭକ ଉକ୍ତିରେ 'ନବ୍ୟ-ପୁରାତନ ରୁଚି ସମ୍ମିଳନ' । ଅନ୍ୟ ଭାଷାରେ କହିବାକୁ ଗଲେ ଉଭୟଙ୍କ ଜୀବନରେ ଥିଲା ପ୍ରାଚ୍ୟ-ପ୍ରତୀଚ୍ୟର ସମନ୍ୱୟ ଧାରା ।

ପଣ୍ଡିତ ହରିହରଙ୍କ ସୁନାମରେ ଆକୃଷ୍ଟ ହୋଇ ରାଧାନାଥ ଓ ମଧୁସୂଦନ ସାଙ୍ଗ ହୋଇ ସଂସ୍କୃତ ସାହିତ୍ୟ ଚର୍ଚ୍ଚା କରିବାକୁ ତାଙ୍କ ଘରକୁ ଯାଉଥିଲେ । ଏହି ନାସ୍ତିକ ପଣ୍ଡିତ ଓ ଦାର୍ଶନିକଙ୍କଠାରୁ ଶାସ୍ତ୍ର ବିଷୟକ ନାନା ତର୍କ-ବିତର୍କ ଶୁଣି ଏ ଦୁହେଁ ଦିନକୁ ଦିନ ବିଶେଷ କୌତୂହଳୀ ହୋଇଉଠିଲେ । ମଧୁସୂଦନ ଥିଲେ ଆସ୍ତିକ– ଏହି ଛାତ୍ରାବସ୍ଥାରୁ ତାଙ୍କ ପ୍ରାଣରେ ଧର୍ମଭାବର ଉଦ୍ରେକ ହୋଇଥିଲା । ଭଗବଦ୍‌ଭକ୍ତି ତାଙ୍କ ଜୀବନର ମୂଳଭିତ୍ତି

ଥିଲା । ତାଙ୍କ ପୈତୃକଭବନ ପଥୁରିଆ ସାହିରେ ବାନାମ୍ବର ମହାଦେବଙ୍କର ମନ୍ଦିର । ମଧୁସୂଦନ ତାଙ୍କର କୈଶୋରରେ ପ୍ରତିଦିନ ସ୍ନାନ ସାରି ମହାଦେବଙ୍କୁ ଦର୍ଶନ କରନ୍ତି । ଦେବ-ଦର୍ଶନ ପୂର୍ବରୁ ଅନ୍ନ ଜଳ ସ୍ପର୍ଶ କରନ୍ତି ନାହିଁ । ମଧୁସୂଦନ ହରିହର ଦାସଙ୍କଠାରୁ ତାଙ୍କର ନାସ୍ତିକତାପୂର୍ଣ୍ଣ ମତବାଦ ଶୁଣି ସମୟେ ସମୟେ ମର୍ମାହତ ହୁଅନ୍ତି । ତାଙ୍କ ସହିତ ବେଳେବେଳେ ଯୁକ୍ତିତର୍କ କରନ୍ତି । ଏ ବିରୋଧ ସତ୍ତ୍ୱେ ବି ମଧୁସୂଦନଙ୍କର ପଣ୍ଡିତଙ୍କ ପ୍ରତି ଭକ୍ତି ଓ ସମ୍ମାନ ଥାଏ । ତାଙ୍କର ଅସାମାନ୍ୟ ପାଣ୍ଡିତ୍ୟ ଓ ପ୍ରଗଲ୍‌ଭତାରେ ଗୁରୁ ଓ ଛାତ୍ର ଉଭୟେ ଅବାକ୍ ହୋଇ ରହିଥା'ନ୍ତି । ହରିହରଙ୍କର ପାଣ୍ଡିତ୍ୟ ଓ ବିଦ୍ୟାନୁଶୀଳନ ରାଧାନାଥ ଓ ମଧୁସୂଦନଙ୍କର ଜ୍ଞାନପିପାସାକୁ ତୀବ୍ରତର କରିଥିଲା । ଉଭୟଙ୍କ ଉପରେ ହରିହରଙ୍କର ପ୍ରଭାବ ଅସ୍ୱୀକାର କରିବାର ଉପାୟ ନାହିଁ । କିନ୍ତୁ ଆସ୍ତିକ-ବୁଦ୍ଧିସମ୍ପନ୍ନ ମଧୁସୂଦନଙ୍କ ଉପରେ ତାଙ୍କର ପ୍ରଭାବ ଅଧିକତର । ତାଙ୍କର ନାସ୍ତିକତା ଭଗବତ୍‌ଭକ୍ତ ମଧୁସୂଦନଙ୍କ ପ୍ରାଣରେ ସୃଷ୍ଟି କରିଥିଲା ଏକ ମହାଦ୍ୱନ୍ଦ୍ୱ ଓ ସୁଗଭୀର ଆଲୋଡ଼ନ । ମନ ଏହିପରି ଆସ୍ତିକତା ଓ ନାସ୍ତିକତା ମଧ୍ୟରେ ଦ୍ୱିଧା ବିଭକ୍ତ ଓ ବିକ୍ଷୋଭିତ ହୋଇଥିବା ସମୟରେ ମଧୁସୂଦନ ଗୋଟିଏ ଅଦ୍ଭୁତ ସ୍ୱପ୍ନ ଦେଖିଲେ । କନ୍ୟା ଅବନ୍ତୀ ଦେବୀ ଲେଖିଅଛନ୍ତି, ଏହି ଘଟଣା ଓ ପଣ୍ଡିତ ମହାଶୟଙ୍କର ସ୍ମୃତି କିଶୋର ମଧୁସୂଦନ ଅନ୍ତରରେ ଏପରି ଗଭୀର ଭାବରେ ମୁଦ୍ରିତ ହୋଇଥିଲା ଯେ ପରବର୍ତ୍ତୀ କାଳରେ ଅନେକ ସମୟରେ ସେ ଆମ୍ଭମାନଙ୍କ ନିକଟରେ ଆବେଗମୟୀ ଭାଷାରେ ଏହି ଗଳ୍ପ କହୁଥିଲେ ।

ସ୍ୱପ୍ନଟି ହେଉଛି— କେତେଖଣ୍ଡ ଜ୍ୱଳନ୍ତ କାଷ୍ଠଖଣ୍ଡ ସ୍କନ୍ଧରେ ବହନ କରି ପଣ୍ଡିତ ହରିହର ପୁରୀର ବଡ଼ଦାଣ୍ଡରେ ବ୍ୟାକୁଳଭାବରେ ଏଣେତେଣେ ଧାବମାନ ହେଉଥା'ନ୍ତି । ପାଖରେ ଯାହାକୁ ଦେଖନ୍ତି, ତା ଆଡ଼କୁ ଲକ୍ଷ୍ୟକରି ଜ୍ୱଳନ୍ତ କାଷ୍ଠଖଣ୍ଡ ନିକ୍ଷେପ କରନ୍ତି । ସେମାନେ ଅଗ୍ନିଦଗ୍ଧ ହୋଇ କରୁଣ କଣ୍ଠରେ ଚିତ୍କାର କରୁଥା'ନ୍ତି । ଏହିପରି କରି କରି ଶେଷରେ ପଣ୍ଡିତ ମହାଶୟ ନିକଟବର୍ତ୍ତୀ ନରେନ୍ଦ୍ର ପୁଷ୍କରିଣୀରେ ନିମଜ୍ଜିତ ହୋଇ ଚିରଶାନ୍ତି ଲାଭ କଲେ ।

ଆଶ୍ଚର୍ଯ୍ୟର କଥା ଏହାର ଅଳ୍ପକାଳ ପରେ ହରିହର ଦାସ ଅଗ୍ନିରେ ଦଗ୍ଧ ହୋଇ ଜୀବଲୀଳା ସାଙ୍ଗକରିଥିଲେ ।

ମଧୁସୂଦନଙ୍କ ଭଗବଦ୍‌ଭକ୍ତିର ଆଉ ଦୁଇଟି ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖଯୋଗ୍ୟ । ପୁରୀ ମନ୍ଦିର ନିକଟରେ ଗୋଟିଏ ମଠରେ ହରିଦାସ ନାମରେ ଜଣେ ବାବାଜି ରହୁଥା'ନ୍ତି । ମଧୁସୂଦନ ଜଗନ୍ନାଥ-ଦର୍ଶନକୁ ଯିବାବେଳେ ସମୟେ ସମୟେ ଏହି ବାବାଜିଙ୍କ ନିକଟକୁ ଯାଇ ତାଙ୍କ ପାଖରେ ବସନ୍ତି; ତାଙ୍କଠାରୁ ଧର୍ମୋପଦେଶ ଶୁଣନ୍ତି । ସାଧୁ ହରିଦାସ ମଧୁସୂଦନଙ୍କୁ ଅତି ଆଦରରେ ଧର୍ମବିଷୟକ ନାନା ମଧୁର ଉପଦେଶ ଦିଅନ୍ତି । ମଧୁସୂଦନ ତା ଆଗରୁ ମୁଖସ୍ଥ କରିଥିବା ବହୁ ସଂସ୍କୃତ ନୀତିଶ୍ଳୋକର ଅର୍ଥ ତାଙ୍କୁ ପଚାରନ୍ତି । ହରିଦାସ ଏ ଶ୍ଳୋକର ଅର୍ଥସବୁ ପ୍ରାଞ୍ଜଳଭାବରେ ତାଙ୍କୁ ବୁଝାଇ ଦିଅନ୍ତି । ବାବାଜିଙ୍କଠାରୁ ବୁଝିବା ନିମନ୍ତେ ସେ ପ୍ରତିଦିନ ନୂଆ ନୂଆ ଶ୍ଳୋକ ଆଗ୍ରହରେ କଣ୍ଠସ୍ଥ

କରି ତାଙ୍କ ପାଖକୁ ଯା'ନ୍ତି । ଏହି ସଜ୍ଜନସଙ୍ଗତି ମଧୁସୂଦନଙ୍କ ପ୍ରାଣରେ ଧର୍ମଭାବର ଅଭିବୃଦ୍ଧି ସମ୍ପାଦନ କରିବାରେ କମ୍ ସାହାଯ୍ୟ କରିନାହିଁ ।

'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ସ୍ୱର୍ଗତ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ 'ବ୍ରହ୍ମଜ୍ଞ ମଧୁସୂଦନ' ପ୍ରବନ୍ଧରେ ବିବୃତ ଅନ୍ୟ ଅଦ୍ଭୁତ ଘଟଣାଟି ହେଉଛି, 'ବାଳକ ମଧୁସୂଦନ ପ୍ରତିଦିନ ଶିବ ଦର୍ଶନ ନ କରି ଜଳ ଗ୍ରହଣ କରୁନଥିଲେ । ସମୁଦ୍ର କୂଳରେ ଭ୍ରମଣ କରି ସାଗର ଓ ଆକାଶର ଅନନ୍ତ ନୀଳିମା ଦର୍ଶନରେ ସେ ମୁଗ୍ଧ ହେଉଥିଲେ । ସେଥିରେ ଯେପରି ସେ ବିଶ୍ୱପତିଙ୍କର ଅନନ୍ତ ମହିମାର ଛାୟା ଉପଲବ୍ଧ କରୁଥିଲେ । ଦିନେ ସେ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲେ । ସମୁଦ୍ରକୂଳରୁ ଫେରିଲାବେଳେ ଏକ ବିରାଟ ପୁରୁଷ ତାଙ୍କ ଆଗେ ଆଗେ ଯାଉଅଛନ୍ତି । ସେ ଓଁକାର ଉଚ୍ଚାରଣ କଲାବେଳେ ଚତୁର୍ଦ୍ଦିଗ ଅପୂର୍ବ ଜ୍ୟୋତିରେ ଉଦ୍ଭାସିତ ହୋଇଯାଉଅଛି । କିଛିକ୍ଷଣ ପରେ ସେହି ବିରାଟ ପୁରୁଷ ନଗରୋପାନ୍ତରେ ଅନ୍ତର୍ହିତ ହୋଇଗଲେ । ଏହି ବିଚିତ୍ର ବ୍ୟାପାର ଦର୍ଶନରେ ତାଙ୍କ ମନ ଅଦ୍ଭୁତଭାବରେ ଆନ୍ଦୋଳିତ ହେବାକୁ ଲାଗିଲା । ଏହି ସ୍ୱପ୍ନରୁ ତାଙ୍କର ଧର୍ମଜୀବନର ସୂତ୍ରପାତ ବୋଲିବାକୁ ହେବ ।''

ମଧୁସୂଦନ ତାଙ୍କର ନାନା ଅତୀତ ସ୍ମୃତି ସହିତ ଏହି ଅଦ୍ଭୁତ ସ୍ୱପ୍ନର କାହାଣୀ ତାଙ୍କର ଜୀବନଚରିତ ଲେଖିକା କନ୍ୟା ଅବନ୍ତୀ ଦେବୀଙ୍କୁ କହିଥିଲେ କି ନାହିଁ, ଏହାର ସ୍ପଷ୍ଟ ପ୍ରମାଣ ତାଙ୍କ ଗ୍ରନ୍ଥରୁ ନମିଳିଲେ ମଧ ସେ ଏହି ଗ୍ରନ୍ଥର 'ଧର୍ମଜୀବନ' ଶୀର୍ଷକ ପରିଚ୍ଛେଦରେ ସେ ଘଟନାଟି ବର୍ଣ୍ଣନା କରିଅଛନ୍ତି ଏବଂ ମୃତ୍ୟୁଞ୍ଜୟ ରଥଙ୍କ ପରି ଏହି ସ୍ୱପ୍ନ ଉପରେ ନିଜର ମନ୍ତବ୍ୟ ବ୍ୟକ୍ତ କରି ଲେଖିଅଛନ୍ତି, ''ଏହି ସ୍ୱପ୍ନ ମଧୁସୂଦନଙ୍କ ମନକୁ କେତେଦିନ ସକାଶେ ପ୍ରବଳଭାବରେ ଆନ୍ଦୋଳିତ କରିଥିଲା ।''

ଏହି ଅଦ୍ଭୁତ ସ୍ୱପ୍ନ ସହିତ ୧୯୦୧ ରେ ପ୍ରକାଶିତ ଭକ୍ତକବିଙ୍କ ବସନ୍ତଗାଥାର 'ଶଙ୍ଖଧ୍ୱନି' କବିତାର ନିମ୍ନୋଦ୍ଧୃତ ପଙ୍‌କ୍ତିମାନଙ୍କ ସହିତ କି ମନସ୍ତାତ୍ତ୍ୱିକ ଓ ନିଗୂଢ଼ ସମ୍ପର୍କ ବିଦ୍ୟମାନ ତାହା ଅନୁଧ୍ୟାନ କରିବାର କଥା ।

''ସହସା ସୁଦୂର ଗ୍ରାମେ ବାଜେ ଶଙ୍ଖଧ୍ୱନି
ସ୍ତମ୍ଭିତ ସେ ନାଦେ ଯେହ୍ନେ ଅଖିଳ ଅବନୀ ।
କ୍ଷଣେ କର୍ଣ୍ଣ ଡେରି ଆହା ସେ ସ୍ୱରଲହରୀ
ଶୁଣିଲି ମୁଁ ଆଚମ୍ବିତେ ସ୍ୱପ୍ନାବିଷ୍ଟ ପରି ।
ତହୁଁ ମହା ଜାଗରଣେ ଜାଗିଲା ମୋ ପ୍ରାଣ
ଶୁଣିଲି ସେ ଧ୍ୱନି ମଧ୍ୟେ ମହାସିନ୍ଧୁ-ତାନ ।
ଅନନ୍ତ ଅର୍ଣ୍ଣବ-ଧ୍ୱନି ମହାମହୋଦାର
ଅର୍ଣ୍ଣବ-ସମ୍ଭବ-ଶଙ୍ଖେ କରୁଛି ବିହାର ।''

—

# ଚତୁର୍ଥ ଅଧ୍ୟାୟ

## କଟକ କଲେଜରେ ମଧୁସୂଦନ

ପୁରୀ ଜିଲାସ୍କୁଲରୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସରକାରୀ ବୃତ୍ତି ପାଇ ମଧୁସୂଦନ ୧୮୬୯ ମସିହାରେ ଏଫ୍.ଏ. ପଢ଼ିବା ନିମନ୍ତେ କଟକ ଆସିଲେ। ସେତେବେଳକୁ କଟକରେ ସ୍ୱତନ୍ତ୍ର କଲେଜ ସ୍ଥାପିତ ହୋଇନାହିଁ। କେବଳ କଟକରେ ଥିବା ସରକାରୀ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଏଫ୍.ଏ. କ୍ଲାସର ଦୁଇଟି ଶ୍ରେଣୀର କାର୍ଯ୍ୟ ଚାଲୁଥାଏ। ଦୁଇଜଣ ଅଧ୍ୟାପକ ଥା'ନ୍ତି; ଜଣେ ଇଂରେଜୀରେ, ଅନ୍ୟ ଜଣକ ଦର୍ଶନଶାସ୍ତ୍ରରେ।

ରାଜକିଶୋର ବନ୍ଦୋପାଧ୍ୟାୟ ଥିଲେ ଇଂରେଜୀ ଅଧ୍ୟାପକ। ସେ ଯେପରି ବିଦ୍ୱାନ୍, ସେହିପରି ଆଦର୍ଶ ଶିକ୍ଷକ ଥିଲେ। ତୁଳନାତ୍ମକ ସମାଲୋଚନାରେ ସେ ବିଶେଷ ଧୁରନ୍ଧର ଥିଲେ। ଇଂରେଜୀ ସାହିତ୍ୟ ପଢ଼ାଇଲାବେଳେ ସେ ବିଭିନ୍ନ ଭାଷାର ସାହିତ୍ୟରୁ ପ୍ରାସଙ୍ଗିକ ଅଂଶବିଶେଷ ଉଦ୍ଧାରକରି ଆଲୋଚ୍ୟ କବିଙ୍କର ଲିଖନଶୈଳୀ ଓ ପ୍ରତିଭାର ଉତ୍କର୍ଷ ଓ ଅପକର୍ଷ ଅତି ସୁଚାରୁଭାବରେ ଛାତ୍ରମାନଙ୍କୁ ବୁଝାଇଦେଉଥିଲେ। ଇଂରାଜୀ ଅଧ୍ୟାପକ ବୋଲି ତାଙ୍କର ଅଧ୍ୟାପନା କେବଳ ଇଂରେଜୀ ସାହିତ୍ୟର ପରିସର ମଧ୍ୟରେ ସୀମାବଦ୍ଧ ନଥିଲା। ମଧୁସୂଦନ ଅଭିନିବିଷ୍ଟ ଚିତ୍ତରେ ତାଙ୍କର ଅଧ୍ୟାପନା ଶୁଣୁଥିଲେ। ଏହାଦ୍ୱାରା ତାଙ୍କର ସମାଲୋଚନା ଓ ବିଶ୍ଳେଷଣୀଶକ୍ତି ମାର୍ଜିତ ଓ ବିକଶିତ ହୋଇଉଠୁଥିଲା।

କିନ୍ତୁ ମଧୁସୂଦନଙ୍କ ଜ୍ଞାନତୃଷ୍ଣା, ମନନଶୀଳତା ଓ ଧର୍ମଜୀବନ ଉପରେ ଅଧିକତର ପ୍ରଭାବ ବିସ୍ତାର କରିଥିଲେ ଦର୍ଶନଶାସ୍ତ୍ରର ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟ। ସେତେବେଳେ ଭଟ୍ଟାଚାର୍ଯ୍ୟ ନବୀନ ଯୁବକ, ଜ୍ଞାନ ଅପରିପକ୍ୱ, ପ୍ରବୀଣତାବିବର୍ଜିତ; ତଥାପି ତାଙ୍କର ଗମ୍ଭୀର ପ୍ରଶାନ୍ତ ମୁଖମଣ୍ଡଳ, ଚାରିତ୍ରିକ ବିଭବ ଏବଂ ଉଚ୍ଚକୋଟିର ମାନବିକତାରେ ଗୁଣଗ୍ରାହୀ ମଧୁସୂଦନ କାହିଁକି, ତାଙ୍କର ସକଳ ଛାତ୍ର ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ। ସେ କ୍ଲାସ ଭିତରକୁ ପଶିଆସିଲେ ସମସ୍ତେ ନୀରବ, ନିସ୍ତବ୍ଧ। ଭୟ, ଭକ୍ତି, ଶ୍ରଦ୍ଧା ଓ ସମ୍ଭ୍ରମରେ ସମସ୍ତଙ୍କ ଚିତ୍ତ ବିନମ୍ର। ଅଧ୍ୟାପକ ଭଟ୍ଟାଚାର୍ଯ୍ୟଙ୍କ ବିଷୟ ଅବତାରଣା କଲାବେଳେ ସ୍ୱତଃ ଏଇ ଲେଖକର ସ୍ମୃତିପଟରେ ନାଚିଉଠେ ୧୯୧୯ ଏବଂ ୧୯୨୦ ମସିହାରେ ଥିବା ରେଭେନ୍ସା କଲେଜରେ ଇତିହାସ ଅଧ୍ୟାପକ ସ୍ୱର୍ଗତ ସାର୍ ଯଦୁନାଥ ସରକାରଙ୍କ ଜ୍ଞାନନିଷ୍ଠା ଓ ଅଧ୍ୟାପନାର କଥା। ସେ ଥିଲେ ଜଣେ ବିଶ୍ୱବିଶ୍ରୁତ ଐତିହାସିକ। ଶୁଷ୍କ ଇତିହାସକୁ ସେ ଦେଇଯାଇଛନ୍ତି ଲଳିତ ଲାବଣ୍ୟପୂର୍ଣ୍ଣ

ରକ୍ତମାଂସର ଶରୀର । ସେ ଇଂରେଜୀରେ ଅସାମାନ୍ୟ କୃତିତ୍ୱର ସହିତ ଏମ୍.ଏ. ପାସ୍ କରିଥିଲେ । କିନ୍ତୁ ଇତିହାସ ଓ ଐତିହାସିକ ଗବେଷଣା ପ୍ରତି ଥିଲା ତାଙ୍କର ଅଦମ୍ୟ ଆଗ୍ରହ । ସେ କ୍ଲାସକୁ ପଶି ଆସିଲେ ତରଙ୍ଗ-ବିକ୍ଷୁବ୍ଧ ସାଗର ଯେପରି ନିମିଷକ ମଧ୍ୟରେ କାହାର ଯାଦୁକରୀ ଶକ୍ତିରେ ନିସ୍ତରଙ୍ଗ ଓ ନିଥର ହୋଇ ଉଠେ । ଆପେ ଆପେ ଆମ୍ଭମାନଙ୍କର ଯୋଡ଼ହସ୍ତ ପ୍ରଣତି ଉଦ୍ଦେଶ୍ୟରେ ଉଠିଯାଏ । ଏବେ ସେପରି ଅଧ୍ୟାପକ କାହାନ୍ତି ? ସେପରି ଛାତ୍ର ବା କାହାନ୍ତି ? ଏହା ପ୍ରଚଳିତ ଶିକ୍ଷା ପଦ୍ଧତିର ତ୍ରୁଟି ନା ଶିକ୍ଷକ-ଛାତ୍ରଙ୍କର ଗଲତି ? ଏହା ସ୍ଥିର କରିବ କିଏ— ପ୍ରତିକାର ବିଧାନ ତ ଦୂରର କଥା । ଏହି ହରନାଥ ଭଟ୍ଟାଚାର୍ଯ୍ୟଙ୍କର ଚରିତ୍ର-ଶୁଦ୍ଧି, ଜ୍ଞାନ-ତପସ୍ୟା, ଅଧ୍ୟାପନାରୀତି ଓ ଚିନ୍ତାଶୀଳତା ମଧୁସୂଦନଙ୍କ ଉପରେ ବିଶେଷ ପ୍ରଭାବ ବିସ୍ତାର କରିଥିଲା । ସ୍କୁଲରେ ଶିକ୍ଷକତା କରିବା ସମୟରେ ସେ ରାଜକିଶୋର ବନ୍ଦୋପାଧ୍ୟାୟ, ବିଶେଷତଃ ହରନାଥ ଭଟ୍ଟାଚାର୍ଯ୍ୟଙ୍କୁ ତାଙ୍କର ଆଦର୍ଶ ରୂପେ ଗ୍ରହଣ କରିଥିଲେ ।

ଅବନ୍ତୀ ଦେବୀ କହନ୍ତି, ''ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଯେତେବେଳେ ବହୁ ଶିକ୍ଷିତ ବ୍ୟକ୍ତି ବ୍ରାହ୍ମସମାଜ ପ୍ରତି ଆକୃଷ୍ଟ ହେଉଥିଲେ, ହରନାଥ ସେହି ସମୟରେ ବ୍ରାହ୍ମସମାଜରେ ଯୋଗଦେଇଥିଲେ । ସେ ବ୍ରାହ୍ମଧର୍ମର ଦୀକ୍ଷା ଗ୍ରହଣ କରି ନଥିଲେ; କିନ୍ତୁ ଆଜୀବନ ବ୍ରାହ୍ମସମାଜର ଆଦର୍ଶ ନିଜ ଜୀବନରେ ନିଷ୍ଠାର ସହିତ ପାଳନ କରୁଥିଲେ । ସେ ପ୍ରତି ରବିବାର ସକାଳେ ଓ ସନ୍ଧ୍ୟାରେ ବ୍ରହ୍ମ-ମନ୍ଦିରର ଉପସନାରେ ଯୋଗ ଦେଉଥିଲେ ଓ ନିଜେ ପ୍ରତିଦିନ ସ୍ନାନ ସାରି ଅନେକ ସମୟ ପର୍ଯ୍ୟନ୍ତ ନୀରବରେ ପ୍ରାର୍ଥନା କରୁଥିଲେ ।''

ଏହାଙ୍କଠାରୁ ମଧୁସୂଦନଙ୍କ ବ୍ରାହ୍ମଧର୍ମ ଗ୍ରହଣର ସୂତ୍ରପାତ । କଟକରେ ଏଫ୍.ଏ.କ୍ଲାସରେ ପଢ଼ିଲାବେଳେ ଯେଉଁ କେତେଜଣ ସହାଧ୍ୟାୟୀଙ୍କ ସହିତ ମଧୁସୂଦନଙ୍କର ଘନିଷ୍ଠ ସମ୍ପର୍କ ଜନ୍ମିଥିଲା, ସେମାନଙ୍କ ମଧ୍ୟରୁ ସ୍ୱର୍ଗତ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ନାମ ଉଲ୍ଲେଖଯୋଗ୍ୟ । ଏ ମଣିକାଞ୍ଚନର ସଂଯୋଗ ମଧୁସୂଦନଙ୍କ ଜୀବନରେ ଗୋଟିଏ ଐତିହାସିକ ଅବିସ୍ମରଣୀୟ ଘଟନା । ଉଭୟଙ୍କ ମଧ୍ୟରେ ଥିଲା ଅକ୍ଷୁଣ୍ଣ ସୌହାର୍ଦ୍ଦ୍ୟ, ଅକପଟ ବନ୍ଧୁତା ଓ ଆତ୍ମିକ ସାମଞ୍ଜସ୍ୟ । ଦୁହେଁ ଅବସର ପାଇଲେ ଏକତ୍ର ବୁଲିଯା'ନ୍ତି । ନିର୍ଜନରେ ବସି ନିଜନିଜର ଭବିଷ୍ୟତ ପରିକଳ୍ପନା କରିବା ସଙ୍ଗେ ସଙ୍ଗେ ଦେଶର ସାର୍ବଜନୀନ ସମୂହ କଲ୍ୟାଣ ଚିନ୍ତା କରନ୍ତି । ମଝିରେ ମଝିରେ ସାହିତ୍ୟ ଚର୍ଚ୍ଚା କରନ୍ତି । ଇଂରେଜୀ ଭାଷାରେ ଲିଖିତ ଉପାଦେୟ ରଚନା ଓଡ଼ିଆରେ ଅନୁବାଦ କରନ୍ତି । ଆଧ୍ୟାତ୍ମିକ ଜୀବନର ଭୂୟୋବିକାଶର ପନ୍ଥା ଚିନ୍ତା କରନ୍ତି । ପ୍ୟାରୀମୋହନ ମଧ୍ୟ ମଧୁସୂଦନଙ୍କ ସହ ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟଙ୍କ ଆଧ୍ୟାତ୍ମିକ ଚେତନାର ପ୍ରଭାବରେ ବ୍ରାହ୍ମଧର୍ମ ପ୍ରତି ଅନୁରକ୍ତ ହୋଇଥିଲେ ।

୧୮୬୨ ମସିହାରେ ପ୍ୟାରୀମୋହନ, ମଧୁସୂଦନ ଓ ବାଙ୍କିର ସ୍ୱନାମଧନ୍ୟ ପଣ୍ଡିତ ଗୋବିନ୍ଦ ରଥ ପ୍ରଭୃତିଙ୍କ ଉଦ୍ୟମରେ କଟକରୁ 'ଉତ୍କଳ-ପୁତ୍ର' ନାମରେ ଗୋଟିଏ ଓଡ଼ିଆ ସମ୍ବାଦପତ୍ର ପ୍ରକାଶ ପାଏ । ଏହା ପୂର୍ବରୁ ଅବଶ୍ୟ ଗୌରୀଶଙ୍କର ରାୟଙ୍କ ସମ୍ପାଦିତ 'ଉତ୍କଳ ଦୀପିକା' ପ୍ରକାଶ ପାଉଥିଲା । କିନ୍ତୁ ଏହାର କଳେବର ଥିଲା ଅତି କ୍ଷୁଦ୍ର– ମୋଟେ ଚାରିପୃଷ୍ଠା । ସେଥିରେ ସାଧାରଣ ଲୋକଙ୍କ ଅଭାବ ଅଭିଯୋଗ ସମ୍ପର୍କୀୟ ଅନେକ ଲେଖା ପ୍ରକାଶ ପାଇପାରୁନଥିଲା । ତେଣୁ 'ଉତ୍କଳ-ପୁତ୍ର' ପ୍ରକାଶିତ ହେଲା । ପ୍ୟାରୀମୋହନ ଥିଲେ ଏ ପତ୍ରିକାର ସମ୍ପାଦକ, ପରିଚାଳକ ଓ ପ୍ରାଣକେନ୍ଦ୍ର । ଏହି ପତ୍ରିକାରେ ପ୍ରକାଶିତ ଗୋଟିଏ ପ୍ରବନ୍ଧ ନିମନ୍ତେ ତାହାଙ୍କୁ କଲେଜ ପରିତ୍ୟାଗ କରିବାକୁ ପଡ଼ିଥିଲା । କଟକର ତଦାନୀନ୍ତନ ମାଜିଷ୍ଟ୍ରେଟ ସହରର ଆବର୍ଜନା ପରିଷ୍କରଣ-ତତ୍ତ୍ୱାବଧାନରେ ଅବହେଳା କରୁଥିବାରୁ ପ୍ୟାରୀମୋହନ ତାଙ୍କ ବିରୁଦ୍ଧରେ କର୍ମ ଶୈଥିଲ୍ୟର ଅଭିଯୋଗ ଉପସ୍ଥାପନ କରି 'ଦରଖାସ୍ତ ଜୁତିୟାନ୍' (ଜୋତାର ଆବେଦନ) ଶୀର୍ଷକ ଲେଖା ତାଙ୍କ 'ଉତ୍କଳ ପୁତ୍ର' ପତ୍ରିକାରେ ପ୍ରକାଶ କରିଥିଲେ । ଅତି ଓଜସ୍ୱିନୀ ଭାଷାରେ ଏ ପ୍ରବନ୍ଧଟି ଲେଖାଯାଇଥିଲା । ଏ ପ୍ରବନ୍ଧ ପ୍ରତି ମାଜିଷ୍ଟ୍ରେଟ ସାହେବଙ୍କର ଦୃଷ୍ଟି ଆକର୍ଷଣ କରାଯିବାରୁ ସେ କ୍ରୋଧରେ ଥରହର ହୋଇ ହେଡ୍‌ମାଷ୍ଟ୍ର ଚଣ୍ଡୀଚରଣ ବନ୍ଦୋପାଧ୍ୟାୟଙ୍କୁ ଆଦେଶଦେଲେ, 'ଏହି ପ୍ରବନ୍ଧ-ଲେଖକକୁ ଶୀଘ୍ର ସ୍କୁଲରୁ ତଡ଼ ।' ବନ୍ଦୋପାଧ୍ୟାୟ ପ୍ୟାରୀମୋହନଙ୍କୁ ଉପସ୍ଥିତ ସଙ୍କଟରୁ ରକ୍ଷା କରିବା ନିମନ୍ତେ ତାଙ୍କୁ ଉପଦେଶ ଦେଲେ, 'ତମେ ଯାଇ ଏଥିପାଇଁ ସାହେବଙ୍କୁ କ୍ଷମା ପ୍ରାର୍ଥନା କର ।' କିନ୍ତୁ ନିର୍ଭୀକଚେତା ପ୍ୟାରୀମୋହନ ନିଜ କର୍ତ୍ତବ୍ୟରେ ଅବିଚଳିତ ରହି ଏପରି ଅସ୍ପୃହଣୀୟ ଓ ଗ୍ଲାନିକର କାର୍ଯ୍ୟ କରିବାକୁ ଅନିଚ୍ଛା ପ୍ରକାଶ କଲେ । ଫଳରେ ତାଙ୍କୁ ଦ୍ୱିତୀୟ ବାର୍ଷିକ ଶ୍ରେଣୀରୁ ବିଦାୟ ନେବାକୁ ପଡ଼ିଲା ।

କିନ୍ତୁ ପ୍ୟାରୀମୋହନଙ୍କ ଏକା ଜିଦ୍, କଟକରେ ଗୋଟିଏ ସ୍କୁଲ ଥିବାରୁ ତାଙ୍କ ଉପରେ ଏପରି ଅତ୍ୟାଚାର ସିନା ହେଲା; ଆଉ ଗୋଟିଏ ବେସରକାରୀ ସ୍କୁଲ ପ୍ରତିଷ୍ଠିତ ହେଲେ କର୍ତ୍ତୃପକ୍ଷଙ୍କର ଏପରି ଯଥେଚ୍ଛାଚାରର ଆଉ ଅବକାଶ ରହିବ ନାହିଁ– ତେଣୁ ଯେକୌଣସି ମତେ ସହରରେ ଆଉ ଗୋଟିଏ ଉଚ୍ଚ ଇଂରେଜୀ ସ୍କୁଲ ପ୍ରତିଷ୍ଠା କରିବାକୁ ହେବ । ଧନବଳ ନଥାଇ ମନବଳ ଥିଲେ ମନୁଷ୍ୟ ଅସାଧ୍ୟ ସାଧନ କରିପାରେ । କମିଶନର ଅଫିସରେ ମାସିକ ମାତ୍ର ପଚିଶ ଟଙ୍କା ବେତନ ପାଇ ସେଥିରୁ ଅଳ୍ପକିଛି ନିଜ ଖର୍ଚ୍ଚ ପାଇଁ ରଖି ବାକି ସବୁ ସ୍କୁଲ ପାଇଁ ସେ ଦାନ କରୁଥିଲେ । ମଧୁସୂଦନ ମଧ୍ୟ ତାଙ୍କୁ ଏହି ଦେଶହିତକର କାର୍ଯ୍ୟରେ କମ୍ ସାହାଯ୍ୟ କରିନାହାନ୍ତି । ଉଭୟେ ସମୟ ପାଇଲେ ସ୍କୁଲପାଇଁ ଉପକରଣ ସଂଗ୍ରହ କରିବା ନିମନ୍ତେ ଧନୀଲୋକମାନଙ୍କର ଦ୍ୱାରସ୍ଥ ହେଉଥିଲେ । ଡମପଡ଼ା ରାଜାଙ୍କ ବଦାନ୍ୟତାରେ କଟକରେ ଯେଉଁ 'ଏକାଡେମୀ' କିମ୍ବା

ହାଇସ୍କୁଲ ପ୍ରତିଷ୍ଠିତ ହୋଇଥିଲା, ପ୍ୟାରୀମୋହନ ଡମପଡ଼ାର ମେନେଜର ଥାଇ, ଏହାର ସୁପରିଚାଳନା କରୁଥିଲେ ଏବଂ ତାଙ୍କର ନାମାନୁସାରେ ଏହି ଅନୁଷ୍ଠାନର ନାମ ହୋଇଛି 'ପ୍ୟାରୀମୋହନ ଏକାଡ଼େମୀ' ।

ମଧୁସୂଦନଙ୍କ ପରି ପ୍ୟାରୀମୋହନ ବିଶେଷ ପରୋପକାରୀ ବ୍ୟକ୍ତି ଥିଲେ । ରୋଗୀସେବା ତାଙ୍କ ଜୀବନର ପରମବ୍ରତ ଥିଲା । ତାହାଙ୍କ ମୃତ୍ୟୁର ଅଳ୍ପକାଳ ପୂର୍ବେ ପୁରୀରେ ଭୟଙ୍କର ବିସୂଚିକାର ପ୍ରାଦୁର୍ଭାବ ଦେଖାଦେଇଥିଲା । ଜଗନ୍ନାଥ ସଡ଼କରେ ଅସଂଖ୍ୟ ରୋଗୀ ବିନା ଚିକିତ୍ସା ଓ ସେବା ଶୁଶ୍ରୂଷାରେ ମରିପଡୁଥିଲେ । ଏ ସମ୍ବାଦ ଶୁଣି ପ୍ୟାରୀମୋହନଙ୍କ ଅନ୍ତରାତ୍ମା ବ୍ୟଥିତ ହୋଇଉଠିଲା । ସେ ପୁରୀ ଯାଇ ଏହି ଅସହାୟ ରୋଗୀମାନଙ୍କର ଯଥାସାଧ୍ୟ ସେବା-ଶୁଶ୍ରୂଷା କରିଥିଲେ ।

ମଧୁସୂଦନଙ୍କ ପରି ପ୍ୟାରୀମୋହନ ବି ଜଣେ ସାହିତ୍ୟାନୁରାଗୀ ବ୍ୟକ୍ତି ଥିଲେ । 'ଉତ୍କଳ-ପୁତ୍ର' ଆଶାନୁରୂପ ଗ୍ରାହକ ସଂଖ୍ୟା ଅଭାବରୁ ବେଶି ଦିନ ତିଷ୍ଠି ପାରିଲା ନାହିଁ । ଏହାପରେ ପ୍ୟାରୀମୋହନ 'ଓଡ଼ିଶାର ଇତିହାସ' ଲେଖିଥିଲେ । ଏହା ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହୋଇଥିଲା; କିନ୍ତୁ ଏ ବହି ସମ୍ବନ୍ଧରେ ନାନା ବାଦାନୁବାଦ ଉଠିବାରୁ ଏହା ବେଶି ଦିନ ପାଠ୍ୟପୁସ୍ତକ ହୋଇ ରହିପାରି ନଥିଲା । ମାତ୍ର ଏହି ଇତିହାସର ସାହିତ୍ୟିକ ଓ ତଥ୍ୟଗତ ମୂଲ୍ୟ ସେ ସମୟକୁ ବିଚାର କଲେ, ନିତାନ୍ତ ଉପେକ୍ଷୀୟ ନୁହେଁ । ଏହା ବୋଧହୁଏ ସର୍ବପ୍ରଥମ ବିଜ୍ଞାନସମ୍ମତ ଓ ଗବେଷଣା ପଦ୍ଧତି ପ୍ରସୂତ 'ଉତ୍କଳର ଇତିହାସ' ।

ମଧୁସୂଦନ ଓ ପ୍ୟାରୀମୋହନ ଉଭୟେ ଅତି ତେଜସ୍ୱୀ ଓ ସତ୍ୟନିଷ୍ଠ ଥିଲେ । ଅନ୍ୟାୟ ଓ ଅପଚାର ଦେଖିଲେ ସେମାନେ ଏହାର ପ୍ରକାଶ୍ୟ ପ୍ରତିବାଦ ନକରି ରହିପାରୁ ନଥିଲେ ।

୧୮୭୧ ଖ୍ରୀଷ୍ଟାବ୍ଦରେ ନବଯୁଗର ସଂସ୍କାରକ ବ୍ରହ୍ମାନନ୍ଦ କେଶବଚନ୍ଦ୍ର ସେନ୍ ବ୍ରାହ୍ମବିବାହ ସମ୍ପର୍କରେ ଗୋଟିଏ ନୂତନ ଆଇନର ପ୍ରାଣ୍ଡୁଲିପି ପ୍ରଣୟନ କରାଇଥିଲେ । ସେଇ ଆଇନ ଅନୁସାରେ ବରର ବୟସ ୧୮ବର୍ଷ ଓ କନ୍ୟାର ବୟସ ୧୪ ବର୍ଷରୁ କମ୍ ହେଲେ ବିବାହ ନିଷିଦ୍ଧ; କିନ୍ତୁ ସମଗ୍ର ବଙ୍ଗ ପ୍ରଦେଶରେ ରକ୍ଷଣଶୀଳ ବ୍ୟକ୍ତିମାନେ ଏଇ ଆଇନ ବିରୋଧରେ ଘୋର ଆନ୍ଦୋଳନ ସୃଷ୍ଟିକଲେ । ଏ ବିଷୟରେ ଓଡ଼ିଶାର ବ୍ରାହ୍ମସମାଜର ମତ ପଚରାଯିବାରୁ ମଧୁସୂଦନ ଓ ପ୍ୟାରୀମୋହନ ନିର୍ଭୀକଭାବରେ ଓ ପ୍ରକାଶ୍ୟରେ ଏହି ଆଇନକୁ ସମର୍ଥନ କରିଥିଲେ । ପୁଣି ଯେତେବେଳେ ସେହି ବ୍ରହ୍ମାନନ୍ଦ କେଶବଚନ୍ଦ୍ର ନିଜ ପ୍ରଣୀତ ଆଇନ ବିରୋଧରେ ଯାଇ ନିଜର ଅଳ୍ପବୟସ୍କା କନ୍ୟାର ବିବାହ ଅପ୍ରାପ୍ତବୟସ୍କ ଜଣେ ରାଜପୁତ୍ର ସହିତ ସମ୍ପାଦନକଲେ, ସେତେବେଳେ ବ୍ରାହ୍ମସମାଜ ତାଙ୍କ ବିରୋଧରେ ଯେଉଁ ଆନ୍ଦୋଳନ କରିଥିଲା, ଓଡ଼ିଶାରୁ ଏହି ମଧୁସୂଦନ ଓ ପ୍ୟାରୀମୋହନ ସେ ଆନ୍ଦୋଳନକୁ ବଳିଷ୍ଠ ଭାବରେ ସମର୍ଥନ କରିଥିଲେ ।

ପ୍ୟାରୀମୋହନଙ୍କ ଜନ୍ମ ୧୮୫୧ରେ ଏବଂ ମୃତ୍ୟୁ ୧୮୮୧ରେ । ଅକାଳ ମୃତ୍ୟୁର ସମ୍ମୁଖୀନ ହୋଇନଥିଲେ ପ୍ୟାରୀମୋହନ ଓଡ଼ିଶା ପାଇଁ ଆଉରି ଅନେକ କଲ୍ୟାଣକର କାର୍ଯ୍ୟ କରିଯାଇଥା'ନ୍ତେ ଏବଂ ମଧୁସୂଦନଙ୍କ ସାହିତ୍ୟିକଜୀବନର ଅଟଳ ସ୍ତମ୍ଭ ରୂପେ ବିରାଜମାନ ରହିଥା'ନ୍ତେ । କିନ୍ତୁ ବିଧାତା ତାହା କରାଇଦେଲା ନାହିଁ । ଭଗବାନ୍ କୁଆଡ଼େ ଭଲମଣିଷଗୁଡ଼ିକୁ ନିଜ ପାଖକୁ ଶୀଘ୍ର ନେଇଯିବାକୁ ବ୍ୟାକୁଳ । ଦିନେ ଡମପଡ଼ା ରାଜାଙ୍କ ସାଙ୍ଗେ ପାରିଧି କରିବାକୁ ଯାଇ ଜଙ୍ଗଲ ଭିତରେ ଗୋଟିଏ ଝରଣାରେ କାହାର ନିଷେଧ ନମାନି ମନଇଚ୍ଛା ସ୍ନାନ କଲେ । ପରଦିନ ଭୀଷଣ ଜ୍ୱରରେ ଆକ୍ରାନ୍ତ ହୋଇ କଟକ ଫେରିଆସିଲେ । ତାଙ୍କର କଟକ ଆସିବା ସମ୍ବାଦ ପାଇ ମଧୁସୂଦନ ସର୍ବପ୍ରଥମେ ତାଙ୍କୁ ଦେଖିବାକୁ ଯାଇ ତାଙ୍କ ବସାରେ ପହଞ୍ଚିଲେ । ଜର ଦିନକୁ ଦିନ ବଢ଼ିଲା । ମଧୁସୂଦନ ଦିନରାତି ତାଙ୍କ ପାଖରେ ଥାଇ ତାଙ୍କର ସେବା-ଶୁଶ୍ରୂଷା କରୁଥା'ନ୍ତି । ପରମାତ୍ମୀୟ ସୁହୃଦଙ୍କୁ ଦେଖି ରୋଗଯନ୍ତ୍ରଣାକ୍ଲିଷ୍ଟ ପ୍ୟାରୀମୋହନଙ୍କ ଚକ୍ଷୁରୁ ସମୟେ ସମୟେ ଅଶ୍ରୁଧାର ନିର୍ଗତ ହେଉଥାଏ । ସେ ଔଷଧପତ୍ର ସେବନ କରିବାକୁ ଅନିଚ୍ଛା ପ୍ରକାଶ କରୁଥା'ନ୍ତି । ଉପସ୍ଥିତ ବନ୍ଧୁବାନ୍ଧବମାନଙ୍କ ପ୍ରତି କେବଳ ଆକୁଳ ଦୃଷ୍ଟିରେ ଚାହିଁରହିଥା'ନ୍ତି । ସେ ନୀରବ ଭାଷା ବୁଝିବାର ଶକ୍ତି କାହାର ? ମୃତ୍ୟୁର ଠିକ୍ ପୂର୍ବରୁ ତାଙ୍କର ମୁଖମଣ୍ଡଳ ଅପୂର୍ବ ଜ୍ୟୋତିରେ ଉଦ୍ଭାସିତ ହୋଇଉଠିଲା । ତା'ପରେ ସବୁ ଅନ୍ଧକାରମୟ । ମୃତ୍ୟୁ ବେଳକୁ ତାଙ୍କର ବୟସ ହୋଇଥିଲା ମୋଟେ ତିରିଶି ବର୍ଷ ।

ଅବନ୍ତୀ ଦେବୀ ଲେଖିଛନ୍ତି, ''ପ୍ୟାରୀମୋହନଙ୍କର ରୋଗଶଯ୍ୟା, ଅନ୍ତିମକାଳର କରୁଣ ଦୃଶ୍ୟ ପ୍ରଭୃତି ଶୋକାବହ ଘଟନାର କଥା ମଧୁସୂଦନ କେତେଥର ଅଶ୍ରୁପୂର୍ଣ୍ଣ ନୟନରେ ବର୍ଣ୍ଣନ କରିଅଛନ୍ତି ।''

'ବସନ୍ତଗାଥା'ର 'ଦେବାତ୍ମା ଶ୍ରୀ ପ୍ୟାରୀମୋହନ ଆଚାର୍ଯ୍ୟ' କବିତାରେ ସେ ବନ୍ଧୁଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଲେଖିଅଛନ୍ତି—

''ଚିନ୍ମୟ ନୟନୁଁ ତବ ସେ ଚିନ୍ମୟ ଧାମେ
ଝରୁଥିବ ଆହା କିବା ପ୍ରେମର ନିର୍ଝର !
ବ୍ୟଥିତ ତୃଷିତ ମୁଁ ଏ ସଂସାର-ସଂଗ୍ରାମେ,
ଦେବ କି ହେ ଦୀନେ, ସଖା ବିନ୍ଦୁ ସେ ପ୍ରେମର ?''

ଆଜିକାଲି ଯେପରି ପ୍ରାୟ ପ୍ରତ୍ୟେକ କଲେଜ ବିଶ୍ୱବିଦ୍ୟାଳୟ ପରୀକ୍ଷାର ଗୋଟିଏ ଗୋଟିଏ କେନ୍ଦ୍ର, ମଧୁସୂଦନଙ୍କ ସମୟରେ ସେପରି ନଥିଲା । ଏଫ.ଏ. ପରୀକ୍ଷା ଦେବାର ବ୍ୟବସ୍ଥା କଟକରେ ନଥିବାରୁ ମଧୁସୂଦନଙ୍କୁ ବିଶ୍ୱବିଦ୍ୟାଳୟ ପରୀକ୍ଷା ଦେବାକୁ କଲିକତା ଯିବାକୁ ପଡ଼ିଥିଲା ।

୧୮୭୧ର କୃତିତ୍ୱର ସହିତ ସେ ଏହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସରକାରୀ ବୃତ୍ତି ଲାଭ କଲେ । ତା'ପରେ ବି.ଏ. ପଢ଼ିବା କଥା । କିନ୍ତୁ କଟକରେ ସେତେବେଳେ

ବି.ଏ. ପଢ଼ିବାର ସୁବିଧା ନଥିଲା । ତେଣୁ କଲିକତା ନଗଲେ ନଚଳେ । କିନ୍ତୁ କଲିକତାକୁ ଯିବା ଆସିବା କରିବା ସେତେବେଳେ ଆଜିକାଲି ପରି ଏତେ ସହଜସାଧ୍ୟ ନଥିଲା । ସେତେବେଳକୁ ରେଳ ଚଳାଚଳ ହୋଇନାହିଁ । ଯିବାକୁ ହେଲେ କଟକରୁ ଜଳପଥରେ ବାଲେଶ୍ୱର ନିକଟବର୍ତ୍ତୀ ଚାନ୍ଦବାଲି ବନ୍ଦରକୁ ଯିବାକୁ ହେବ । ସେଠାରୁ ଷ୍ଟିମରରେ ଗଲେ କଲିକତାରେ ପହଞ୍ଚିବାକୁ ଚାରିପାଞ୍ଚଦିନରୁ କମ୍ ଲାଗିବ ନାହିଁ । ବାଟରେ ଖିଆପିଆ ବସାଉଠାରେ ମହା ଅସୁବିଧା, ପ୍ରାଣାନ୍ତକ ଯନ୍ତ୍ରଣା ଭୋଗିବାକୁ ହୁଏ । ତେଣୁ ପିତା ଭାଗୀରଥି ମଧୁସୂଦନଙ୍କୁ ଏ ଦୂର ବିଦେଶକୁ ପଠାଇବାକୁ ମୋଟେ ଆଗ୍ରହାନ୍ୱିତ ହେଲେ ନାହିଁ । ବି.ଏ. ପଢ଼ିବା ପ୍ରସ୍ତାବ ସେହିଠାରେ ସ୍ଥଗିତ ହେଲା । ତାହାପରେ ଆରମ୍ଭ ହେଲା ମଧୁସୂଦନଙ୍କର କର୍ମ-ଜୀବନ । କିନ୍ତୁ ଏହିଠାରେ ମଧୁସୂଦନଙ୍କର ପାଠ ଶେଷ ହୋଇ ମଧ୍ୟ ଆମରଣ ଅଶେଷ ହୋଇ ରହିଥିଲା । ସାରା ଜୀବନଟି ତାଙ୍କର ଅତୃପ୍ତ ଜ୍ଞାନପିପାସାର ପବିତ୍ର ସାଧନାର ପୀଠ ଥିଲା । ସୁମହାନ୍ ଭାବରାଶି ସମ୍ୱଳିତ ଗ୍ରନ୍ଥମାନଙ୍କ ସହିତ ତାଙ୍କର ସମ୍ପର୍କ ଥିଲା ନିରବଚ୍ଛିନ୍ନ । ରବୀନ୍ଦ୍ରନାଥଙ୍କ ଭାଷାରେ ତାଙ୍କ ଜ୍ଞାନ ସାଧନା 'ଶେଷ ହୟ ହଇଲ ନା ଶେଷ' । ଋଗ୍‌ବେଦର ଏହି ବରେଣ୍ୟ ମନ୍ତ୍ର 'ଆ ନୋ ଭଦ୍ରାଃ କ୍ରତବୋ ଯନ୍ତୁ ବିଶ୍ୱତଃ,' (ଅର୍ଥାତ୍ ସକଳ ଦିଗ-ଦିଗନ୍ତରୁ ଉଦାର ଓ ସମୁଚ୍ଚ ଭାବରାଜି ଆମ୍ଭମାନଙ୍କ ନିକଟକୁ ଆଗମନ କରୁ) ମଧୁସୂଦନଙ୍କୁ ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ଉଦ୍‌ବୁଦ୍ଧ ଓ ଉଦ୍ଦୀପ୍ତ କରି ରଖିଥିଲା । ମୃତ୍ୟୁର କେବଳ ତିନି ଚାରିଦିନ ପୂର୍ବରୁ ନିଜ ପ୍ରଶସ୍ତ ପ୍ରକୋଷ୍ଠରେ ଉଜ୍ଜ୍ୱଳ ରବିରଶ୍ମି ବିକୀର୍ଣ୍ଣ ହୋଇ ପଡ଼ିଥିବାର ଦେଖି ପ୍ରସନ୍ନଚିତ୍ତରେ ପୁତ୍ର ସୁକାନ୍ତକୁ କହିଥିଲେ, More light more air; ଏହା ଯଥାସ୍ଥାନରେ ଆଲୋଚିତ ହେବ ।"

ରାଧାନାଥ, ତାଙ୍କର ସମସାମୟିକ ଫକୀରମୋହନ ଓ କବି ଗଙ୍ଗାଧର ମେହେରଙ୍କ ଜୀବନରେ ଅନୁଷ୍ଠାନଗତ ଶିକ୍ଷା ଏହିପରି ଅସମ୍ପୂର୍ଣ୍ଣ ରହିଥିଲା ।

—

# ପଞ୍ଚମ ଅଧ୍ୟାୟ

## କର୍ମଜୀବନର ପ୍ରଥମ ପର୍ଯ୍ୟାୟ

ଏଫ୍.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମଧୁସୂଦନ ଜିଲ୍ଲାସ୍କୁଲର ତୃତୀୟ ଶିକ୍ଷକରୂପେ ନିଯୁକ୍ତ ହେଲେ; କିନ୍ତୁ ଘରେ ନପଶୁଣୁ ଚାଳ ବାଜିଲାପରି ଏଥିରେ ଅନ୍ତରାୟ ହୋଇ ଛିଡ଼ାହେଲେ ସେ ସମୟର ଶିକ୍ଷାବିଭାଗର ଇନ୍‌ସପେକ୍ଟର ମାର୍ଟିନ ସାହେବ । ସେ ବଙ୍ଗ ପ୍ରଦେଶରୁ ଆଉ ଜଣେ ବ୍ୟକ୍ତିଙ୍କୁ ଏ କାର୍ଯ୍ୟ ସକାଶେ ପଠାଇଥିବାରୁ ମଧୁସୂଦନଙ୍କୁ ନିରାଶ ହେବାକୁ ପଡ଼ିଲା । ହିତାକାଙ୍‌କ୍ଷୀ ରାଧାନାଥ ଏ କଥା ଶୁଣି ନିରତିଶୟ କ୍ଷୁଣ୍ଣ ହେଲେ । ସେତେବେଳେ ସେ ବାଲେଶ୍ୱର ଜିଲାର ଡେପୁଟି ଇନ୍‌ସପେକ୍ଟର । ଏହାର ଅଳ୍ପଦିନ ପରେ ମାର୍ଟିନ ସାହେବ ବିଦ୍ୟାଳୟ ପରିଦର୍ଶନ କରିବାକୁ ଓଡ଼ିଶାକୁ ଆସିଲେ । ବାଲେଶ୍ୱରରେ ଥିଲାବେଳେ ରାଧାନାଥ ତାଙ୍କୁ ଏ ବିଷୟ ଜଣାଇ କହିଲେ, ''ମଧୁସୂଦନ ରାଓଙ୍କୁ ପୁରୀଜିଲା ସ୍କୁଲରେ ନିୟୋଗ ବ୍ୟାପାରରେ ହତାଶ କରାଯାଇଅଛି; ଏହା ଉଚିତ ହୋଇନାହିଁ । ସେ ଏଫ୍.ଏ. ପାସ୍ କରିଥିଲେ ସୁଦ୍ଧା ବି.ଏ. ଉପାଧିଧାରୀଙ୍କ ଅପେକ୍ଷା ତାଙ୍କର ଯୋଗ୍ୟତା ଅଧିକ ବୋଲି ମୁଁ ମନେକରେ । ଓଡ଼ିଶାରେ ତାଙ୍କ ପରି ଯୋଗ୍ୟଲୋକ ଆଉ ନାହାନ୍ତି ବୋଲି କହିଲେ ଚଳେ । ସୁତରାଂ ସର୍ବାଗ୍ରେ ତାହାଙ୍କୁହିଁ ନିଯୁକ୍ତ କରିବା ଉଚିତ ଥିଲା ।''

କଥାଟା ନିତାନ୍ତ ଯୁକ୍ତିଯୁକ୍ତ । ସାହେବଙ୍କ ମନକୁ ବେଶ୍ ପାଇଲା । ସୁଯୋଗ ବି ଆସି ପହଞ୍ଚିଲା । କଟକ ହାଇସ୍କୁଲରେ ଜଣେ ବଙ୍ଗୀୟ ଅତିରିକ୍ତ ଶିକ୍ଷକ ଥିଲେ । ତାଙ୍କର ଟିକିଏ ମସ୍ତିଷ୍କ ବିକାର ଥିଲା । ତେଣୁ ମାର୍ଟିନ ସାହେବ ସ୍ଥିରକରିଥିଲେ, ଏହି ଶିକ୍ଷକଙ୍କୁ ଅପସାରିତ କରି ତାଙ୍କରି ସ୍ଥାନରେ ମଧୁସୂଦନଙ୍କୁ ନିଯୁକ୍ତିପତ୍ର ଦେବେ । କିନ୍ତୁ ପରେ ଶୁଣାଗଲା ଉଚ୍ଚପଦସ୍ଥ କର୍ମଚାରୀଙ୍କ ନିର୍ଦ୍ଦେଶରେ ଏହି ଅତିରିକ୍ତ ଶିକ୍ଷକ ପଦଟି ଉଠିଯିବ । ମାର୍ଟିନ୍ ଦୁଃଖିତ ହେଲେ । ମଧୁସୂଦନ ଏହି ଦ୍ୱିତୀୟ ବିଘ୍ନ ଦେଖି ନିଶ୍ଚୟ ଚିନ୍ତିତ ହୋଇଥିବେ; କିନ୍ତୁ ଏହି ସମୟରେ ଯାଜପୁର ମଧ୍ୟ ଇଂରାଜୀ ବିଦ୍ୟାଳୟର ପ୍ରଧାନଶିକ୍ଷକ ପଦ ଶୂନ୍ୟ ପଡ଼ିଥିବାର ଶୁଣି ମାର୍ଟିନ୍ ମଧୁସୂଦନଙ୍କୁ ସେହି ସ୍କୁଲର ପ୍ରଧନାଶିକ୍ଷକରୂପେ ମାସିକ ୪୦ ଟଙ୍କା ବେତନରେ ନିଯୁକ୍ତ କଲେ ।

ମଧୁସୂଦନଙ୍କ ସରକାରୀ ଚାକିରିର ଅୟମାରମ୍ଭ ଏହିଠାରେ । ସେତେବେଳେ ଏହି ତରୁଣ ପ୍ରଧାନଶିକ୍ଷକଙ୍କ ବୟସ ମୋଟେ ୧୮ ବର୍ଷ । ପତ୍ନୀ ପଦ୍ମାବାଈଙ୍କର ବୟସ ମାତ୍ର

୧୫ । ପୁତ୍ର-ବତ୍ସଳ ଭାଗୀରଥି ମଧୁସୂଦନ ସହ ପୁତ୍ରବଧୂଙ୍କୁ ମଧ୍ୟ ଯାଜପୁର ଯିବାକୁ ଅନୁମତି ଦେଲେ । ସାଙ୍ଗରେ ଗଲେ ଭାଗୀରଥିଙ୍କ ଦ୍ୱିତୀୟା ପତ୍ନୀ ତୁଳସୀ ବାଈଙ୍କର ବିଧବା ଭଉଣୀ ଓ ସାନପୁଅ ଜଗନ୍ନାଥ ।

ଗୋରୁଗାଡ଼ିରେ ବସି ପୁରୀରୁ ବାହାରି ଯାଜପୁରରେ ପହଞ୍ଚିବାକୁ ପ୍ରାୟ ସପ୍ତାହେ ଖଣ୍ଡେ ଲାଗିଗଲା । ବାଟରେ ବହୁ ନଈ ନାଳ ପାରିହେବାକୁ ପଡ଼ିଲା । ପଥ ମଧ୍ୟରେ ପାନ୍ଥଶାଳାରେ ଆଶ୍ରୟ ନେଇ ସେହିଠାରେ ଆହାରାଦି କରିବାକୁ ହୁଏ ।

ଯାଜପୁର ସ୍କୁଲର କୌଣସି କୌଣସି ଛାତ୍ର ପ୍ରଧାନ ଶିକ୍ଷକଙ୍କଠାରୁ ବୟସରେ ବଡ଼ ଥିଲେ । ତେଣୁ ତାଙ୍କୁ ଦେଖି ସେମାନେ ପ୍ରଥମେ ପ୍ରଥମେ ମୁହଁମୋଡ଼ିଦେଲେ । ପଛରେ ଚୁଗୁଲି ବିଚାର କରି ପ୍ରଧାନ ଶିକ୍ଷକଙ୍କ ପ୍ରତି କିଞ୍ଚିତ ଉପେକ୍ଷା ଓ ଅସମ୍ମାନ ଦେଖାଇବାକୁ ଉଦ୍ୟମ କରୁଥିଲେ; କିନ୍ତୁ ମଧୁସୂଦନଙ୍କର କର୍ମତତ୍ପରତା, ସମୟାନୁବର୍ତ୍ତିତା, ଗାମ୍ଭୀର୍ଯ୍ୟ ଓ ତେଜସ୍ୱିତା ଦେଖି ସେମାନଙ୍କର ମନର ଭାବ ଅଳ୍ପଦିନ ମଧ୍ୟରେ ପରିବର୍ତ୍ତିତ ହୋଇଗଲା । ଅଳ୍ପ ସମୟ ଭିତରେ ମଧୁସୂଦନ ସାନ ବଡ଼ ସବୁ ଛାତ୍ରଙ୍କର ଶ୍ରଦ୍ଧା, ସମ୍ମାନ ଓ ପ୍ରୀତିଭାଜନ ହୋଇପଡ଼ିଲେ ।

ଦେଢ଼ଟି ବର୍ଷ ଯାଜପୁର ସ୍କୁଲରେ ପ୍ରଶଂସାର ସହିତ କାର୍ଯ୍ୟ କଲା ପରେ ବାଲେଶ୍ୱର ଜିଲାସ୍କୁଲର ହେଡ୍‌ମାଷ୍ଟର ପଦ ଖାଲି ହେଲା । ସେତେବେଳର ବାଲେଶ୍ୱର ଜିଲାର କଲେକ୍ଟର ବୀମ୍‌ସ ସାହେବ ଜିଲା-ସମିତିର ସଭାପତି ଥିଲେ । ଜିଲାସ୍କୁଲର ପରିଚାଳନା ଦାୟିତ୍ୱ ବି ତାଙ୍କରି ଉପରେ ନ୍ୟସ୍ତ ଥିଲା । ସେ ସ୍କୁଲର ଦ୍ୱିତୀୟ ଶିକ୍ଷକ ଉମାପ୍ରସାଦ ଦେଙ୍କୁ ହେଡ଼ମାଷ୍ଟରରୂପେ ନିଯୁକ୍ତ କରି ମଧୁସୂଦନଙ୍କୁ ଏହି ସ୍କୁଲରେ ଦ୍ୱିତୀୟ ଶିକ୍ଷକ ରୂପେ ନିଯୁକ୍ତ କଲେ । ମଧୁସୂଦନ ଏହି ନିଯୁକ୍ତିପତ୍ର ପାଇ ବାଲେଶ୍ୱରରେ ଆସି ପହଞ୍ଚିଲେ । କିନ୍ତ ହଠାତ୍ ଏକ ବିଘ୍ନ ଉପସ୍ଥିତ ! ଏହାକୁ ମିଶାଇ ବିଘ୍ନ ତିନିଥର ମଧୁସୂଦନଙ୍କ ମନକୁ ଦୁଶ୍ଚିନ୍ତାଗ୍ରସ୍ତ କରିଥିଲା । କିନ୍ତୁ 'ଶ୍ରେୟାଂସି ବହୁବିଘ୍ନାନି'– ଭଗବାନ୍ ଯାହା କରନ୍ତି ମଙ୍ଗଳ ନିମନ୍ତେ । ଯେ ଆମ୍ଭମାନଙ୍କୁ ଏହି ପ୍ରାତସ୍ମରଣୀୟ ପବିତ୍ର ମନ୍ତ୍ର ଦେଇ ଯାଇଅଛନ୍ତି– ''ତୋର ମଙ୍ଗଳବିଧାନ, କରିଅଛି ମରଣକୁ ଅମୃତ ସୋପାନ ।'' ତାଙ୍କ ପକ୍ଷରେ ମନୁଷ୍ୟ ସୃଷ୍ଟ ଏ ବିଘ୍ନର ସ୍ଥାୟିତ୍ୱ ବା କେଉଁଠାରେ ? ବିଘ୍ନବିନାଶନ ଭଗବାନ ପୂର୍ବପରି ଏ ବିଘ୍ନକୁ ମଧ୍ୟ ତାଙ୍କର ହିରଣ୍ୟମୟ କୁଠାରରେ ଖଣ୍ଡବିଖଣ୍ଡିତ କରିଦେଲେ । ବିଘ୍ନଟି ହେଉଛି, ମଧୁସୂଦନ ନିଯୁକ୍ତିପତ୍ର ପାଇ ବାଲେଶ୍ୱର ସ୍କୁଲରେ ଯୋଗଦେବାକୁ ବସିଛନ୍ତି, ଇନ୍‌ସପେକ୍ଟର ହପ୍‌କିନ୍‌ସ ସାହେବ ଜିଦ୍ ଧରି ବସିଲେ, ''ଏ ନିଯୁକ୍ତିପତ୍ର ଜିଲା ସମିତିର ଏକ ଭୟଙ୍କର ଅନଧିକାର ଚର୍ଚ୍ଚା ଓ ଅବାଞ୍ଛନୀୟ ହସ୍ତକ୍ଷେପ ।'' ଏକଥା ଶୁଣି ମଧୁସୂଦନ ନିରାଶଚିତ୍ତରେ ବାଲେଶ୍ୱରରୁ ଫେରିଆସିବାକୁ ବସିଲେ; କିନ୍ତୁ ସୌଭାଗ୍ୟକ୍ରମେ ବୀମ୍‌ସ ସାହେବ ଏହି ସମୟରେ ଓଡ଼ିଶାର ଅସ୍ଥାୟୀ କମିଶନର ରୂପେ

ନିଯୁକ୍ତ ହେଲେ । ତାଙ୍କର କ୍ଷମତା ଇନ୍‌ସପେକ୍ଟର ହପକିନ୍‌ସଙ୍କଠାରୁ ଅଧିକ ବ୍ୟାପକ ଓ ଫଳପ୍ରଦ । ସେ କଟକରୁ ବାଲେଶ୍ୱରର ଡେପୁଟି ଇନ୍‌ସପେକ୍ଟର ରାଧାନାଥଙ୍କ ନିକଟକୁ ତାର କଲେ, "Let Madhusudan stay where he is"– ମଧୁସୂଦନ ଯେଉଁଠାରେ ଅଛନ୍ତି ସେହିଠାରେ ରହନ୍ତୁ ।

ବାଧାବିଘ୍ନ ଅପସାରିତ ହେଲା । ୧୮୭୩ ମସିହା ଅକ୍ଟୋବର ୨୯ ତାରିଖରେ ମଧୁସୂଦନ ବାଲେଶ୍ୱର ଜିଲାସ୍କୁଲର ଦ୍ୱିତୀୟ ଶିକ୍ଷକ ପଦରେ ଯୋଗଦେଲେ ।

ଯାଜପୁରଠାରେ ଫକୀରମୋହନଙ୍କ ସହିତ ମଧୁସୂଦନଙ୍କର ପ୍ରଥମ ପରିଚୟ ହୋଇଥିଲା । ବାଲେଶ୍ୱରକୁ ଆସିବାରୁ ତାଙ୍କର ସେ ପରିଚୟ ଆମରଣ ଘନିଷ୍ଠ ବନ୍ଧୁତାରେ ପରିଣତ ହେଲା । ଆଧୁନିକ ଓଡ଼ିଆ ସାହିତ୍ୟର ସ୍ରଷ୍ଟାତ୍ରୟୀଙ୍କର ତ୍ରିବେଣୀ ସଙ୍ଗମ ହେଲା ଏହି ବାଲେଶ୍ୱରରେ । ଏହି ବାଲେଶ୍ୱର ହେଲା ରାଧା-ମଧୁ-ଫକୀରଙ୍କ ସମ୍ମିଳିତ ସାହିତ୍ୟ-ସାଧନାର ପରମ ପୀଠସ୍ଥଳୀ ।

ରାଧାନାଥ ଓ ମଧୁସୂଦନଙ୍କ ପରି ଫକୀରମୋହନଙ୍କ କର୍ମ ଜୀନର ସୂତ୍ରପାତ ମଧ ଶିକ୍ଷକତାରେ । ସେତେବେଳେ ଓଡ଼ିଆ ଭାଷାର ଅବନତି ଦେଖି ରାଧାନାଥ, ମଧୁସୂଦନ ଓ ଫକୀରମୋହନଙ୍କର ପ୍ରାଣ ଅତ୍ୟନ୍ତ ବ୍ୟଥିତ ହେଉଥିଲା । ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକ ଲେଖି ଓଡ଼ିଶାର ବିଦ୍ୟାଳୟମାନଙ୍କରେ ବଙ୍ଗୀୟ ବାତାବରଣ ପରିବର୍ତ୍ତେ ଶୁଦ୍ଧ ଓଡ଼ିଆ ବାୟୁମଣ୍ଡଳ ସୃଷ୍ଟି କରିବା ଥିଲା ତିନିଙ୍କର ଆନ୍ତରିକ ଇଚ୍ଛା । ଭାଷା ଜନନୀ ପ୍ରତି କୋମଳମତି ବାଳକମାନଙ୍କ ମନରେ ପ୍ରଗାଢ଼ ଶ୍ରଦ୍ଧା ଓ ଅନୁରାଗ ସଞ୍ଚାର କରିବା ଥିଲା ଏମାନଙ୍କର ପ୍ରାଣର ବ୍ୟାକୁଳତା । ଫକୀରମୋହନଙ୍କ ଚେଷ୍ଟାରେ କେବଳ ଓଡ଼ିଶାର ବିଦ୍ୟାଳୟମାନଙ୍କରୁ ବଙ୍ଗଭାଷାର ପ୍ରତିପତ୍ତି ଓ ପ୍ରାଧାନ୍ୟ ଲୋପ ପାଇନଥିଲା, ଓଡ଼ିଆ ପାଠ୍ୟ-ପୁସ୍ତକ ରଚନାର ମୂଳଭିତ୍ତି ମଧ ପଡ଼ିଥିଲା । ଫକୀରମୋହନ ସେନାପତି ତାଙ୍କ 'ଆତ୍ମ-ଚରିତ'ରେ ଲେଖିଛନ୍ତି, "ମିସନ ସ୍କୁଲରେ ପଢ଼ାଉଥିବା ସମୟରେ (୧୮୬୪-୧୮୭୧) ମୁଁ ଉତ୍କଳ-ସାହିତ୍ୟର ଉନ୍ନତି ଏବଂ ବିସ୍ତାର ସକାଶେ କାୟମନୋବାକ୍ୟରେ ଚେଷ୍ଟା କରୁଥାଏଁ । ମୁଁ ପ୍ରଥମରେ 'ରାଜପୁତ୍ରର ଇତିହାସ' ନାମକ ଖଣ୍ଡିଏ ଗଦ୍ୟ ପୁସ୍ତକ ଲେଖିଲି । ସେ ସମୟରେ ଉତ୍କଳରେ ଗୋଟିଏ ମାତ୍ର ପ୍ରେସ୍ ଥିଲା– କଟକ ମିସନ୍ ପ୍ରେସ୍ । ମୁଁ ସେହି ପ୍ରେସ୍‌କୁ ଲେଖି ଜାଣିଲି ଯେ ତାହା ଛପାଇବାକୁ ଚାରିଶତ ଟଙ୍କା ଲାଗିବ । ସେତେବେଳେ ମୋର ଏତେ ଟଙ୍କା ନଥିଲା । ମୁଁ ସେଥିରୁ ନିବୃତ୍ତ ହେଲି । ପରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଅନୁମତି ପାଇ ତାହାଙ୍କ ଲିଖିତ ବଙ୍ଗଳା 'ଜୀବନ-ଚରିତ' ଖଣ୍ଡି ଓଡ଼ିଆରେ ଅନୁବାଦ କରି କଲିକତା ବ୍ୟାପଟିଷ୍ଟ ମିସନ୍ ପ୍ରେସ୍‌ରେ ଛପାଇ ଆଣିଲି । ଉକ୍ତ ପୁସ୍ତକ ଛାତ୍ରବୃତ୍ତି ପରୀକ୍ଷା ସକାଶେ ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହେଲା । ତହିଁ ଉତ୍ତାରେ ଖଣ୍ଡିଏ ବ୍ୟାକରଣ ଓ ଖଣ୍ଡିଏ ଅଙ୍କମାଳା ଲେଖିଲି । ସେ ଦୁଇଖଣ୍ଡ

ମଧ୍ୟ ସ୍କୁଲସମୂହରେ ଚଳିବାକୁ ଲାଗିଲା ।'' ତତ୍ପରେ ସାହିତ୍ୟ-ରଥୀ ସେନାପତିଙ୍କ ଉଦ୍ୟମରେ ପ୍ରତିଷ୍ଠିତ ହେଲା ଗୋଟିଏ ସମିତି— ଯାହାର ଏକମାତ୍ର ଲକ୍ଷ୍ୟ ଓଡ଼ିଆ ସାହିତ୍ୟର ଉନ୍ନତି ଓ ପ୍ରସାର । ଆଧୁନିକ ଓଡ଼ିଆ ସାହିତ୍ୟର ବିବର୍ତ୍ତନର ଗୋଟିଏ ଉଲ୍ଲେଖଯୋଗ୍ୟ ଯୁଗାନ୍ତକାରୀ ଘଟନା ହେଉଛି— ଫକୀରମୋହନଙ୍କର ଅକ୍ଳାନ୍ତ ଉଦ୍ୟମ ଓ ଅତନ୍ଦ୍ର ଅଧ୍ୟବସାୟରେ ୧୮୬୮ରେ ବାଲେଶ୍ୱରରେ ଗୋଟିଏ ଛାପାଖାନା ସ୍ଥାପନ— ସେହି ଛାପାଖାନାର ନାମ ପି.ଏମ୍. ସେନାପତି ଏଣ୍ଡ୍ କୋ : ଉତ୍କଳ ପ୍ରେସ୍ । ଏ ପ୍ରେସ୍‌ରୁ କେବଳ 'ରସକଲ୍ଲୋଳ' ଓ ଅନ୍ୟାନ୍ୟ ପ୍ରାଚୀନ ଓଡ଼ିଆ କାବ୍ୟ ପ୍ରକାଶ ପାଉନଥିଲା, କମ୍ପାନୀର କାର୍ଯ୍ୟନିର୍ବାହିକା ସମିତିର ପ୍ରସ୍ତାବ ଅନୁସାରେ ଗୋଟିଏ ପତ୍ରିକା ମଧ୍ୟ ପ୍ରକାଶ ପାଇଲା । ପତ୍ରିକାର ନାମ ଦିଆହେଲା— 'ବୋଧଦାୟିନୀ ଏବଂ ବାଲେଶ୍ୱର ସମ୍ବାଦ-ବାହିକା' । ଫକୀରମୋହନଙ୍କ ନିଜ ଭାଷାରେ ''ବୋଧଦାୟିନୀ ଅଂଶ ସାହିତ୍ୟ-ବିଷୟକ ଏବଂ ସମ୍ବାଦ-ବାହିକା ଅଂଶ ସମ୍ବାଦ ବିଷୟକ ପତ୍ରିକା ବାହାରିଲା; ମାତ୍ର ଲେଖକର ଅଭାବ । ମୁଁ ଦିନଯାକ ସ୍କୁଲ ଓ ପ୍ରେସ୍ କାର୍ଯ୍ୟ କରି ଥକିପଡ଼େ । ରାତିରେ ବିଶେଷ କିଛି କାର୍ଯ୍ୟ କରିବାକୁ ବଳ ଅଣ୍ଟେ ନାହିଁ । ସେଥିପାଇଁ ପତ୍ରିକା ଅନିୟମିତରୂପେ ବାହାରେ । ପ୍ରାୟ ଚାଳିଶ ପଚାଶ ଜଣ ପତ୍ରିକାର ଗ୍ରାହକ ଥିଲେ । ଆଠ ଦଶ ଜଣଙ୍କଠାରୁ ମୂଲ୍ୟ ଆଦାୟ ହେଉଥିଲା ।''

ମଧୁସୂଦନ ବାଲେଶ୍ୱରରେ ଆସି ପହଞ୍ଚିଲାବେଳକୁ ଫକୀରମୋହନଙ୍କ ଉଦ୍ୟମରେ ଓଡ଼ିଆଭାଷା ପ୍ରସାରର ଇତିହାସ ଏହିପରି । ରାଧାନାଥ ଆଗରୁ ବାଲେଶ୍ୱରରେ ଥିଲେ । ବାବୁ ମଧୁସୂଦନ ଦାସ (କୁଳବୃଦ୍ଧ ମଧୁବାବୁ) ସେ ସମୟରେ ମଧ୍ୟ ବାଲେଶ୍ୱର ଜିଲାସ୍କୁଲର ତୃତୀୟ ଶିକ୍ଷକ ଥିଲେ । ଫକୀରମୋହନ ଓ ମଧୁସୂଦନ ଦାସ ବାଲେଶ୍ୱରର ମୋତିଗଞ୍ଜ ବଜାରର ଦକ୍ଷିଣ ପ୍ରାନ୍ତରେ ଥିବା ଗଡ଼ଗଡ଼ିଆ ପୋଖରୀର ପକ୍କାଘାଟରେ ବସି ନାନା ଦେଶହିତକର କାର୍ଯ୍ୟ ବିଷୟରେ ଆଳାପ କରନ୍ତି; କିନ୍ତୁ ପିତାଙ୍କ ଭୟରେ ରାଧାନାଥ ଦିନରେ ଏ ଦୁହିଁଙ୍କ ସହିତ ଆସି ଗଡ଼ଗଡ଼ିଆ ଘାଟରେ ମିଳାମିଶା କରିପାରନ୍ତି ନାହିଁ । ଦିନେ ଦିନେ ସେଠାରେ ଆସି ସନ୍ଧ୍ୟା ସମୟରେ ଉପସ୍ଥିତ ହୋଇଯା'ନ୍ତି ।

ମଧୁସୂଦନ ବାଲେଶ୍ୱରକୁ ଆସିବା ପରେ ସାହିତ୍ୟ ଚର୍ଚ୍ଚାରେ ଗୋଟିଏ ନୂତନ ପର୍ଯ୍ୟାୟ ଉଦ୍‌ଘାଟିତ ହେଲା । କୁମାର ବୈକୁଣ୍ଠନାଥ ଦେ ମଧ୍ୟ ଏ ଚର୍ଚ୍ଚାରେ ଯୋଗ ଦେଲେ । ବୈକୁଣ୍ଠନାଥଙ୍କର ନବପ୍ରତିଷ୍ଠିତ ମୁଦ୍ରାଯନ୍ତ୍ରରେ ରାଧାନାଥ ଓ ମଧୁସୂଦନଙ୍କ ଲିଖିତ ନୂତନ ନୂତନ ପୁସ୍ତକ ପ୍ରକାଶ ପାଇବାକୁ ଲାଗିଲା । ଏହି ବୈକୁଣ୍ଠନାଥ ଓଡ଼ିଆ ସାହିତ୍ୟର ଯେପରି ଉତ୍ସାହୀ ପୃଷ୍ଠପୋଷକ ଥିଲେ, ସେହିପରି ଜଣେ ଉଦାରହୃଦୟ ଓ ସ୍ୱଦେଶହିତୈଷୀ ପୁରୁଷ ଥିଲେ । ଫକୀରମୋହନଙ୍କର ସେ ଥିଲେ ପରମାତ୍ମୀୟ । ରାଧାନାଥ ଓ ମଧୁସୂଦନଙ୍କ ଯତ୍ନରେ ଏହି ମୁଦ୍ରଣାଳୟରୁ 'ଉତ୍କଳ-ଦର୍ପଣ' ନାମରେ

ଗୋଟିଏ ଓଡ଼ିଆ ମାସିକ ପତ୍ରିକା ପ୍ରକାଶ ପାଉଥିଲା । ଏ ଉଭୟେ ଏହି ପତ୍ରିକାର ପ୍ରଧାନ ଲେଖକ ଥିଲେ । ଏମାନଙ୍କର ପ୍ରଥମ ଲେଖା ସବୁ ପ୍ରଥମେ ଏହି ପତ୍ରିକାରେ ପ୍ରକାଶିତ ହୋଇଥିଲା । ରାଧାନାଥଙ୍କର 'ଇତାଲୀୟ ଯୁବା', 'ବିବେକୀ' ପ୍ରଭୃତି ଗଦ୍ୟରଚନା; 'ମେଘଦୂତ'ର ଅନୁବାଦ ଏବଂ ମଧୁସୂଦନଙ୍କର 'ପ୍ରଣୟର ଅଦ୍ଭୁତ ପରିଣାମ' ନାମକ ଗଳ୍ପ; 'ଚନ୍ଦ୍ରତାରା', 'ଉଲ୍‌କାପିଣ୍ଡ', 'ସୂର୍ଯ୍ୟ', 'ଆଗ୍ନେୟଗିରି' ପ୍ରଭୃତି ପ୍ରବନ୍ଧ; ଓ 'ନିଶିଥ ଚିନ୍ତା', 'ଶ୍ମଶାନ', 'ଅଯୋଧ୍ୟା ପ୍ରତ୍ୟାଗମନ' ପ୍ରଭୃତି ମୌଳିକ କବିତା ଓ ଅନୁବାଦ ଏହି ପତ୍ରିକାରେ ପ୍ରଥମେ ପ୍ରକାଶିତ ହୋଇଥିଲା । ତତ୍‌ପରେ ଅନ୍ୟାନ୍ୟ ପ୍ରବନ୍ଧ ଓ କବିତା ସହିତ 'ଉତ୍କଳ-ଦର୍ପଣ'ରେ ପ୍ରକାଶିତ ଏହିସବୁ ପ୍ରବନ୍ଧ ଓ କବିତା ସଂକଳିତ ହୋଇ ଯଥାକ୍ରମେ 'ପ୍ରବନ୍ଧମାଳା' ଓ 'କବିତାବଳୀ' ନାମରେ ପ୍ରକାଶିତ ହେଲା । ଏଇ ଦୁଇଟି ପୁସ୍ତକ ହେଲା ପ୍ରଥମ ଉଲ୍ଲେଖଯୋଗ୍ୟ ବିଦ୍ୟାଳୟୋପଯୋଗୀ ସୁରୁଚିସମ୍ପନ୍ନ ସାହିତ୍ୟଧର୍ମୀ ପାଠ୍ୟପୁସ୍ତକ । ପାଠ୍ୟପୁସ୍ତକ ରୂପେ ଏହି ବହି ଦୁଇଟି ଅନେକ ବର୍ଷ ଧରି ଓଡ଼ିଶାରେ ପ୍ରଚଳିତ ଥିଲା ।

ସମଗ୍ର ଓଡ଼ିଶାର ଛାତ୍ର ଓ ଶିକ୍ଷକ ସମାଜରେ ଲେଖକ ଭାବରେ ମଧୁସୂଦନଙ୍କର ଖ୍ୟାତି ଓ ପ୍ରତିଷ୍ଠା ଏହିପରି ବାଲେଶ୍ୱରରୁହିଁ ପ୍ରଥମେ ବିକୀର୍ଣ୍ଣ ହୋଇଥିଲା ।

କଟକ ହାଇସ୍କୁଲରେ ଅତିରିକ୍ତ ଶିକ୍ଷକ ପଦଟି ପୁନର୍ବାର ସୃଷ୍ଟି ହେବାରୁ ମଧୁସୂଦନ ସେହି କାର୍ଯ୍ୟରେ ମାସିକ ୭୫ ଟଙ୍କା ବେତନରେ ନିଯୁକ୍ତ ହେଲେ । ୧୮୭୫ ଠାରୁ ୧୯୧୨ରେ ମୃତ୍ୟୁ ପର୍ଯ୍ୟନ୍ତ ମଧୁସୂଦନ କଟକରେ ପ୍ରାୟ ସ୍ଥାୟୀଭାବରେ ରହିଥିଲେ । ୧୮୭୪ ଜୁନ୍ ୫ ତାରିଖରେ ତାଙ୍କର ପ୍ରଥମ ସନ୍ତାନ କନ୍ୟା ବାସନ୍ତୀ ବାଲେଶ୍ୱରରେ ଜନ୍ମଗ୍ରହଣ କରିଥିଲେ । ୧୮୯୩ ମସିହାରେ କେତେ ମାସ ପାଇଁ ତାଙ୍କୁ କେବଳ ବାଲେଶ୍ୱରର ଡେପୁଟି ଇନ୍‌ସପେକ୍ଟର କାର୍ଯ୍ୟ କରିବା ନିମନ୍ତେ କଟକରୁ ସ୍ଥାନାନ୍ତରିତ ହେବାକୁ ପଡ଼ିଥିଲା ।

କଟକ ସ୍କୁଲରେ ଅତିରିକ୍ତ ଶିକ୍ଷକ ପଦରେ ତାଙ୍କୁ ବେଶିଦିନ ରହିବାକୁ ପଡ଼ିଲା ନାହିଁ । ଅଳ୍ପଦିନ ପରେ ଦ୍ୱିତୀୟ ଶିକ୍ଷକ ପଦ ଶୂନ୍ୟ ପଡ଼ିବାରୁ ତାଙ୍କୁ ଏହି ପଦରେ ନିଯୁକ୍ତ କରାଗଲା । ଏହି ସ୍କୁଲରେ ସେତେବେଳେ କେତେକ ଦୁଷ୍ଟ, ଅବାଧ ଓ ଦୁର୍ବିନୀତ ଛାତ୍ର ଥିଲେ, ଯେଉଁମାନଙ୍କର ପାଠପଢ଼ାରେ ଆଦୌ ଆଗ୍ରହ କିମ୍ବା ସ୍ପୃହା ନଥିଲା । ଅକାରଣରେ ଗଣ୍ଡଗୋଳ ଭିଆଇ କ୍ଲାସ୍‌ରେ ବିଶୃଙ୍ଖଳା ସୃଷ୍ଟି କରିବା ଥିଲା ସେହି କତିପୟ ଛାତ୍ରଙ୍କର କାର୍ଯ୍ୟ । କିନ୍ତୁ ମଧୁସୂଦନ ନିଜର ଆଦର୍ଶ ଶିକ୍ଷାଦାନ ପ୍ରଣାଳୀ, ଅସାମାନ୍ୟ ଗାମ୍ଭୀର୍ଯ୍ୟ, ନିର୍ମଳ ଚରିତ୍ରବତ୍ତା ଓ ଅକପଟ ସ୍ନେହ ସହାନୁଭୂତିରେ ସେହି ଦୁର୍ଦ୍ଦାନ୍ତ ଛାତ୍ରମାନଙ୍କୁ ଏପରି ଭାବରେ ଶୃଙ୍ଖଳିତ ଓ ନିୟନ୍ତ୍ରିତ କରିଥିଲେ ଯେ ସେମାନେ ଅଳ୍ପ ସମୟ ମଧ୍ୟରେ ନିଜ ନିଜର ଭୁଲ ବୁଝିପାରି ଅନୁତପ୍ତ ହୋଇ ସତ୍‌ପଥରେ ଚାଳିତ ହୋଇଥିଲେ ଏବଂ

ସେମାନଙ୍କ ମଧ୍ୟରୁ କେତେ ଜଣ ମଧ୍ୟ ଆଶାତୀତ ଭାବରେ ଭବିଷ୍ୟତ୍ ଜୀବନରେ ସାଧାରଣ କର୍ମକ୍ଷେତ୍ରରେ ବିଶେଷ କୃତିତ୍ୱ ଓ ସାଫଲ୍ୟ ଲାଭକରିପାରିଥିଲେ ।

ମଧୁସୂଦନ ରଗ୍‌ବିର ଆର୍ନଲଡ୍‌ଙ୍କ ପରି ଛାତ୍ରମାନଙ୍କ ମଧ୍ୟରେ କେବଳ ପାପ ପ୍ରବୃତ୍ତିର ଦମନ ନୁହେଁ, ପୁଣ୍ୟର ପ୍ରସ୍ଫୁଟନ କରିବାରେ ପାରଦର୍ଶୀ ଥିଲେ । ଯଥାସ୍ଥାନରେ ମଧୁସୂଦନ, ଆର୍ନଲଡ୍ ଓ ସତ୍ୟବାଦୀର ଶିକ୍ଷକ-ଗୋଷ୍ଠୀଙ୍କ ମଧ୍ୟରେ କି ଆଦର୍ଶଗତ ସାମଞ୍ଜସ୍ୟ ଥିଲା ତାହାର ସମ୍ୟକ୍ ଆଲୋଚନା କରାଯିବ ।

ଟି. ରେଭେନ୍‌ସା ଏହି ସମୟରେ ଓଡ଼ିଶା ବିଭାଗର କମିଶନର ଥିଲେ (୧୮୭୦-୧୮୭୮) । ଓଡ଼ିଶାରେ ଶିକ୍ଷାର ଉନ୍ନତି ନିମନ୍ତେ ସେ ଯାହା ଯାହା କରିଯାଇଅଛନ୍ତି, ତାହା ଓଡ଼ିଆମାନେ ବହୁକାଳ ପର୍ଯ୍ୟନ୍ତ ସ୍ମରଣ କରୁଥିବେ । ପ୍ରଧାନତଃ ତାଙ୍କର ଉଦ୍ୟମ ଫଳରେ ଏବଂ ମୟୂରଭଞ୍ଜ ମହାରାଜା ପ୍ରଭୃତିଙ୍କ ଅଦମ୍ୟ ଉତ୍ସାହ ଓ ଆର୍ଥିକ ଆନୁକୂଲ୍ୟ ଯୋଗୁଁ କଟକ ଜିଲାସ୍କୁଲ ସହିତ ଯୋଡ଼ାହୋଇଥିବା ଦ୍ୱିତୀୟ ଶ୍ରେଣୀ କଲେଜଟି ପ୍ରଥମ ଶ୍ରେଣୀ କଲେଜକୁ ଉନ୍ନୀତ ହେଲା ଏବଂ ରେଭେନ୍‌ସା ସାହେବଙ୍କ ନାମାନୁଯାୟୀ ୧୮୭୮ରୁ ଏହାର ନାମ ହେଲା 'ରେଭେନ୍‌ସା କଲେଜ' । ସେହି ବର୍ଷରୁ କଟକ ହାଇସ୍କୁଲର ମଧ୍ୟ ନାମକରଣ ହେଲା 'ରେଭେନ୍‌ସା କଲେଜିଏଟ୍ ହାଇସ୍କୁଲ' ।

—

# ଷଷ୍ଠ ଅଧ୍ୟାୟ

## କର୍ମଜୀବନର ଦ୍ୱିତୀୟ ପର୍ଯ୍ୟାୟ

କଲେଜିଏଟ୍ ସ୍କୁଲରେ କୃତିତ୍ୱର ସହିତ କର୍ମ ନିର୍ବାହ କଲା ପରେ ୧୮୮୦ରେ ମଧୁସୂଦନ କଟକ ଜିଲ୍ଲାର ସ୍କୁଲ ସମୂହର ଡେପୁଟି ଇନ୍ସ୍ପେକ୍ଟର ପଦରେ ନିଯୁକ୍ତ ହେଲେ— ମାସିକ ବେତନ ୮୦-୧୦୦ ଟଙ୍କା ।

ହାଇସ୍କୁଲର ଶିକ୍ଷକ ଥିବା ସମୟରେ ମଧୁସୂଦନଙ୍କର ଦୃଷ୍ଟି ସୀମାବଦ୍ଧ ଥିଲା । ସ୍କୁଲରେ ତାଙ୍କୁ ବିଭିନ୍ନ ଶ୍ରେଣୀରେ ଯେଉଁସବୁ ବିଷୟ ପଢ଼ାଇବାକୁ ହେଉଥିଲା, ସେ ତାହା ନିଷ୍ଠାର ସହିତ ପଢ଼ାଉଥିଲେ । ଛାତ୍ରମାନେ କିପରି ପାଠ୍ୟ-ବିଷୟ ସବୁ ଗଭୀର ଭାବରେ ଅବବୋଧ କରିବେ, ସେ ଦିଗରେ ସେ ଯତ୍ନଶୀଳ ଥିଲେ । ତଦୁପରି ଛାତ୍ରମାନଙ୍କର ଚରିତ୍ର ଗଠନ ତଥା ମାନବିକତାର ବିକାଶ ପ୍ରତି ସେ ସଜାଗ ଥିଲେ । କିନ୍ତୁ ଡେପୁଟି ଇନ୍ସ୍ପେକ୍ଟରର ପଦ ଦାୟିତ୍ୱ କଣ୍ଟକିତ । ଏଥିରେ ସ୍କୁଲର ଆର୍ଥିକ ଓ ପାରିପାର୍ଶ୍ୱିକ ଅବସ୍ଥା ପର୍ଯ୍ୟବେକ୍ଷଣ କରିବାକୁ ହେବ । ଶିକ୍ଷକମାନଙ୍କର ଶିକ୍ଷାଦାନ ପ୍ରଣାଳୀ ପର୍ଯ୍ୟାଲୋଚନା କରି ତା' ଉପରେ ସୁଚିନ୍ତିତ ଓ ସୁଦୂରପ୍ରସାରୀ ମନ୍ତବ୍ୟ ଦେବାକୁ ହେବ । ପରିଦର୍ଶକ କର୍ମଚାରୀ ବୋଲି ଅଯଥା ଅହମିକା ଓ 'ହାକିମି ମିଜାସ' ମନ ମଧ୍ୟରେ ପୋଷଣ କରି ଶ୍ରେଣୀ ଭିତରେ ନପଶି ଗୁଇନ୍ଦା ବିଭାଗ ପୁଲିସ କର୍ମଚାରୀପରି 'ସମ୍ମାନଜନକ' ଦୂରତାରେ ସ୍କୁଲ ବାରଣ୍ଡାରେ ଠିଆହୋଇ ଶିକ୍ଷକ କ'ଣ ପଢ଼ାଉଛନ୍ତି ତା' ଉପରେ ଫାଇଲ୍‌ରେ ଦୁଇପଦ ଲେଖିଦେଇ ପରିଦର୍ଶନ ମନ୍ତବ୍ୟ ଲେଖିଲାବେଳେ ଠିଆଠିଆରେ ଫାଇଲ୍‌ରେ ଗାରିଆହୋଇଥିବା ସେହି ସଂକ୍ଷିପ୍ତ ମନ୍ତବ୍ୟକୁ ସମ୍ପ୍ରସାରିତ କରି କେଉଁ ଶିକ୍ଷକଙ୍କ ଉପରେ ଅଯଥା କୃପାସୁଧା ବର୍ଷଣ କିମ୍ବା ପ୍ରଧାନଶିକ୍ଷକ ଯାହା ପ୍ରତି ସାମାନ୍ୟ କାରଣରୁ ବିମୁଖ, ତାଙ୍କ ଉପରେ "Confidential remark" ଅର୍ଥାତ୍ ଗୁପ୍ତଚିଠି ମାଧ୍ୟମରେ ଘନ ଘନ କଷାଘାତ, ଏ ସବୁ ଇନ୍ସ୍ପେକ୍ଟର କିମ୍ବା ଡେପୁଟୀ-ଇନ୍‌ସପେକ୍ଟରଙ୍କ ପରି ପରିଦର୍ଶକ-କର୍ମଚାରୀଙ୍କର କର୍ତ୍ତବ୍ୟ ନୁହେଁ । ପରିଦର୍ଶନ କଲାବେଳେ ପ୍ରତ୍ୟେକ କ୍ଲାସ୍ ମଧ୍ୟକୁ ପଶିଯାଇ ଶିକ୍ଷକଙ୍କର ପାଠନ ପ୍ରଣାଳୀକୁ ଅଭିନିବେଶ ସହିତ ଲକ୍ଷ୍ୟ କରିବାକୁ ହେବ । କୋମଳମତି ଶିଶୁମାନଙ୍କର ମନସ୍ତତ୍ତ୍ୱ ସହିତ ପରିଚିତ ହୋଇ କେଉଁ ପ୍ରକାର ଶିକ୍ଷା-ପ୍ରଣାଳୀ କେଉଁ ଶ୍ରେଣୀର, କିମ୍ବା କେଉଁ ବୟସ ଗୋଷ୍ଠୀର ଛାତ୍ରମାନଙ୍କ ପ୍ରତି ସଂପୂର୍ଣ୍ଣ ଭାବରେ ଉପଯୋଗୀ, ତାହା ଅନୁଧ୍ୟାନ କରି କେବଳ ପରିଦର୍ଶନ-ମନ୍ତବ୍ୟରେ

ନୁହେଁ, ସେହି ଶ୍ରେଣୀରେ Demonstration lesson ଅର୍ଥାତ୍ ଆଦର୍ଶ ଶିକ୍ଷା ଦେଇ ଶିକ୍ଷକମାନଙ୍କୁ ଅନୁପ୍ରାଣିତ କରିବାକୁ ହେବ । ଆବଶ୍ୟକ ପଡ଼ିଲେ ଶିକ୍ଷକମାନଙ୍କୁ ନିଜ ପାଖକୁ ଡାକିନେଇ ଶିକ୍ଷାଦାନରେ ସେମାନେ କେଉଁ କେଉଁ ଜଟିଳ ସମସ୍ୟାମାନଙ୍କର ସମ୍ମୁଖୀନ ହେଉଅଛନ୍ତି, ସେ ସବୁ ବିଷୟରେ ପ୍ରଶ୍ନ ପଚାରି ସେମାନଙ୍କ ଆଗରେ ବିହିତ ସମାଧାନର ପନ୍ଥା ଉପସ୍ଥାପନ କରିବାକୁ ହେବ । ଶିକ୍ଷକମାନେ ସାଧାରଣତଃ ମନେ କରନ୍ତି, ପରିଦର୍ଶକ-କର୍ମଚାରୀମାନେ ଜଣେ ଜଣେ ଯମଦେବତା; କିନ୍ତୁ ବୁଦ୍ଧିମାନ୍ ଓ କର୍ତ୍ତବ୍ୟନିଷ୍ଠ ପରିଦର୍ଶକ ଏପରି ଭାବରେ ଶିକ୍ଷକମାନଙ୍କ ସହିତ ମଧୁର ବ୍ୟବହାର କରିବେ ଯେ ସେମାନେ ପରିଦର୍ଶକ କର୍ମଚାରୀଙ୍କୁ ତାଙ୍କର ଜଣେ ପରମବନ୍ଧୁ ବୋଲି ମନେକରିବେ । ପରିଦର୍ଶକ-କର୍ମଚାରୀଙ୍କୁ ଯେପରି ବଜ୍ରକଠୋର ହେବାକୁ ପଡ଼ିବ, ସେହିପରି ମଣିଷ ପିଲାଙ୍କୁ ଯେଉଁ ଶିକ୍ଷକମାନେ ଚରାଉ ଅଛନ୍ତି, ସେମାନଙ୍କ ପ୍ରତି ସ୍ନେହପୂର୍ଣ୍ଣ ବ୍ୟବହାର ଦେଖାଇ ଓ ସେମାନେ କିପରି ଆଦର୍ଶ ଶିକ୍ଷକ ହେବେ, ତା'ର ପନ୍ଥା ଉଦାର ଚିତ୍ତରେ ସେମାନଙ୍କୁ ଦେଖାଇ ଦେବାକୁ ହେବ । ଶିକ୍ଷକଙ୍କୁ ପରୀକ୍ଷା କରିବା ସଙ୍ଗେ ସଙ୍ଗେ ଛାତ୍ରମାନଙ୍କୁ ମଧ୍ୟ ନାନା ପ୍ରଶ୍ନ ପଚାରି, ସେମାନେ କେତେଦୂର ଶିକ୍ଷକମାନଙ୍କର ପଢ଼ା ଗ୍ରହଣ କରିପାରିଛନ୍ତି ଏବଂ କେତେଦୂର ସେଥିରେ ଉପକୃତ ହୋଇଅଛନ୍ତି ତାହା ଦେଖିବାକୁହେବ, କେବଳ ସେତିକି ନୁହେଁ, କି ପ୍ରକାର ପାଠ୍ୟ-ପୁସ୍ତକ ବିଭିନ୍ନ ଶ୍ରେଣୀରେ ପଢ଼ାଯାଉଛି, ତା' ମଧ୍ୟ ବିଚାର କରିବାକୁ ହେବ । 'ପରିଦର୍ଶନ' ଶବ୍ଦର ଧାତୁଗତ ଅର୍ଥ 'ପରି' ଅର୍ଥାତ୍ ସମ୍ପୂର୍ଣ୍ଣ ରୂପେ କିମ୍ବା ସର୍ବତୋଭାବରେ ଅବଲୋକନ । ମଧୁସୂଦନ 'ପରିଦର୍ଶନ'ର ଏହି ବ୍ୟାପକ ଓ ଗୂଢ଼ ଅର୍ଥକୁ ତାଙ୍କ ସ୍କୁଲ ପରିଦର୍ଶନବେଳେ ଅକ୍ଷରେ ଅକ୍ଷରେ କାର୍ଯ୍ୟରେ ପାଳନ କରୁଥିଲେ ।

କଥିତ ଅଛି, ଥରେ ମଧୁସୂଦନ ଗୋଟିଏ ପ୍ରାଥମିକ ବିଦ୍ୟାଳୟ ପରିଦର୍ଶନ କରିବାକୁ ଯାଇଥିଲେ । ଧାନକଟାକଟି ସମୟ । ବିଦ୍ୟାଳୟଟି ନିତାନ୍ତ ମଫସଲ ଗାଁରେ । ଆକସ୍ମିକ ଭାବରେ ସେଠାରେ ଯାଇ ପହଞ୍ଚି ଦେଖନ୍ତି— ଶିକ୍ଷକ ଜଣକ ବେଶ୍ ଆରାମରେ ତାଙ୍କ ଆସନରେ ବସିଛନ୍ତି । ପିଲା ପାଞ୍ଚସାତ ଜଣ ଶିଳଟ ବହି ଆଗରେ ଥୋଇ ଗପରେ ମାତିଛନ୍ତି । ମଧୁସୂଦନ ବିଦ୍ୟାଳୟକୁ ପଶିଯାଇ ପ୍ରଥମେ ଶିକ୍ଷକଙ୍କୁ ପଚାରିଲେ, "ସ୍କୁଲର ଛାତ୍ରସଂଖ୍ୟା କେତେ ?" ଶିକ୍ଷକ ଉତ୍ତର ଦେଲେ, "କୋଡ଼ିଏଟା ପର୍ଯ୍ୟନ୍ତ ପିଲା ଥା'ନ୍ତି ଯେ, ଧାନକଟା ସମୟ ବୋଲି କଳେଇ ଜଗିବାକୁ ସମସ୍ତେ ଯାଇଛନ୍ତି, ବାକି ଏଇ ପାଞ୍ଚସାତଟା ସ୍କୁଲରେ ଅଛନ୍ତି ।" ଏହି 'ଟା' ମଧୁସୂଦନଙ୍କ ଛାତିରେ ଯେପରି ଛୁରି ଚଳାଇ ଦେଲା । ସେ କ୍ଷଣକୋପୀ । ରାଗନ୍ତି ନାହିଁ; କିନ୍ତୁ ରାଗିଲେ ଅସମ୍ଭାଳ । ସେତେବେଳକୁ ତାଙ୍କର ଚକ୍ଷୁ ଦୁଇଟି ରକ୍ତିମାଭ ହୋଇଗଲାଣି । ମୁଖମଣ୍ଡଳ ଗମ୍ଭୀର; ସ୍ୱର ବିଚଳିତ । କ୍ରୋଧରେ ଜର୍ଜ୍ଜର ହୋଇ ଶିକ୍ଷକଙ୍କୁ କହିଲେ, "କ'ଣ କହିଲ

କୋଡ଼ିଏଟା; ପାଞ୍ଚ-ସାତଟା । ଏ ପିଲାଗୁଡ଼ିକ କ’ଣ ନିର୍ଜୀବ ପଦାର୍ଥ– ଟେକାପଥର ? ଯାହାର ଛାତ୍ରମାନଙ୍କ ପ୍ରତି ଏପରି ନିର୍ମମ ଓ ହୃଦୟହୀନ ମନୋଭାବ, ସେ ସେମାନଙ୍କୁ କି ଶିକ୍ଷା ଦେବ ? ସେମାନେ ଏ ସ୍କୁଲରୁ କି ଆଦର୍ଶ ନେଇ ଯିବେ ? ତାଙ୍କ ଅଭିଭାବକମାନେ କ’ଣ ତୁମ ପାଖକୁ ଏହି ପିଲାମାନଙ୍କୁ ପଠାଇଛନ୍ତି ତାଙ୍କ ସହିତ ଟେକା ପଥର, କୁକୁର ମାଙ୍କଡ଼ଙ୍କ ପରି ବ୍ୟବହାର କରିବାକୁ ! ତୁମେ ନିତାନ୍ତ ଅଯୋଗ୍ୟ-ଅପଦାର୍ଥ-ଅମନୁଷ୍ୟ । ମୁଁ ତୁମକୁ ଏହି ମୁହୂର୍ତ୍ତରେ କାର୍ଯ୍ୟରୁ ଡିସମିସ୍ କରିବି !’’ ଅବଶ୍ୟ ସେହି ଶିକ୍ଷକଙ୍କୁ ସେ କାର୍ଯ୍ୟରୁ ଅନ୍ତର କରିନଥିଲେ; କିନ୍ତୁ ଶିକ୍ଷକଙ୍କର ସେହିଦିନ ଚେତା ପଶିଲା । ସେ ସେହିଦିନଠାରୁ ଶିଖିଲେ ଗୁରୁ ଓ ଶିଷ୍ୟ ମଧ୍ୟରେ ପ୍ରକୃତ ସମ୍ପର୍କ କିପରି ହେବା ଉଚିତ ଏବଂ ଯେଉଁ ମନୁଷ୍ୟ-ଶିଶୁଗୁଡ଼ିକୁ ସେ ଶିକ୍ଷାଦେଉଅଛନ୍ତି, ସେମାନଙ୍କର ପ୍ରାଣ କିମ୍ବା ଆତ୍ମା ବୋଲି ଗୋଟିଏ ଜିନିଷ ଅଛି– ସେମାନେ ଅବହେଳାର ପାତ୍ର ନୁହନ୍ତି– ଆଦରର ସାମଗ୍ରୀ ଏବଂ ସ୍ନେହର ଧନ । ସେମାନଙ୍କଠାରେ ଦେବତ୍ୱ ପ୍ରଚ୍ଛନ୍ନ ରହିଛି । ଏହି ଦେବତ୍ୱର ପ୍ରସ୍ଫୁଟନ ଶିକ୍ଷକମାନଙ୍କ ହାତରେ ।

ମଧୁସୂଦନ ଯେତେବେଳେ କଟକ ଜିଲାର ଡେପୁଟି ଇନ୍‌ସ୍ପେକ୍ଟର, ତାଙ୍କର କୈଶୋରଗୁରୁ ରାଧାନାଥ ସେତେବେଳେ ଓଡ଼ିଶାର ସ୍କୁଲସମୂହର ଜଏଣ୍ଟ ଇନ୍‌ସ୍ପେକ୍ଟର । ସକଳ ବିଷୟରେ ରାଧାନାଥ ମଧୁସୂଦନଙ୍କ ଜୀବନାଦର୍ଶର ଧ୍ରୁବତାରା ଥିଲେ– ତେଣୁ ବିଦ୍ୟାଳୟ ପରିଦର୍ଶନ କାର୍ଯ୍ୟରେ ସେ ମଧ୍ୟ ରାଧାନାଥଙ୍କୁ ଆଦର୍ଶ କରି ଗ୍ରହଣକରିଥିଲେ ଏବଂ ତାଙ୍କରି ନିର୍ଦ୍ଦେଶରେ ପ୍ରଭାବିତ ହେଉଥିଲେ ।

୧୮-୯-୧୮୮୦ରେ ରାଧାନାଥ ନିମାପଡ଼ା ମାଇନର ସ୍କୁଲ ପରିଦର୍ଶନ କରି ଯେଉଁ ମନ୍ତବ୍ୟ ଲିପିବଦ୍ଧ କରିଥିଲେ, ତାହା ‘ରାଧାନାଥ ଜୀବନୀ’ରୁ ଉଦ୍ଧୃତ ହୋଇ ନିମ୍ନରେ ପ୍ରଦତ୍ତ ହେଲା–

"x x x ପରୀକ୍ଷା ସମୟ ଅଳ୍ପ ଅଛି । ଏହି ସମୟର ଯେତେଦୂର ବ୍ୟବହାର କରାଯାଇପାରେ, ଶିକ୍ଷକମାନେ କରିବେ । ବିଦ୍ୟାଳୟ ଗୃହର ଅବସ୍ଥା ଅତ୍ୟନ୍ତ କଦର୍ଯ୍ୟ । ଜୀର୍ଣ୍ଣ ସଂସ୍କାର ଆବଶ୍ୟକ । ଗୃହ ସମ୍ମୁଖରେ ଅନେକ ଆବର୍ଜନା ପଡ଼ିରହିଛି । ବିଦ୍ୟାଳୟ ସାଧାରଣ ବ୍ୟବହାରୋପଯୋଗୀ ହେବା ନିମନ୍ତେ ସର୍ବଦା ପରିଷ୍କୃତ ଅବସ୍ଥାରେ ଥିବା ଉଚିତ । ଉପକରଣର ମଧ୍ୟ କେତେକ ଅଭାବ ଲକ୍ଷିତ ହେଲା ।

ହେଡ୍‌ମାଷ୍ଟରଙ୍କର କାର୍ଯ୍ୟାନୁରୂପ ବିଦ୍‌ବତ୍ତା ଅଛି; ମାତ୍ର ବହୁଦର୍ଶିତା ଆଦୌ ନାହିଁ ।

ଭୂଗୋଳ, ଇତିହାସ, ସାହିତ୍ୟ ପ୍ରଭୃତିରେ ଆଦର୍ଶ ପ୍ରଶ୍ନାବଳୀ ଏଠାରେ ରୀତିମତ ବ୍ୟବହୃତ ହେଉନଥିବାର ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ ଓ ଅସନ୍ତୋଷଜନକ ବିଷୟ । ଭବିଷ୍ୟତରେ ଏ ବିଷୟ ପ୍ରତି ଶିକ୍ଷକମାନଙ୍କର ସାବଧାନ ହେବା ଉଚିତ ।’’

ଏ ମନ୍ତବ୍ୟରେ କଟୁ-ତିକ୍ତ-କଷାୟ ସକଳପ୍ରକାର ସ୍ୱାଦୁ ଅଛି । ଏହା ବୋଲି ସେ କାଳର ପରିଦର୍ଶକ-କର୍ମଚାରୀମାନେ ଯେ ଶିକ୍ଷକମାନଙ୍କ ପ୍ରତି ଦରଦପୂର୍ଣ୍ଣ କଥା

ସେମାନଙ୍କ ମନ୍ତବ୍ୟରେ ଲିପିବଦ୍ଧ କରୁନଥିଲେ, ତାହା ନୁହେଁ । ୧୩-୨-୧୮୯୬ରେ ଲକ୍ଷ୍ମଣନାଥ ହାଇସ୍କୁଲ ପରିଦର୍ଶନ କରି ରାଧାନାଥ ଲେଖିଥିଲେ– "Most of the teachers are suffering from a fever of unruled type. It is no small compliment to state that though thus suffering they have not neglected their class any way." ଅର୍ଥାତ୍, ଲକ୍ଷ୍ମଣନାଥ ସ୍କୁଲର ଶିକ୍ଷକମାନେ ଦୁରାରୋଗ୍ୟ ଜ୍ୱର ଭୋଗକରୁଥିଲେ ମଧ୍ୟ, ଏହା ସେମାନଙ୍କ ପକ୍ଷରେ କମ୍ ପ୍ରଶଂସାର କଥା ନୁହେଁ ଯେ, ସେମାନେ ଏପରି ଅବସ୍ଥାରେ ପଡ଼ି ମଧ୍ୟ ସ୍କୁଲ କାର୍ଯ୍ୟରେ ଅବହେଳା ଦେଖାଇନାହାନ୍ତି ।

ମଧୁସୂଦନଙ୍କ ପରିଦର୍ଶନ-ରୀତି ରାଧାନାଥଙ୍କର ଏହି ଆଦର୍ଶରେ ରସାଣିତ ହୋଇଥିଲା । ଦୁଃଖର ବିଷୟ, ତାଙ୍କର କୌଣସି ଜୀବନ-ଚରିତ ଲେଖକ, ତାଙ୍କ ପରିଦର୍ଶନ-ମନ୍ତବ୍ୟର ନମୁନା ସଂଗ୍ରହ କରି ପ୍ରକାଶ କରି ନାହାନ୍ତି । ତାହା ଥିଲେ, ଇନ୍‌ସପେକ୍ଟରର ଅଫିସର ପୁରୁଣା ଫାଇଲ୍ ଭିତରେ କୀଟଦଷ୍ଟ ହୋଇ ଅଳ୍ପାବଶେଷ ଥାଇପାରେ । ଏ ଯୁଗରେ ସେସବୁ ମନ୍ତବ୍ୟର ମୂଲ୍ୟ ଅଛି ଏବଂ କେହି ଏ ଜୀର୍ଣ୍ଣୋଦ୍ଧାର କାର୍ଯ୍ୟରେ ଆତ୍ମ-ନିୟୋଗ କରିପାରିଲେ ଓଡ଼ିଶାର ବର୍ତ୍ତମାନ ଶିକ୍ଷା ବିଭାଗର ଯଥେଷ୍ଟ କଲ୍ୟାଣ ହୁଅନ୍ତା । ପୁରୁଣା ବୋଲି କୌଣସି କଥାକୁ ନାକଟେକି ଆଧୁନିକତାର ବହିରଙ୍ଗ ବ୍ୟାମୋହରେ ନିଜକୁ ଅନ୍ଧ ଓ ଅସହାୟ ଭାବରେ ଭସାଇଦେବା ବିଜ୍ଞତାର ପରିଚାୟକ ନୁହେଁ ।

ଡେପୁଟି ଇନ୍‌ସପେକ୍ଟରର ପଦରେ ନିଯୁକ୍ତ ହୋଇ ମଧୁବାବୁ ସ୍କୁଲର ପାଠ୍ୟପୁସ୍ତକରେ ଗୋଟିଏ ନବଯୁଗ ସୃଷ୍ଟି କରିବାକୁ ପ୍ରଥମେ ପ୍ରୟାସୀ ହେଲେ । ପାଠ୍ୟପୁସ୍ତକ ହେଲା ଶିକ୍ଷା-ରୀତିର ପ୍ରାଣପିଣ୍ଡ । ପିଲେ ଭଲ ବହି ଯଦି ତାଙ୍କର ଛାତ୍ର ଜୀବନର ପ୍ରାରମ୍ଭରୁ ନପା'ନ୍ତି ଏବଂ ବିକୃତ ଓଡ଼ିଆ ଭାଷାରେ ଲେଖାହୋଇଥିବା ସାହିତ୍ୟ ପଢ଼ନ୍ତି, ତାହାହେଲେ ସେମାନଙ୍କର ଭବିଷ୍ୟତ ଜୀବନ ନଷ୍ଟହୋଇଯିବ । ବୁଦ୍ଧିବୃତ୍ତିର ଯଥାଯଥ ବିକାଶରେ ଘୋର ଅନ୍ତରାୟ ସୃଷ୍ଟି ହେବ । କୋମଳମତି ଶିଶୁମାନଙ୍କର କେବଳ ବହୁମୂଲ୍ୟ ସମୟ ନୁହେଁ, ବିକାଶୋନ୍ମୁଖ ଶକ୍ତିର ଘୋର ଅପଚୟ ଘଟିବ । ବୈଜ୍ଞାନିକ ଓ ମନସ୍ତାତ୍ତ୍ୱିକ ଭିତ୍ତିରେ ଲିଖିତ ସରସ ଓ ଶିକ୍ଷଣୀୟ ପାଠ୍ୟପୁସ୍ତକ ଯଦି ଛାତ୍ରମାନଙ୍କୁ ଦିଆନଯାଏ ଏବଂ ପଢ଼ାଇବାର ପ୍ରଣାଳୀ ଯଦି ଚିତ୍ତାକର୍ଷକ ଓ ବୁଦ୍ଧିବୃତ୍ତିର ବିକାଶକ ନ ହୁଏ, ତେବେ ଛାତ୍ରମାନଙ୍କର ଯେ କେବଳ ଜ୍ଞାନର ପରିସର ବୃଦ୍ଧି ପାଇବନାହିଁ ତା' ନୁହେଁ, ସେମାନଙ୍କର ଚରିତ୍ର ସୁଗଠିତ ହୋଇପାରିବନାହିଁ । ଯଦି କୌଣସି ଶିକ୍ଷକ ପାଠ୍ୟ ସାହିତ୍ୟ ପୁସ୍ତକରୁ ଏହି ବାକ୍ୟଟିକୁ ଛାତ୍ରମାନଙ୍କୁ ଏପରି ହାସ୍ୟାସ୍ପଦ ଭାବରେ ବୁଝାନ୍ତି– ''କୌଣସି ଦିନରେ ଗୋଟିଏ କାକ ଖଣ୍ଡିଏ ମାଂସ ମୁଖରେ ଧରି ଗୋଟିଏ ବୃକ୍ଷ ଡାଳରେ ବସିଥିଲା''– ''କୌଣସି ଦିନରେ କି କେହି ଅହ୍ନରେ, ଗୋଟିଏ କାକ କି ଏକଗୋଟି

ବାୟସ, ଖଣ୍ଡିଏ ମାଂସ କି ଖଣ୍ଡିଏ ପଳ, ମୁଖରେ ଧରି କି ବଦନରେ ଧାରଣ କରି, ଗୋଟାଏ ବୃକ୍ଷ କି ଏକଗୋଟା ମହୀରୁହ, ଡାଳରେ କି ଶାଖାରେ, ବସିଥିଲା କି ଉପବେଶନ କରିଥିଲା''— ତାହାହେଲେ ବୁଝିବାକୁ ହେବ ଏପରି ଗଜମୂର୍ଖ ଶିକ୍ଷକ ଆଉ ପୃଥିବୀରେ କେଉଁଠାରେ ନଥିବେ । ମଧୁସୂଦନ ଡେପୁଟି ଇନ୍‌ସ୍ପେକ୍ଟର ହେବା ପୂର୍ବରୁ ବାଲେଶ୍ୱର ବାରବାଟୀ ସ୍କୁଲରେ ଫକୀରମୋହନଙ୍କୁ ତାଙ୍କ ଓଡ଼ିଆ ପଣ୍ଡିତ ହରେକୃଷ୍ଣ ପାଣିଗ୍ରାହୀ ଏହିପରି ଭାବରେ ସାହିତ୍ୟ ପଢ଼ାଉଥିଲେ ।

ତା'ପରେ ସେ କାଳର ପାଠ୍ୟପୁସ୍ତକର କୌତୂହଳମୟ ଇତିହାସ । ମିଶନାରୀ ସାଟନ୍ ସାହେବଙ୍କ ଲିଖିତ ଓଡ଼ିଆ ଅଭିଧାନ, ଇତିହାସ ଓ ସାହିତ୍ୟ ପୁସ୍ତକ ଛାତ୍ର ମଣ୍ଡଳୀର ଏକମାତ୍ର ସମ୍ବଳ ଥିଲା । ତାଙ୍କ ରଚିତ 'ସାରସଂଗ୍ରହ'ର ୧ମ ଓ ୨ୟ ଭାଗ ଯଥାକ୍ରମେ ପ୍ରାଥମିକ ଓ ମଧ୍ୟଶ୍ରେଣୀର ବିଦ୍ୟାଳୟରେ ଓଡ଼ିଆ ପାଠ୍ୟପୁସ୍ତକ ରୂପେ ପଢ଼ା ହେଉଥିଲା । ଏହି 'ସାରସଂଗ୍ରହ'ରେ ସନ୍ନିବେଶିତ ରଚନାମାନଙ୍କର ନାମ ହେଉଛି— 'ଜଳୀୟବାଷ୍ପର କଥା', 'ପକ୍ଷୀର କଥା' ଏବଂ 'ମନର ଧୈର୍ଯ୍ୟର କଥା' । ଏଗୁଡ଼ିକ ପ୍ରାୟ ବଙ୍ଗ ଭାଷାରୁ ଅନୁବାଦିତ; କିନ୍ତୁ ଏହା ଯେଉଁ ଗଦ୍ୟ ଭାଷାରେ ଲେଖାଯାଇଥିଲା, ତାହା ବଙ୍ଗଳା ନୁହେଁ କି ଓଡ଼ିଆ ନୁହେଁ— ବିଚିତ୍ର ଭାଷାର ଖେଚୁଡ଼ି । ଏଥିରେ ଅଭିଧାନରେ ନଥିବା ବହୁ ଶବ୍ଦ ଥିଲା— ବ୍ୟାକରଣଗତ ଅଶୁଦ୍ଧିରେ ଥିଲା ଭରପୂର । ଛାତ୍ରମଣ୍ଡଳୀ ତଥା ଶିକ୍ଷକମାନଙ୍କ ପକ୍ଷରେ ଥିଲା ଦୁର୍ବୋଧ ଓ ଦୁଷ୍ପାଠ୍ୟ । ଏହାପରେ ବିଚ୍ଛନ୍ଦ ପଟ୍ଟନାୟକଙ୍କ 'ଚାରୁପାଠ' ପାଠ୍ୟପୁସ୍ତକରୂପେ ପ୍ରଚଳିତ ହେଲା । ଏହା ମଧ୍ୟ ବଙ୍ଗଳାରୁ ଅନୁବାଦିତ; ଏ ବହିର ଭାଷା ମଧ୍ୟ କଦର୍ଯ୍ୟ— ନୁହେଁ ବଙ୍ଗଳା କି ନୁହେଁ ଓଡ଼ିଆ । ଓଡ଼ିଆ ଭାଷାର ମୌଳିକତା ଓ ବିଶୁଦ୍ଧି ଏ ବହିରେ ନଥିଲା । ତତ୍‌ପରେ ଏ କ୍ଷେତ୍ରରେ ଜଣେ ବଙ୍ଗୀୟ ଅଧ୍ୟାପକ ତାଙ୍କର ସକଳ ଜ୍ଞାନଗରିମା ସହ ବୀରବିକ୍ରମରେ ଅବତୀର୍ଣ୍ଣ ହେଲେ । ଅବଶ୍ୟ ସେ ନିଜେ ଓଡ଼ିଆରେ କୌଣସି ବହି ଲେଖି ତାକୁ ପାଠ୍ୟପୁସ୍ତକରୂପେ ଚାଲୁକରିବାର ଅପଚେଷ୍ଟା କରିନଥିଲେ; କିନ୍ତୁ ତାଙ୍କ କୃତ ବଙ୍ଗଳା 'ପଦ୍ୟମାଳା' ଓ 'ପଦ୍ୟପାଠ' ପ୍ରଭୃତିର ଓଡ଼ିଆ ଅନୁବାଦ ସ୍କୁଲସମୂହରେ ପଠିତ ହେଉଥିଲା । ଏ ବହିର ଓଡ଼ିଆ ଭାଷା ମଧ୍ୟ ଥିଲା ବିକୃତ ଓ ଭ୍ରମପ୍ରମାଦପୂର୍ଣ୍ଣ । ପାଠ୍ୟପୁସ୍ତକର ଏହି ଗର୍ହିତ ଓ ଶୋଚନୀୟ ଅବସ୍ଥା ଦେଖି ଡେପୁଟି ଇନ୍‌ସପେକ୍‌ଟର ମଧୁସୂଦନ ଅତ୍ୟନ୍ତ ମର୍ମାହତ ହୋଇପଡ଼ିଲେ । କାଳବିଳମ୍ବ ନ କରି ଜଏଣ୍ଟ ଇନ୍‌ସପେକ୍‌ଟର ରାଧାନାଥଙ୍କ ସହଯୋଗ ଓ ଉତ୍ସାହରେ ଯୁଗୋପଯୋଗୀ ଓ ସୁନ୍ଦର ସରସ ପାଠ୍ୟପୁସ୍ତକ ରଚନା କରିବାରେ ଲାଗିଗଲେ । ବର୍ଣ୍ଣଶିକ୍ଷାଠାରୁ ଆରମ୍ଭ କରି ମଧ୍ୟଛାତ୍ରବୃତ୍ତି ପର୍ଯ୍ୟନ୍ତ ସବୁ ଶ୍ରେଣୀର ଉପଯୋଗୀ ସାହିତ୍ୟର ପାଠ୍ୟପୁସ୍ତକ ରଚନା କରିବାରେ ବ୍ରତୀ ହେଲେ । ସେ ବହିସବୁ ସେହିଦିନଠାରୁ ଅନେକକାଳ ପର୍ଯ୍ୟନ୍ତ ଉତ୍କଳର ବିଦ୍ୟାଳୟମାନଙ୍କରେ

ପାଠ୍ୟପୁସ୍ତକରୂପେ ବ୍ୟବହୃତ ହେଉଥିଲା । ଏଥିପାଇଁ ରାଧାନାଥ ଓ ମଧୁସୂଦନଙ୍କୁ ନିନ୍ଦୁକ ସମାଲୋଚକମାନଙ୍କଠାରୁ କମ୍ ଦୁର୍ନାମ ଓ ଭର୍ତ୍ସନା ଶୁଣିବାକୁ ପଡ଼ିନାହିଁ । ଏ ଅଭିଯୋଗ ଓ ସମାଲୋଚନା ସବୁ ପ୍ରକାଶ୍ୟ ଭାବରେ ତଦାନୀନ୍ତନ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଉଥିଲା । ଏ ଉଭୟଙ୍କ ବିରୁଦ୍ଧରେ ଅଭିଯୋଗ– ଏମାନେ ଶିକ୍ଷାବିଭାଗର ଉଚ୍ଚପଦସ୍ଥ କର୍ମଚାରୀ ହୋଇଥିବାରୁ ନିଜର ପ୍ରାଧାନ୍ୟ ଓ ପ୍ରତିପତ୍ତି ବିସ୍ତାର କରି ନିଜନିଜର ବହିଗୁଡ଼ିକୁ ପାଠ୍ୟପୁସ୍ତକରୂପେ ଚଳାଇନେଇ ଅଜସ୍ର ଅର୍ଥ ଉପାର୍ଜନ କରୁଅଛନ୍ତି । ରାଧାନାଥଙ୍କ ବିରୋଧରେ ଅନ୍ୟତମ ଅଭିଯୋଗ– ତାଙ୍କ ଅଧୀନରେ କର୍ମ ଖାଲି ହେଲେ, ସେ ଓଡ଼ିଆଙ୍କୁ ସେ ସ୍ଥାନରେ ନରଖି ବଙ୍ଗାଳୀମାନଙ୍କୁ ନିଯୁକ୍ତ କରୁଅଛନ୍ତି । କିନ୍ତୁ ଏ ଅଭିଯୋଗଗୁଡ଼ିକର ଦୃଢ଼ ଭିତ୍ତିଭୂମି ନଥିଲା । ତେଣୁ ଅଳ୍ପଦିନ ମଧ୍ୟରେ ଏ ସମାଲୋଚନାର ସ୍ରୋତ ନିଶ୍ଚିହ୍ନ ହୋଇଗଲା । ଅନ୍ୟାନ୍ୟ ଉଚ୍ଚଶ୍ରେଣୀ ନିମନ୍ତେ ଲିଖିତ ପାଠ୍ୟପୁସ୍ତକ କଥା ଛାଡ଼, ୧୮୯୫ ସାଲରେ ମଧୁସୂଦନଙ୍କର ଯେଉଁ 'ବର୍ଣ୍ଣବୋଧ' ପ୍ରକାଶ ପାଇଥିଲା, ତାହା ଏପର୍ଯ୍ୟନ୍ତ ଅପ୍ରତିଦ୍ୱନ୍ଦ୍ୱୀ ଓ ଅପରାଜେୟ ହୋଇ ରହିଛି । ପ୍ରାଥମିକ ସ୍କୁଲର ଶିକ୍ଷକମାନେ, ଯେଉଁମାନେ ମଧୁବାବୁଙ୍କ 'ବର୍ଣ୍ଣବୋଧ' ଦେଖିଛନ୍ତି, ସେମାନେ ଆଧୁନିକ ଅକ୍ଷର-ପରିଚୟ ବହିମାନଙ୍କୁ ନାକ ଟେକିବାକୁ ଆରମ୍ଭକଲେଣି । ଆଉ 'ମା-ରମା-ଘର'ରେ ତାଙ୍କର ରୁଚି ନଥିଲା ପରି ମନେହେଉଛି ଏବଂ ସେମାନେ ସେହି 'ବର୍ଣ୍ଣବୋଧ' ଯୁଗକୁ ଫେରିଯିବାକୁ ବ୍ୟାକୁଳ ଥିବା ଭଳି ଜଣାଯାଉଅଛି ।

ସେ ଯାହାହେଉ ରାଧାନାଥଙ୍କ ପ୍ରୋତ୍ସାହନ ଓ ଆନ୍ତରିକତାପୂର୍ଣ୍ଣ ସହଯୋଗରେ ଡେପୁଟି ଇନ୍‌ସ୍ପେକ୍ଟର ମଧୁସୂଦନ ପ୍ରାଥମିକ ସ୍କୁଲର ନିମ୍ନତମ ଶ୍ରେଣୀଠାରୁ ମଧ୍ୟ-ବୃତ୍ତିପରୀକ୍ଷାର ଉଚ୍ଚତମ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷା-ବିଜ୍ଞାନଭିତ୍ତିକ ପାଠ୍ୟପୁସ୍ତକମାନ ରଚନା କରିବାରେ ସକଳ ଶକ୍ତି ନିୟୋଜିତ କଲେ । ଏହି ନବରୁଚିସମ୍ପନ୍ନ ପାଠ୍ୟପୁସ୍ତକ କେବଳ ପ୍ରାଥମିକ ଓ ନିମ୍ନମାଧ୍ୟମିକ ଶିକ୍ଷାପ୍ରଣାଳୀରେ ଗୋଟିଏ ନୂତନ ଅଧ୍ୟାୟ ସୃଷ୍ଟି କଲା ନାହିଁ, ସୃଷ୍ଟିକଲା ଛାତ୍ରମାନଙ୍କ ମନରେ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରୀତିର ନୂତନ ଆଭିମୁଖ୍ୟ, ସଶ୍ରଦ୍ଧ ଅନୁରାଗ ଓ ମମତା । ଆମ୍ଭେମାନେ ପ୍ରତ୍ୟକ୍ଷ ଅନୁଭୂତି ଓ ଅଭିଜ୍ଞତାର ସାକ୍ଷ୍ୟ ଦେଇପାରୁ–ସେତେବେଳେ ଯେଉଁମାନେ ଛାତ୍ର ଥାଇ ମଧୁବାବୁଙ୍କ ଶିଶୁଗୀତରୁ ପଢ଼ିଥିଲେ–

''ଆକାଶ ଦିଶେ କି ସୁନ୍ଦର, ତାହାକୁ ରଚିଲେ ଈଶ୍ୱର,
ଈଶ୍ୱର ଦୟାର ସାଗର, ତାଙ୍କର ମହିମା ସୁମର ।''

ସେମାନଙ୍କ ମଧ୍ୟରୁ ଅନେକେ ଆଜି ଜୀବନର ବିଭିନ୍ନ କ୍ଷେତ୍ରରେ କର୍ମଦକ୍ଷ ଥାଇ ସୁଦ୍ଧା ମନର କ୍ଳାନ୍ତି, ଶ୍ରାନ୍ତି ଓ ଅବସାଦ ସମୟରେ ଭଗବାନ୍ ଶ୍ରୀକୃଷ୍ଣଙ୍କ ମୁଖନିଃସୃତ ଭଗବଦ୍‌ଗୀତାର ମହାବାଣୀ ପରି ସ୍ୱତଃସ୍ଫୂର୍ତ୍ତଭାବରେ ମଧୁସୂଦନଙ୍କର ଏହି ଶାନ୍ତରସମୟ ଓ ଭକ୍ତିସମନ୍ୱିତ ପଙ୍‌କ୍ତିଗୁଡ଼ିକ ଆବୃତ୍ତି କରି ଭଗବତ୍‌ମହିମା ସ୍ମରଣ କରିବା ସଙ୍ଗେ

ସଙ୍ଗେ ସେମାନଙ୍କ ପ୍ରାଣରେ ଶୈଶବରୁ ଧର୍ମର ବୀଜ ବପନ କରିଥିବା ଭକ୍ତକବି ମଧୁସୂଦନଙ୍କର ମହତ୍ତ୍ୱ ମଧ୍ୟ ସ୍ମରଣକରିଥା'ନ୍ତି ।

ଚତୁର୍ଥ ଶ୍ରେଣୀ ନିମନ୍ତେ ପ୍ରଣୀତ 'ସାହିତ୍ୟ କୁସୁମ'ର ଅତି ଚିତ୍ତାକର୍ଷକ ଓ ନୀତିଉପଦେଶଗର୍ଭକ ସେହି ପ୍ରଥମ ଗଳ୍ପଟି 'ଉଦର ଓ ଅବୟବମାନେ'— ଏବେ ସୁଦ୍ଧା ସେହି ପାଠ୍ୟପୁସ୍ତକଟି ସ୍କୁଲରେ ସାହିତ୍ୟ ଶ୍ରେଣୀରେ ବହୁବର୍ଷ ପୂର୍ବେ ପାଠକକରିଥିବା ବର୍ଷୀୟାନ୍ ଲୋକମାନଙ୍କର ସ୍ମୃତି-ପୀଠର ସ୍ୱର୍ଣ୍ଣସିଂହାସନରେ ଅଭିଷିକ୍ତ ହୋଇ ରହିଛି । ଏବେ ସୁଦ୍ଧା ନଈ ପୋଖରୀକୁ ଗାଧୋଇଗଲାବେଳେ କେଉଟମାନଙ୍କ ମାଛ ମାରିବାର ଦେଖିଲେ 'ସାହିତ୍ୟ କୁସୁମ'ର ତିନୋଟି ମାଛର କଥା ମୁହୁର୍ମୁହୁଃ ଆସି ମନେପଡ଼େ । ଯେଉଁ 'ଦୀର୍ଘସୂତ୍ରୀ' ମାଛ ଅନ୍ୟ ମାଛମାନଙ୍କ ସହିତ ଗୁନ୍ଥା ହୋଇ ଶେଷରେ ମଲା, ତା' ପ୍ରତି ଏବେ ସୁଦ୍ଧା କରୁଣାରେ ହୃଦୟ ସିକ୍ତ ହୋଇଉଠେ । ପୁଷ୍କରିଣୀରେ ପଦ୍ମଟିଏ ପ୍ରସ୍ଫୁଟିତ ହେବାର ଦେଖିଲେ 'ଛାନ୍ଦମାଳା' ଦ୍ୱିତୀୟ ଖଣ୍ଡରେ ପ୍ରକଶିତ ଏବଂ ପରେ ମଧବୃତ୍ତି ପରୀକ୍ଷାପାଇଁ ନିର୍ବାଚିତ 'ସାହିତ୍ୟ-ପ୍ରସଙ୍ଗ' ପୁସ୍ତକରେ ସନ୍ନିବେଶିତ 'ପଦ୍ମ' କବିତାର ଏହି ଶେଷ ପଦଟି ରାଗରାଗିଣୀ ଦେଇ ନବୋଲେ କିଏ ?

"ଅନନ୍ତ ମହେଶ୍ୱର ମୋ ପ୍ରାଣସାଇଁ
ବୋଲି ରାଜୀବ, ସଦା ଥିବି ଅନାଇଁ ।
ଶିଖାଅ ମୋତେ ସଦା ଏ ପୁଣ୍ୟବ୍ରତ
ତୋର ଆଶିଷେ ପୂରୁ ମୋ ମନୋରଥ ।"

ମଧୁସୂଦନଙ୍କ ପାଠ୍ୟପୁସ୍ତକ ତତ୍‌କାଳୀନ ଛାତ୍ରମାନଙ୍କ ଅବଚେତନ ମନ ଉପରେ କି ସମ୍ମୋହନ ପ୍ରଭାବ ବିସ୍ତାର କରିଥିଲା ଏବଂ ସେତେବେଳେ ମଧୁସୂଦନଙ୍କ ତତ୍‌ସମଶବ୍ଦବହୁଳ ଓ ଭାବୋଦ୍ଦୀପକ ଗଦ୍ୟରଚନାଶୈଳୀର କି ଯାଦୁକରୀ ଶକ୍ତି ଥିଲା, ତାହାର ଗୋଟିଏ କୌତୁକପୂର୍ଣ୍ଣ ଘଟନା ଜଣେ ପ୍ରତ୍ୟକ୍ଷଦର୍ଶୀଙ୍କ ମୁଖରୁ ମୁଁ ଯେପରି ଶୁଣିବାକୁ ପାଇଛି, ତାହା ଅବିକଳ ଏଠାରେ ଉଦ୍ଧାରକଲି—

'ସାହିତ୍ୟ-ପ୍ରସଙ୍ଗ'ରେ 'ଚନ୍ଦ୍ର ଓ ତାରା' ନାମରେ ଗୋଟିଏ କ୍ଷୁଦ୍ର ଆଖ୍ୟାୟିକା ଅଛି । ଆଖ୍ୟାୟିକାଟି ଇଂରାଜୀରୁ ଅନୁବାଦିତ— କିନ୍ତୁ ଭାଷା ଓ ବିଷୟ-ବିନ୍ୟାସ ପରିପାଟୀରୁ ମୌଳିକତାଧର୍ମୀ ଗଳ୍ପରୂପେ ମନେହୁଏ । ଗୋଟିଏ ପ୍ରତିଷ୍ଠିତ ମଧ-ଭର୍ଣ୍ଣାକୁଲାର ସ୍କୁଲର ସାହିତ୍ୟ-ଶିକ୍ଷକ ଦୁଇତିନିଥର ସେ ଗଳ୍ପଟି ଛାତ୍ରମାନଙ୍କୁ ପଢ଼ାଉଥିଲେ । ଏହି କପୋଳକଳ୍ପିତ ଆଖ୍ୟାୟିକାର ଅନ୍ତରାଳରେ ସୂର୍ଯ୍ୟ, ଚନ୍ଦ୍ର, ତାରା ଓ ଗ୍ରହନକ୍ଷତ୍ରମାନଙ୍କ ସମ୍ବନ୍ଧରେ ଯେଉଁସବୁ ବୈଜ୍ଞାନିକ ତତ୍ତ୍ୱ ନିହିତ, ତା' ମଧ୍ୟ ଛାତ୍ରମାନଙ୍କୁ ସେହି ପ୍ରବୀଣ ଶିକ୍ଷକ ବେଶ୍ ପ୍ରାଞ୍ଜଳଭାବରେ ବୁଝାଇଦେଇଥିଲେ; କିନ୍ତୁ କ୍ଲାସ୍ ଭିତରେ ଗୋଟିଏ ଆନନ୍ଦମୟ ରସ-ପରିବେଶ ସୃଷ୍ଟି ହୋଇଥିଲା ଯେତେବେଳେ ଶିକ୍ଷକ

ମଧୁବାବୁଙ୍କ ଭାଷା-ବିନ୍ୟାସ ଓ ରଚନା-ରୀତିରେ ମୁଗ୍ଧ ହୋଇ 'ଚନ୍ଦ୍ର ଓ ତାରା'ରୁ ଜଳଦ-ଗମ୍ଭୀର କଣ୍ଠରେ ପାଠକଲେ– ''ଏମନ୍ତ ସମୟରେ ଗୋଟିଏ ନବୀନ ପଦାର୍ଥ ଜ୍ୟୋତିଷ୍କମାନଙ୍କର ଦୃଷ୍ଟିଗୋଚରହେଲା । ଗୋଟିଏ ସୂକ୍ଷ୍ମ ଜ୍ୟୋତିଃସୂତ୍ର ଦିଗ୍‌ବଳୟୋପରି ଉଦିତ ହେଲା । ଏହିଟି ପ୍ରଥମ ପ୍ରତିପଚ୍ଚନ୍ଦ୍ର । ସୌଷ୍ଠବାନ୍ୱିତ ପ୍ରଭାମୟ ନକ୍ଷତ୍ରପୁଞ୍ଜ ଅବଲୋକନ କରି ଚନ୍ଦ୍ର ଭୀତ ଓ ଲଜ୍ଜିତ ହୋଇ ଆପଣାର କୃଶ କୁତ୍ସିତ ରୂପକୁ ଶୀଘ୍ର ସାଗରଗର୍ଭସ୍ଥ କଲା । ଚନ୍ଦ୍ର ଗଗନରୁ ତିରୋହିତ ହେଲାକ୍ଷଣି ନକ୍ଷତ୍ରମାନେ ବିସ୍ମୟାନ୍ୱିତ ହୋଇ ପରସ୍ପର ପ୍ରତି ଜିଜ୍ଞାସୁ ନୟନରେ ଅନାଇଲେ । ''ଆଃ, ଏଉଟା କି ବଙ୍କା ମୂର୍ତ୍ତି !' ଏହା ବୋଲି ସେମାନେ ଅସ୍ତଗତ ଚନ୍ଦ୍ରକୁ ଉପହାସ କରିବାକୁ ଲାଗିଲେ ।''– ଶିକ୍ଷକଙ୍କ ପଠନ ପ୍ରଣାଳୀ ଅତି ଚମତ୍କାର ଥିଲା । ଫଳରେ ଛାତ୍ରମାନଙ୍କ କଳ୍ପନା ସୁଦୂର ଆକାଶ ଅଭିମୁଖେ ଉତ୍ତେଜିତ ହୋଇଉଠିଲା ଏବଂ ସେମାନଙ୍କ ପ୍ରାଣରେ ଆନନ୍ଦର ପ୍ରସ୍ରବଣ ଛୁଟିଲା । କିନ୍ତୁ ଏଇ ଶେଷୋକ୍ତ ବାକ୍ୟଟି 'ଏଉଟା କି ବଙ୍କା ମୂର୍ତ୍ତି' ଜଣେ ଛାତ୍ରଙ୍କର ଅବଚେତନ ମନରେ ଏପରି ପ୍ରତିକ୍ରିୟା ସୃଷ୍ଟିକରିଥିଲା ଏବଂ ତାଙ୍କର ସ୍ମୃତିଶକ୍ତିକୁ ଏପରି ଭାବରେ ସମ୍ମୋହିତ କରିଥିଲା ଯେ, ଯେଉଁଦିନ ଏ ପାଠଟି ଶେଷ ହେଲା, ସେଦିନ ସେ ଅନ୍ୟାନ୍ୟ ଦିନପରି ସହପାଠୀମାନଙ୍କ ସହ ପରୀକ୍ଷାପାଇଁ ପାଠ ପ୍ରସ୍ତୁତ କରିବା ନିମନ୍ତେ ସ୍କୁଲଘରେ ରାତିରେ ରହିଥିଲେ । ରାତି ଘଡ଼ିଏ ଦି'ଘଡ଼ି ବେଳକୁ ତାଙ୍କୁ ଭାରି ନିଦ ଲାଗିଲା । ସେ ଶୋଇପଡ଼ିଲେ । ସେହି ସାହିତ୍ୟ ଶିକ୍ଷକ ମହାଶୟ ସ୍କୁଲର ହେଡ୍‌ ପଣ୍ଡିତ । ପିଲାଙ୍କ ଉପରେ ତାଙ୍କର ତୀକ୍ଷ୍ଣ ଦୃଷ୍ଟି । କିପରି କ'ଣ ପିଲେ ପଢ଼ାପଢ଼ି କରୁଛନ୍ତି ଦେଖିବାକୁ ସେ ସ୍କୁଲ ଭିତରକୁ ଆସିଲେ । ଦେଖିଲେ ଛାତ୍ର 'ଫକୀର' ଗାଢ଼ ନିଦ୍ରାରେ ଅଭିଭୂତ । ପଣ୍ଡିତଙ୍କୁ ତ ଛାତ୍ରମାନଙ୍କର କୋକୁଆଭୟ । ଜଣେ ଫକୀରକୁ ଚିମୁଟି ଦେଇ ତୁନି କରି ତା' କାନରେ କହିଦେଲା, 'ବଡ଼ ଆପଣେ ଆସୁଛନ୍ତି ।' ସେ ଭୟରେ ଚମକି ଉଠିପଡ଼ିଲାବେଳେ ତା' ମୁହଁରୁ ହଠାତ୍ ଏଇ ବାକ୍ୟଟି ବାହାରିପଡ଼ିଲା 'ଆଃ, ଏଉଟା କି ବଙ୍କା ମୂର୍ତ୍ତି ।' ବଡ଼ଆପଣେ ଶୁଣି ଅବାକ୍ ହେଲେ । ହାସ୍ୟରୋଳରେ ସେଦିନ ସ୍କୁଲ ଗୃହଟି ମୁଖରିତ ହୋଇଉଠିଥିଲା । ଏ ପ୍ରାୟ ଷାଠିଏ ବର୍ଷ ତଳର କଥା । ଏବେ ସୁଦ୍ଧା ଛାତ୍ର ଫକୀରଙ୍କର ସେହି ସ୍ୱପ୍ନ କଥା ସମୟେ ସମୟେ ସାଙ୍ଗମେଳରେ ଚର୍ଚ୍ଚା ହୁଏ ଏବଂ ତା' ସହିତ ମଧୁବାବୁଙ୍କର ରଚନାଶୈଳୀ ପ୍ରତି ଶ୍ରଦ୍ଧାଞ୍ଜଳି ନିବେଦନ କରି ତାଙ୍କର ପ୍ରଶସ୍ତି ଗାନକରାଯାଏ । ଏପରି ପ୍ରସଙ୍ଗ ଏଠାରେ କିଞ୍ଚିତ୍ ଅବାନ୍ତର ହେଲେ ମଧ, ଉଲ୍ଲେଖଯୋଗ୍ୟ ଓ ଶିକ୍ଷଣୀୟ । ଯାହା ସତ୍ ଓ କଲ୍ୟାଣବାହୀ, ସେଥିରେ ବାନ୍ତରଅବାନ୍ତରର ପ୍ରଶ୍ନ ଉତ୍‌ଥାପନ କରିବା ବିଜ୍ଞତାର ପରିଚାୟକ ନୁହେଁ । ଛାନ୍ଦମାଳା ପ୍ରଥମ ଓ ଦ୍ୱିତୀୟ ଖଣ୍ଡ, କବିତାବଳୀ ଏବଂ ପ୍ରବନ୍ଧମାଳା ପ୍ରଭୃତି ପୁସ୍ତକ ମଧୁସୂଦନଙ୍କ ସାହିତ୍ୟ-ପ୍ରତିଭାର ଉନ୍ମେଷ-ସୂଚକ ହେଲେ ମଧ କିଶୋର ବାଳକବାଳିକାମାନଙ୍କର

ନମନୀୟ ମନକୁ ଏ ସକଳ ବହି କିପରି ସ୍ୱଦେଶପ୍ରେମ, ପିତୃମାତୃଭକ୍ତି, ସୌନ୍ଦର୍ଯ୍ୟବୋଧ ଓ ବିଭୁପରାୟଣତାରେ ଉଦ୍‌ବୁଦ୍ଧ କରିଥିଲା, ତାହା ଯେଉଁମାନେ ଅନୁଭବୀ, ସେମାନେ ସମସ୍ତେ ଜାଣନ୍ତି ।

ମଧୁସୂଦନ ସ୍କୁଲ ପରିଦର୍ଶନ କରିବାକୁ ଯାଇ ଶିକ୍ଷକମାନଙ୍କର ଶିକ୍ଷାଦାନ ରୀତି ଦେଖି ନିତାନ୍ତ କ୍ଷୁଣ୍ଣ ଓ ନିରାଶ ହେଉଥିଲେ । ପାଠ୍ୟ ବିଷୟ ପ୍ରତି ଛାତ୍ରମାନଙ୍କର ଅନୁରାଗ କିପରି ଆକର୍ଷିତ ହେବ, ଏ ପଠନ-ରୀତିରେ ତାହାର କୌଣସି ସୁଚିନ୍ତିତ କିମ୍ବା ପୂର୍ବ ପରିକଳ୍ପିତ ପ୍ରଣାଳୀ ନଥିଲା । ପୋଷା ଶୁଆକୁ 'ରାଧେକୃଷ୍ଣ ରଟରେ' ଶିଖାଇଲା ପରି ଛାତ୍ରମାନଙ୍କୁ କେବଳ ଶିକ୍ଷକମାନେ ସେତେବେଳେ 'ଘୋଷବନ୍ତ ବଳବନ୍ତ' କରି ଗୋଟିଏ ଗୋଟିଏ ପୋଷା ଶୁଆରେ ପରିଣତ କରୁଥିଲେ । ସ୍କୁଲରେ କେବଳ ଥିଲା ଭୟ ସଞ୍ଚାରର ଅଖଣ୍ଡ ଆଧିପତ୍ୟ । ଶିକ୍ଷକମାନେ ଗୋଟିଏ ଗୋଟିଏ ସାକ୍ଷାତ୍ ଯମଦୂତ । ଛାତ୍ରମାନଙ୍କ ପ୍ରତି କେବଳ କଠୋର ଦଣ୍ଡବିଧାନ ବ୍ୟବସ୍ଥାରେ ଶିକ୍ଷାର ମୌଳିକ ଲକ୍ଷ୍ୟ ପୂର୍ଣ୍ଣ ହୁଏନାହିଁ– ଛାତ୍ରମାନଙ୍କ ମନରେ ଜ୍ଞାନର ଆଲୋକ ପ୍ରଜ୍ୱଳିତ କରି ସେମାନଙ୍କର ମନୁଷ୍ୟତାର କ୍ରମିକ ବିକାଶରେ ସାହାଯ୍ୟ କରିବାକୁ ହେଲେ ଛାତ୍ରମାନଙ୍କୁ ସ୍ନେହ, ପ୍ରୀତି ଓ ଶ୍ରଦ୍ଧାର ସୁମଧୁର ବେଷ୍ଟନୀରେ ବାନ୍ଧିବାକୁ ହେବ ଏବଂ ଆଦର୍ଶ ଶିକ୍ଷକ ହେବାକୁ ହେଲେ ପ୍ରାପ୍ତ ମାସିକ ବେତନଟିକୁ କେବଳ ଜୀବନର ଚରମ ଲକ୍ଷ୍ୟ ବୋଲି ମନେନକରି, କ୍ଲାସ୍‌କୁ ଆସିବା ପୂର୍ବରୁ ପଠନ-ପାଠନର ରୀତିମତ ଅଭ୍ୟାସ ରଖିବାକୁ ହେବ । ଏହିସବୁ ଉଦ୍ଦେଶ୍ୟନେଇ ମଧୁସୂଦନ ପ୍ରଚଳିତ ଶିକ୍ଷା-ପଦ୍ଧତିରେ ଅନେକ ପରିବର୍ତ୍ତନ ଆଣିଥିଲେ । ଶିକ୍ଷକମାନଙ୍କୁ ଆଦର୍ଶ ଶିକ୍ଷା-ପ୍ରଣାଳୀ ସହିତ ପରିଚିତ କରାଇବା ନିମନ୍ତେ ସେ 'ଅବଧାନ-ବନ୍ଧୁ' ନାମକ ପୁସ୍ତକ ରଚନା କରିଥିଲେ ।

ପ୍ରାଥମିକ ଶିକ୍ଷା ସମ୍ବନ୍ଧରେ ତାଙ୍କର ଚିନ୍ତା ଓ ପରିକଳ୍ପନାର ପରିଚୟ ମିଳେ ୧୮୮୩ ମସିହାରେ ଲେଖାହୋଇଥିବା ତାଙ୍କର ଏହି 'ଅବଧାନ-ବନ୍ଧୁ' ପୁସ୍ତକରୁ । ଅନ୍ୟାନ୍ୟ ବିଷୟ ସହିତ ସେଥିରେ ସେ ସୂଚାଇଥିଲେ, ‘‘ଛାତ୍ରମାନଙ୍କୁ ନାନାଶାସ୍ତ୍ର ପଢ଼ାଇ ପଣ୍ଡିତ କରିବା ଚାଟଶାଳୀ ଶିକ୍ଷାର ଉଦ୍ଦେଶ୍ୟ ନୁହେଁ । ସେଥିପାଇଁ ବଡ଼ ବଡ଼ ବିଦ୍ୟାଳୟମାନ ଅଛି । ଯେଉଁମାନଙ୍କର ଅର୍ଥ, ରୁଚି ଓ ଅବସର ଅଛି, ସେମାନେ ବଡ଼ ବଡ଼ ବିଦ୍ୟାଳୟରେ ଉଚ୍ଚ ଶାସ୍ତ୍ରମାନ ପଢ଼ି ପଣ୍ଡିତ ହୋଇପାରିବେ । କିନ୍ତୁ ସଂସାରରେ ପନ୍ଦରଅଣାରୁ ଅଧିକ ଲୋକ ଅତିଶୟ ଦରିଦ୍ର । ସେମାନଙ୍କର ଏମନ୍ତ ଶକ୍ତି ନାହିଁ ଯେ ସେମାନେ ଏପରି ଉଚ୍ଚଶିକ୍ଷା ନିଜ ସନ୍ତାନମାନଙ୍କୁ ଦେଇପାରିବେ, ଅଥଚ ସନ୍ତାନମାନଙ୍କୁ ଏପରି ଶିକ୍ଷାଦେବା ଉଚିତ, ଯାହାଦ୍ୱାରା ସେମାନେ ଉତ୍ତରକାଳରେ ନିଜ ନିଜ ବୁଦ୍ଧି ପ୍ରୟୋଗ କରି ସଂସାରର କାର୍ଯ୍ୟକ୍ଷେତ୍ରରେ ସହଜରେ ଓ ସାଧୁଭାବରେ ଜୀବନଯାତ୍ରା

ସମ୍ପାଦନ କରିପାରିବେ । ଚାଟଶାଳୀ ଶିକ୍ଷାର ଏହି ଉଦ୍ଦେଶ୍ୟ ହେବା ଉଚିତ । ଚାଟଶାଳୀ ଶିକ୍ଷାକୁ ଆଦିଶିକ୍ଷା ବୋଲାଯାଇପାରେ । ଯାହା ନଶିଖିଲେ ନଚଳେ, ଅଥବା ଯାହା ନ ଶିଖିଲେ ଉଚ୍ଚ ଶାସ୍ତ୍ରମାନ ପଢ଼ିପାରିବା ଅସମ୍ଭବ, ତାକୁ ଆଦିଶିକ୍ଷା ବୋଲାଯାଏ ।'' (ନଟବର ସାମନ୍ତରାୟ– 'ଗଳ୍ପ ନୁହେଁ, ସମାଲୋଚନା' ପୃ.୨୭) ।

ଏହି ଆଦିଶିକ୍ଷାକୁ ମାର୍ଜିତ ଓ ବିଜ୍ଞାନ-ସମ୍ମତ ରୂପ ଦେଇଥିଲେ ମଧୁସୂଦନ । ଶିକ୍ଷାର ପ୍ରସାର ଓ ସମୁନ୍ନତିବିଧାନ ନିମନ୍ତ ତାହାଙ୍କର କଳ୍ପନା ଓ ଚିନ୍ତା ସୁଦୂରପ୍ରସାରୀ ଥିଲା । ଅନ୍ୟାନ୍ୟ କାରଣ ମଧ୍ୟରେ ଏ ଗୋଟିଏ କାରଣ ଯାହା୍ ଯୋଗୁଁ କୁହାଯାଏ– 'ମଧୁସୂଦନ ଥିଲେ ଉତ୍କଳରେ ନବଯୁଗର ପ୍ରବର୍ତ୍ତକ ।'

ମଧୁସୂଦନ ୧୮୮୦-୮୧ ମଧ୍ୟରେ ଲିଖିତ ତାଙ୍କର ପ୍ରଥମଖଣ୍ଡ 'ଛାନ୍ଦମାଳା'ର 'ବିଦ୍ୟା' ଓ 'ସୁଶୀଳତା' ନାମକ କ୍ଷୁଦ୍ର ନୀତି-ଉପଦେଶ ସମ୍ବଳିତ କବିତା ଦୁଇଟିରେ ଶିଶୁମାନଙ୍କୁ ଯେଉଁ ନୀତିବାକ୍ୟ ପ୍ରଦାନ କରିଅଛନ୍ତି, ତାହାହିଁ ଥିଲା ପ୍ରାଥମିକ ଶିକ୍ଷା ସମ୍ବନ୍ଧରେ ତାଙ୍କର ଆଦର୍ଶ ବା ସ୍ୱପ୍ନ । ପ୍ରାଥମିକ ତଥା ମାଧ୍ୟମିକ ଶିକ୍ଷାକୁ ସେ ସେହି ଆଦର୍ଶରେ ଫଳବତୀ ଦେଖିବାକୁ ଆଗ୍ରହୀ ଥିଲେ । ଏ ଦିଗରୁ ବିଚାରକଲେ ଭୂଦାନ ଯଜ୍ଞର ପୁରୋଧା ଏବଂ ନୟୀ ତାଲିମ କିମ୍ବା ମୌଳିକ ଶିକ୍ଷାର (Basic Education) ପୃଷ୍ଠପୋଷକ ବିନୋବାଜୀଙ୍କ ଶିକ୍ଷା-ଚିନ୍ତା ସହିତ ମଧୁସୂଦନଙ୍କ ଶିକ୍ଷା-ଚିନ୍ତାର ଯଥେଷ୍ଟ ମୌଳିକ ସାମଞ୍ଜସ୍ୟ-ଧାରା ପରିଲକ୍ଷିତ ହୁଏ । ବିନୋବାଜୀଙ୍କ ମତରେ, 'ଶିକ୍ଷାରେ ଦୁଇଟି ବିଷୟ ଦେଖିବାକୁ ପଡ଼େ । ପ୍ରଥମଟି ହେଉଛି ଯେଉଁ ଶିକ୍ଷା ଦିଆଯାଉଛି ତାହା ଲୋକସାଧାରଣଙ୍କ ଖର୍ଚ୍ଚରେ ଦିଆଯାଉଛି; ତେଣୁ ତାହା ପ୍ରତ୍ୟକ୍ଷ ବ୍ୟବହାରରେ ଲାଗିବା ଉଚିତ । ବାଳକ ଏପରି ଶିକ୍ଷା ପାଇବ ଯେ ଶିକ୍ଷିତ ହେବା ପରେ ସମର୍ଥ ହୋଇ ସଂସାରର ସେବା କରିବାପାଇଁ ଆଗଭର ହୋଇ ବାହାରିବ ଓ ସେ ଯେତେ ପାଇଥିବ, ତାହାର ଦଶଗୁଣ ସେ ଅନ୍ୟମାନଙ୍କୁ ଦେଇପାରିବ । ସେରେ ବିହନ ବୁଣିଲେ ଯେପରି ତାହା ପଚିଶ ସେର ହୋଇଯାଏ, ସେହିପରି ଛାତ୍ର ଚିତ୍ତ-ଭୂମିରେ ଯେଉଁ ବିଚାର-ବୀଜ ରୋପିତ ହୋଇଥିବ, ତାହା ଦଶ କୋଡ଼ିଏ ଗୁଣ ହୋଇଯିବା ଉଚିତ ।

''ଶିକ୍ଷାରୁ ଆଉ ଗୋଟିଏ କଥା ମଧ୍ୟ ପ୍ରତ୍ୟାଶା କରାଯାଏ ଯେ, ଯେତେ ଯେତେ ଶକ୍ତି ଅଛି ସେ ସବୁ ମୁନିଋଷିମାନେ ଆମକୁ ବୁଝାଇ ଦେଇଅଛନ୍ତି । 'ଅନନ୍ତଂ ହି ମନଃ ଅନନ୍ତଃ ବିଶ୍ୱଦେବାଃ'– ବିଶ୍ୱଦେବ ଅନନ୍ତ, ମନ ମଧ୍ୟ ଅନନ୍ତ । ଆମେ ଯେତେବେଳେ ମନର ଗୋଟିଏ ବୃତ୍ତି ଓ ଶକ୍ତିକୁ ବିଶ୍ଳେଷଣ କରିବସୁ ସେତେବେଳେ ତା'ର ଅନେକାନେକ ଗୁଣର ଆଭାସ ମିଳିଥାଏ । ଆତ୍ମା ସଚ୍ଚିଦାନନ୍ଦ ଅଟେ । ତାହାର ସାନ୍ନିଧ ହେତୁ ମନରେ ବହୁବିଧ ଗୁଣର ଛାୟା ପ୍ରତିବିମ୍ବିତ ହୋଇଉଠେ; ଅନନ୍ତଗୁଣ ମନରେ ଉଛୁଳି ଉଠନ୍ତି ।

''ଆମକୁ ଅନୁଭବୀ ପୁରୁଷ ଶିଖାଇଛନ୍ତି ଯେ ସେହି ହେଉଛି ବଡ଼ ଶିକ୍ଷା, ଯାହାଦ୍ୱାରା ଆମେ ନିଜନିଜକୁ ମନ ଓ ଶରୀରଠାରୁ ଭିନ୍ନ ବୋଲି ଚିହ୍ନିପାରୁ ।''

''ପ୍ରାଚୀନ କାଳରେ ଯଦି କୌଣସି ବିଦ୍ୟାର୍ଥୀ ଗୁରୁ ନିକଟକୁ ଯାଇ କେବଳ ବିଦ୍ୟାର୍ଜନ କରୁଥିଲା, ତେବେ ତାହାକୁ ବିଦ୍ୟା-ସ୍ନାତକ କୁହାଯାଉଥିଲା । ତାହାକୁ ନିଜକୁ ନିଜେ ଜୟ କରିବାକୁ ପଡୁଥିଲା । ଆତ୍ମ-ଦମନ, ଆତ୍ମନିୟମନ କଳା ଯେ ଶିଖୁଥିଲା, ତାହାକୁ ବ୍ରତ-ସ୍ନାତକ କୁହାଯାଉଥିଲା ।''

''ଏହି ବିଦ୍ୟା-ସ୍ନାତକ ଏପରି ବୀରୋନ୍ମାଦରେ ସଂସାରରେ ପ୍ରବେଶ କରିବ ଯେ 'ନମୟତୀବ ଗତିର୍ଧରିତ୍ରୀ'– ସତେକି ସେ ଚାଲିଲାବେଳକୁ ପୃଥିବୀ ଦବିଯାଉଛି । ଏହାର ଅର୍ଥ ନୁହେଁ ଯେ ବିଦ୍ୟାର୍ଥୀ ଉଦ୍ଧତ ହୋଇଯିବ । ତାହାଠାରେ ନମ୍ରତା ତ ନିଶ୍ଚୟ ରହିଥିବ; କାରଣ ଜ୍ଞାନ ଲାଭ କରିଥିବା ବ୍ୟକ୍ତି ଜ୍ଞାନ କେଡ଼େ ଅନନ୍ତ ଓ ସେଥିରୁ ସେ କେତେ ଅଳ୍ପ ଅଂଶ ପାଇଛି ତାହା ଜାଣିଥିବ । x x କିନ୍ତୁ ନମ୍ରତା ସାଙ୍ଗକୁ ଦୃଢ଼ନିଶ୍ଚୟତା, ଆତ୍ମବିଶ୍ୱାସ, ଧୈର୍ଯ୍ୟ, ନିର୍ଭୟତା ଆଦି ସବୁଗୁଡ଼ିକ ଗୁଣ ବିଦ୍ୟାର୍ଥୀ ମଧ୍ୟରେ ରହିବା ବିଧେୟ । ଛାତ୍ର ସଂସାରରେ ପ୍ରବେଶ କଲାବେଳେ ବିଜୟୀ ବୀର ଭଳି ପ୍ରବେଶ କରିବ । ବେଦରେ ଗୋଟିଏ ମନ୍ତ୍ର ଅଛି, ବେଦାଧ୍ୟୟନ ପରିପୂର୍ଣ୍ଣ କଲାବେଳେ ଛାତ୍ର କହୁଛି, 'ମହ୍ୟଂ ନମନ୍ତାଂ ପ୍ରଦିଶଶ୍ ଚତସ୍ରଃ'– ଏ ଚାରିଦିଗ ମୋ ଆଗରେ ନତ ହୁଅନ୍ତୁ । ଏ ପ୍ରକାର ବିଦ୍ୟା ଯଦି କେହି ହାସଲ କରିବେ, ତେବେ ସେ ତଦ୍ୱାରା ସାରା ଜଗତର ସେବା କରିପାରିବେ ।''

(ଶିକ୍ଷାତତ୍ତ୍ୱ–ବିନୋବା ପୃ.୮୭-୮୯)

ସେହିପରି ଶିକ୍ଷା ରୀତିରେ ମଧୁସୂଦନଙ୍କର ଆଦର୍ଶ ଥିଲା– ଶିକ୍ଷକମାନେ ଛାତ୍ରମାନଙ୍କୁ ଏପରି ଶିକ୍ଷା ଦେବେ, ଏପରି ଉନ୍ନତ ଭାବରାଶିରେ ସେମାନଙ୍କୁ ବାଲ୍ୟକାଳରୁ ଉଦ୍‌ବୁଦ୍ଧ କରିବେ ଏବଂ ଏପରି ବିଚାର-ବୀଜ ସେମାନଙ୍କ ହୃଦୟରେ ଉପ୍ତ କରିବେ, ଯାହା ଫଳରେ ସେମାନଙ୍କର ବୌଦ୍ଧିକ, ଚାରିତ୍ରିକ ଓ ଆତ୍ମିକ ଉତ୍କର୍ଷ କ୍ରମେ କ୍ରମେ ସାଧିତ ହୋଇପାରିବ । ସେମାନେ ଯେପରି ନମ୍ରତାର ଜୀବନ୍ତ ଅବତାର ହୋଇ ବୀରୋନ୍ମାଦରେ ସଂସାରରେ ପ୍ରବେଶ କରିବେ । ତେଣୁ ଛାନ୍ଦମାଳାର 'ବିଦ୍ୟା'ରେ ଅଛି ।

''ବିଦ୍ୟା ଅଟଇ ମହାଧନ, ବାଳକେ କର ଉପାର୍ଜନ ।
ବିଦ୍ୟା ଅଟଇ ମହାରତ୍ନ, ହୃଦୟେ ଘେନ କରି ଯତ୍ନ ।
ବିଦ୍ୟା ଅଟଇ ମହାମିତ୍ର, ସେ ସଙ୍ଗେ ହୁଅ ହେ ପବିତ୍ର ।
ବିଦ୍ୟା ଅଟଇ ମହାବଳ, ସେ ବଳେ ଜିଣ ଭୂମଣ୍ଡଳ ।''

ଏବଂ 'ସୁଶୀଳତା' କବିତାରେ–

''ବିନୟ ଭାବ ବହି ମନେ, ସଂସାରେ ଚଳ ସଯତନେ ।
ସୁଶୀଳ ଶାନ୍ତ ଯା'ର ପ୍ରାଣ, ଲଭଇ ନିତ୍ୟ ସେ କଲ୍ୟାଣ ।

କପଟ ଚିନ୍ତା ପରିହରି, ସରଳ ଭାବ ହୃଦେ ଧରି ।
ଭାଷିବ ସତ୍ୟପ୍ରିୟ ବାଣୀ, ତୋଷିବ ନିତ୍ୟ ସର୍ବପ୍ରାଣୀ ।''

ଏ ନୀତି ଉପଦେଶ କେବଳ ଛାତ୍ରମାନଙ୍କପାଇଁ ଉଦ୍ଦିଷ୍ଟ ନଥିଲା, ସର୍ବାଗ୍ରେ ଉଦ୍ଦିଷ୍ଟ ଥିଲା ଶିକ୍ଷକମାନଙ୍କ ପ୍ରତି ଯେଉଁମାନେ ମାଟିପିଣ୍ଡୁଳାରୁ ସୁନ୍ଦର ମୃଣ୍ମୟ ମୂର୍ତ୍ତି ଗଠନ କରିବେ । ତେଣୁ ମଧୁସୂଦନ ତାଙ୍କ ଜୀବନରେ କଦାପି ଉପଦେଶବାଣୀ ଶୁଣାଇଦେଇ ତାଙ୍କର କର୍ତ୍ତବ୍ୟ ଶେଷହୋଇଗଲା ବୋଲି ମନେକରୁନଥିଲେ । ସେ ଯାହା ଥିଲେ ସମସ୍ତେ ତାହା ହୁଅନ୍ତୁ, ସେ ଯେଉଁ ସତ୍ୟ ଜୀବନରେ ଉପଲବ୍ଧି କରୁଛନ୍ତି ଅନ୍ୟମାନେ ତାହାର ରସ ଆସ୍ୱାଦନ କରନ୍ତୁ, ଏହାହିଁ ଥିଲା ତାଙ୍କ ଜୀବନର ନୀତି । ତେଣୁ ସେ ତାଙ୍କର ଚିନ୍ତା, କଳ୍ପନା ଓ ଆଦର୍ଶକୁ ସଦାବେଳେ କାର୍ଯ୍ୟରେ ପରିଣତ କରି ଶିକ୍ଷକ ଓ ଛାତ୍ରମାନଙ୍କୁ ଦେଖାଇଦେଉଥିଲେ । ନିଜର ଦୋଷ-ଦୁର୍ବଳତା ଗୋପନକରି ଅଯଥା ଆତ୍ମ-ବଡ଼ିମା ପ୍ରକଟନ କରିବା ତାଙ୍କର ସ୍ୱଭାବ-ବିରୁଦ୍ଧ ଥିଲା । ସମୟ ପଡ଼ିଲେ ପ୍ରାଚୀନ ଭାରତର ଆଚାର୍ଯ୍ୟଙ୍କ ପରି ସେ ଶିକ୍ଷକ, ଛାତ୍ର, ସହକର୍ମୀ, ବନ୍ଧୁବାନ୍ଧବ ଓ ଆତ୍ମୀୟ ସ୍ୱଜନମାନଙ୍କୁ ଉପଦେଶ ଦେଉଥିଲେ– ''ଯାନି ଅସ୍ମାକଂ ସୁଚରିତାନି ତାନି ତ୍ୱୟୋପାସ୍ୟାନି, ନୋ ଇତରାଣି ।'' ଯେଉଁଗୁଡ଼ିକ ଆମର ଭଲ କାମ, ସେଗୁଡ଼ିକୁ ତୁମ୍ଭେମାନେ ପୂରାପୂରି ଆଚରଣକର । ଆମର ଯେଉଁଗୁଡ଼ିକ ଭଲ କାମ ନୁହେଁ, ସେଗୁଡ଼ିକ ଅନୁକରଣ କରନାହିଁ ।

ସଦ୍‌କର୍ମର ଅନୁକରଣ ଓ ଅନୁଧାବନ ବଡ଼ହେବାପାଇଁ ଜୀବନରେ ବହୁତ ସାହାଯ୍ୟ କରେ; କିନ୍ତୁ ଅନ୍ଧ ଅନୁକରଣ ପରିବର୍ଜନୀୟ । ବିଦ୍ୟାଳୟ ପରିଦର୍ଶନ କଲାବେଳେ ମଧୁସୂଦନ କ୍ଲାସ୍‌ରେ ନିଜେ ପିଲାମାନଙ୍କୁ ପଢ଼ାଇ ଆଦର୍ଶ ଶିକ୍ଷଣରୀତି ପ୍ରତି ଶିକ୍ଷକମାନଙ୍କର ଦୃଷ୍ଟି ଆକର୍ଷଣ କରୁଥିଲେ । ଆଦର୍ଶ ପ୍ରଶ୍ନାବଳୀ ଛାତ୍ରମାନଙ୍କୁ ପଚାରି ସେମାନଙ୍କର କୌତୂହଳ ପାଠ୍ୟ-ବିଷୟ ପ୍ରତି କିପରି ଉଦ୍ରେକ କରିବାକୁ ହେବ, ସେ ପ୍ରଣାଳୀ ମଧ ଅତି ସହିଷ୍ଣୁତା ଓ ଧୈର୍ଯ୍ୟର ସହିତ ସେ ଶିକ୍ଷକମାନଙ୍କୁ ଶିଖାଇ ଦେଉଥିଲେ । ଛାତ୍ରମାନଙ୍କୁ ଅପରିଷ୍କାର ଅପରିଚ୍ଛନ୍ନ ଦେଖିଲେ ଶିକ୍ଷକମାନଙ୍କୁ ଏ ବିଷୟରେ ସେ ସତର୍କ କରିଦେଉଥିଲେ । ପ୍ରଶ୍ନର ଠିକ୍ ଉତ୍ତର ନ ଜାଣି ଯେ ଶିକ୍ଷକଙ୍କୁ ଠକିବାକୁ ଚେଷ୍ଟାକରେ, ସେପରି ଛାତ୍ରର ନୈତିକ ଜୀବନର ଉନ୍ନତି ନିମନ୍ତେ ସେ ଶିକ୍ଷକମାନଙ୍କୁ ଉପଦେଶ ଦେଉଥିଲେ । ଶିକ୍ଷାର ବହୁଳ ପ୍ରସାର ଦିଗରେ ସେ ଯତ୍ନଶୀଳ ଥିଲେ । ସ୍କୁଲ ନଥିବା ସ୍ଥାନରେ ସ୍କୁଲ ସ୍ଥାପନ କରିବାକୁ ସେ ସ୍ଥାନୀୟ ଲୋକମାନଙ୍କୁ ଉତ୍ସାହିତ କରୁଥିଲେ । ପ୍ରାଥମିକ ସ୍କୁଲକୁ ମଧ୍ୟଶ୍ରେଣୀ ବିଦ୍ୟାଳୟରେ ପରିଣତ କରିବାକୁ ସେ ଛାତ୍ରମାନଙ୍କର ଅଭିଭାବକମାନଙ୍କୁ ପାଖକୁ ଡାକି ସେମାନଙ୍କ ସହିତ ପରାମର୍ଶ କରୁଥିଲେ ଏବଂ ସରକାରରୁ ଆର୍ଥିକ ସାହାଯ୍ୟ ଦେବାକୁ ସଚେଷ୍ଟ ଥିଲେ ।

ଏତିକିରେ ମଧୁସୂଦନ ସନ୍ତୁଷ୍ଟ ନଥିଲେ । ଏ ସଂସାରରେ ଯେତେ ଯେତେ ମହତ୍ ଅନୁଷ୍ଠାନର ସୃଷ୍ଟି, ତାହାରି ମୂଳରେ ଅଛି କେତେକ ଜନକଲ୍ୟାଣକାମୀ ମନସ୍ୱୀ ମହାପୁରୁଷଙ୍କର ଅତୃପ୍ତିର ଗଭୀର ବେଦନା । ମଧୁସୂଦନ ଉତ୍କଳରେ ଆଦର୍ଶ ଶିକ୍ଷକଗୋଷ୍ଠୀ ସୃଷ୍ଟି କରିବା ନିମନ୍ତେ ୧୮୮୧ ଖ୍ରୀଷ୍ଟାବ୍ଦରେ 'କଟକ ଟାଉନ ସ୍କୁଲ' ନାମରେ ଗୋଟିଏ ମଧ୍ୟଇଂରାଜୀ ବିଦ୍ୟାଳୟ ସ୍ଥାପନ କରିଥିଲେ । ଏଥିରେ ସେ ସ୍ୱାଧୀନଭାବରେ ନିଜର ପରିକଳ୍ପିତ ଶିକ୍ଷଣରୀତିର ପରୀକ୍ଷା ନିରୀକ୍ଷା କରି ଆଦର୍ଶ ଶିକ୍ଷାର ଦୃଷ୍ଟାନ୍ତ ଦେଖାଇ ପାରିବେ, ଏହାହିଁ ଥିଲା ତାଙ୍କ ମନର ଭାବ । ନିଜର ମନୋମତ ସ୍କୁଲ ନିଜେ ଗଢ଼ି ଏଥିରେ ଉତ୍କଳ-ସାହିତ୍ୟର ସମ୍ପାଦକ ସ୍ୱର୍ଗତ ବିଶ୍ୱନାଥ କରଙ୍କୁ ଶିକ୍ଷକରୂପେ ନିଯୁକ୍ତ କରିଥିଲେ । ବିଶ୍ୱନାଥ ବଡ଼ ବିଦ୍ୟୋତ୍ସାହୀ ଓ ତେଜସ୍ୱୀ ପୁରୁଷ ଥିଲେ । ମଧୁବାବୁଙ୍କ ଶିକ୍ଷା-ଚିନ୍ତା ସହିତ ସେ ପୂର୍ଣ୍ଣରୂପେ ଏକମତ ଥିଲେ । ବିଶ୍ୱନାଥ କର ପ୍ରଧାନଶିକ୍ଷକ ଥିବା ସମୟରେ ଏହି ସ୍କୁଲର ଏପରି ଉନ୍ନତି ହୋଇଥିଲା ଯେ ଏଥିରୁ ଛାତ୍ର ପ୍ରତିବର୍ଷ ବୃତ୍ତି ପାଉଥିଲେ । ଛାତ୍ରସଂଖ୍ୟା ପ୍ରତିବର୍ଷ ବଢୁଥିବାର ଦେଖି ଏହାକୁ ମଧୁସୂଦନ ୧୮୮୯ରେ ହାଇସ୍କୁଲରେ ପରିଣତ କରିଥିଲେ । ବିଜୟଚନ୍ଦ୍ର ମଜୁମଦାର ଏହି ହାଇସ୍କୁଲର ପ୍ରଧାନଶିକ୍ଷକ ରୂପେ ନିଯୁକ୍ତ ହେଲେ; କିନ୍ତୁ ହାଇସ୍କୁଲଟିଏ ଚଳାଇବା ବଡ଼ ବ୍ୟୟସାଧ୍ୟ କଥା । ମଧୁସୂଦନଙ୍କ ପକ୍ଷରେ ଏ ଗୁରୁଭାର ବହନ କରିବା ଅସମ୍ଭବ ହୋଇପଡ଼ିବାରୁ ଦୁଇବର୍ଷ ପରେ ହାଇସ୍କୁଲଟି ପୁନର୍ବାର ମଧ୍ୟଇଂରେଜୀ ବିଦ୍ୟାଳୟରେ ପରିଣତ ହେଲା ।

୧୮୮୬ ଖ୍ରୀଷ୍ଟାବ୍ଦରେ ମଧୁସୂଦନ 'ଶିକ୍ଷା-ବନ୍ଧୁ' ନାମରେ ଗୋଟିଏ ମାସିକ ପତ୍ର ପ୍ରକାଶ କରିଥିଲେ । ଏଥିରେ କେବଳ ଆଦର୍ଶ ଶିକ୍ଷକ, ଆଦର୍ଶ ଶିକ୍ଷାଦାନ ଓ ଶିକ୍ଷାପ୍ରଣାଳୀ ସମ୍ପର୍କୀୟ ପ୍ରବନ୍ଧମାନ ସ୍ଥାନପାଉଥିଲା । ମଧୁସୂଦନ ଓ ତଦାନୀନ୍ତନ ଅନ୍ୟାନ୍ୟ ଶିକ୍ଷାବିଦ୍‌ମାନଙ୍କର ଶିକ୍ଷା-ଚିନ୍ତା ଏବଂ ଶିକ୍ଷା-ଦର୍ଶନ ପ୍ରତିଷ୍ଠା ଓ ପ୍ରସାର କରିବାରେ ଏହି ପତ୍ରିକାଟି ବିଶେଷ ସାହାଯ୍ୟ କରୁଥିଲା । ଶିକ୍ଷକମାନେ ଏହି ପତ୍ରିକାଦ୍ୱାରା ବେଶ୍ ଉପକୃତ ହେଉଥିଲେ । ମଧୁସୂଦନଙ୍କ ଛଡ଼ା ସାଧୁଚରଣ ରାୟ, ବିଶ୍ୱନାଥ କର, ବିଜୟଚନ୍ଦ୍ର ମଜୁମଦାର ଓ ଶ୍ୟାମସୁନ୍ଦର ନନ୍ଦ ପ୍ରଭୃତି ଶିକ୍ଷକଗଣ ଏହି ପତ୍ରିକାର ନିୟମିତ ଲେଖକ ଥିଲେ ।

—

# ସପ୍ତମ ଅଧ୍ୟାୟ

## ପ୍ରଥମ ଉତ୍କଳୀୟ ପ୍ରଧାନଶିକ୍ଷକ

ମଧୁସୂଦନ ଏଗାରବର୍ଷ କାଳ ଅତ୍ୟନ୍ତ ସୁଖ୍ୟାତି ଓ ଦକ୍ଷତାର ସହିତ କଟକ ଜିଲାର ଡେପୁଟି ଇନ୍‌ସ୍ପେକ୍ଟର କାର୍ଯ୍ୟ ସମ୍ପାଦନ କଲା ପରେ ୧୮୯୧ ମସିହା ଜୁଲାଇ ମାସରେ ଅସ୍ଥାୟୀ ଭାବରେ ରେଭେନ୍‌ସା କଲେଜିଏଟ୍ ସ୍କୁଲର ପ୍ରଧାନଶିକ୍ଷକରୂପେ ନିଯୁକ୍ତ ହେଲେ । ୧୮୯୨ ମାର୍ଚ୍ଚ ମାସରେ ତାଙ୍କୁ ଏ ପଦରେ ସ୍ଥାୟୀ କରାଗଲା । ମାସିକ ବେତନ ଟ.୧୫୦ । ଏହି ସମୟରୁ ମଧୁସୂଦନ ଜଣେ ଗେଜେଟେଡ୍ ଅଫିସର ରୂପେ ପରିଚିତ ହେଲେ । ମଧୁସୂଦନ ହେଉଛନ୍ତି କଟକ ରେଭେନ୍‌ସା କଲେଜିଏଟ୍‌ର ପ୍ରଥମ ଓଡ଼ିଆ ପ୍ରଧାନ-ଶିକ୍ଷକ ।

ସେତେବେଳେ ରେଭେନ୍‌ସା କଲେଜର ସ୍ୱତନ୍ତ୍ର ଗୃହ ନଥିଲା । ୧୯୨୧ରେ ଏହା ଚାଉଳିଆଗଞ୍ଜକୁ ସ୍ଥାନାନ୍ତରିତ ହୋଇ ସ୍ୱତନ୍ତ୍ର ଗୃହରେ ପ୍ରତିଷ୍ଠିତ ହେଲା । କିନ୍ତୁ ମଧୁସୂଦନ ପ୍ରଧାନ-ଶିକ୍ଷକ ଥିଲାବେଳେ ସ୍କୁଲ ଓ କଲେଜ ଗୋଟିଏ ସ୍ଥାନରେ ଏକତ୍ର ହେଉଥିଲା; ଅର୍ଥାତ୍ ବର୍ତ୍ତମାନ କଲେଜିଏଟ୍ ସ୍କୁଲ ଯେଉଁଠାରେ ହେଉଅଛି, ସେହିଠାରେ । କଲେଜର ପ୍ରିନ୍‌ସପାଲ ଥିଲେ ଉଭୟ ଅନୁଷ୍ଠାନର ସର୍ବମୟ କର୍ତ୍ତା । ସେତେବେଳେ ହଲୟାର୍ଡ ନାମକ ଜଣେ ଇଂରେଜ ଶିକ୍ଷକ କଲେଜର କର୍ତ୍ତା ଥିଲେ । ତାଙ୍କ ଶାସନ-ନୀତିରେ ସେତେବେଳେ କି ଛାତ୍ର କି ଶିକ୍ଷକ ସମସ୍ତେ ଥରହର । ସାମାନ୍ୟ ଦୋଷ ନିମନ୍ତେ ସେ କଠୋର ଦଣ୍ଡର ବ୍ୟବସ୍ଥା କରୁଥିଲେ । ଅଧ୍ୟାପକ କିମ୍ବା ଶିକ୍ଷକମାନଙ୍କ ସହିତ ପରାମର୍ଶ କରି କୌଣସି କାର୍ଯ୍ୟାନୁଷ୍ଠାନ କରିବା ତାଙ୍କ ଜାତକରେ ନଥିଲା ।

ସେ ଗୋଟିଏ ଆଦେଶ ଜାରିକରିଥିଲେ ଯେ ୧୦ଘଣ୍ଟା ୨୫ମିନିଟ୍ ପୂର୍ବରୁ ସ୍କୁଲର ଫାଟକ ଖୋଲାହେବନାହିଁ । ଫାଟକରେ ମସ୍ତବଡ଼ ତାଲା । ପିଲେ ସବୁ ଆଗରୁ ଆସି ଗ୍ରୀଷ୍ମ କାଳରେ ବହୁ ସମୟ ପର୍ଯ୍ୟନ୍ତ ଫାଟକ ପାଖରେ ଠିଆହୋଇରହନ୍ତି । ଖରାରେ ବଡ଼ କଷ୍ଟ ଭୋଗିବାକୁ ପଡ଼େ । ସାହେବଙ୍କୁ ଏ ବିଷୟ ଜଣାଇଲେ ମଧ୍ୟ ସେ ଏହାର କୌଣସି ପ୍ରତିକାର କଲେନାହିଁ । ଦୁଷ୍ଟ ପିଲା ଜଣେଅଧେ କେଉଁ ସ୍କୁଲରେ ନାହାନ୍ତି, ଏପରି ନୁହେଁ । କେତେଜଣ ପିଲା ରାତିରେ ଆସି ତାଲାଟି ଭାଙ୍ଗି ଚୋରାଇନେଇଗଲେ । ତହିଁ ପରଦିନ ଏ ଦୁଃସମ୍ବାଦ ଶୁଣି ଅଧକ୍ଷ ଏକଦମ୍ ଅଗ୍ନିଶର୍ମା । ଏଥିପାଇଁ ବହୁ ନିର୍ଦ୍ଦୋଷ ଛାତ୍ରଙ୍କୁ ସାହେବ କଠୋର ଦଣ୍ଡ ଦେଲେ । ଛାତ୍ରମାନଙ୍କ ଅଭିଭାବକମାନେ ଏଥିରେ ଉତ୍ତ୍ୟକ୍ତ ହୋଇ ସାହେବଙ୍କ ବିରୋଧରେ ଆନ୍ଦୋଳନ

ଚଳାଇଲେ । ସଭା ସମିତି କରି ସାହେବଙ୍କ ଅନ୍ୟାୟ କାର୍ଯ୍ୟର ଘୋର ପ୍ରତିବାଦ କଲେ । ଏପରିକି 'ଉତ୍କଳ ଦୀପିକା' ଏହି ଅପ୍ରୀତିକର ଘଟନା ଉପରେ ସମ୍ପାଦକୀୟ ମନ୍ତବ୍ୟ ପ୍ରକାଶ କରି ଲେଖିଥିଲା–

"ଆମ୍ଭମାନଙ୍କ କଲେଜର ଅଧକ୍ଷ ମହାଶୟଙ୍କ କାର୍ଯ୍ୟରେ ଅନେକ ଅସନ୍ତୋଷ ପ୍ରକାଶ କରୁଅଛନ୍ତି । ଶୁଣାଯାଏ, ଯେଉଁ ଛାତ୍ରମାନେ ତାଲା ଚୋରିକରିଥିଲେ, ସେମାନେ ଧରାପଡ଼ିଛନ୍ତି । ସେମାନଙ୍କ ଅଗ୍ରଣୀକୁ ସ୍କୁଲରୁ ବହିଷ୍କୃତ କରାଯାଇଛି । ୮-୧୦ଜଣ ଛାତ୍ରଙ୍କୁ ତଳ ଶ୍ରେଣୀକୁ ଖସାଇଦିଆଯାଇଛି । କି ପ୍ରକାର ପ୍ରମାଣ ପାଇ ଏମାନଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇ ଏହିପରି କଠୋର ଦଣ୍ଡ ବିଧାନ କରାଯାଇଅଛି, ତାହା ଆମ୍ଭେମାନେ ଜାଣିନାହୁଁ । ବାଳକମାନେ ସର୍ବତ୍ର ଅଳ୍ପାଧିକ ଚଞ୍ଚଳ ଦୁଷ୍ଟାମିରେ ଅଭ୍ୟସ୍ତ । ପ୍ରିନ୍‌ସପାଲ ସାହେବ ୧୦ଘଣ୍ଟା ୨୫ ମିନିଟ୍ ପୂର୍ବ ପର୍ଯ୍ୟନ୍ତ ଗେଟ୍ ବନ୍ଦରଖାଇବାଦ୍ୱାରା ହତା ବାହାରେ ଠିଆହୋଇ ଖରାରେ କଷ୍ଟ ପାଇ ସେମାନେ ଯଦି ତାଲା ଚୋରିକରିଥା'ନ୍ତି, ତାହା ଏତେବଡ଼ ଗୁରୁତର ଦୋଷ ନୁହେଁ ଯେ ସେଥିପାଇଁ ପେନାଲ କୋଡ଼ର ଫାଶୀଦଣ୍ଡ ସ୍ୱରୂପ ବାଳକମାନଙ୍କର ଇହକାଳର ଗତି ବନ୍ଦ କରାଯାଇପାରେ ।"

ଏହି ଗଣ୍ଡଗୋଳ ନେଇ ମଧୁସୂଦନଙ୍କ ସହିତ ପ୍ରିନ୍‌ସପାଲ ସାହେବଙ୍କର ମନୋମାଳିନ୍ୟ ଘଟିଥିଲା । କୌଣସି କୌଣସି ଛାତ୍ରକୁ ବେତ୍ରଦଣ୍ଡ ଦେବାକୁ ସାହେବ ମଧୁସୂଦନଙ୍କୁ ନିର୍ଦ୍ଦେଶ ଦେବାରୁ ବିଚାରବନ୍ତ ଓ ନିର୍ଭୀକ ମଧୁସୂଦନ ଏହି ଆଦେଶର ଘୋର ପ୍ରତିବାଦ କରି ତାଙ୍କୁ କହିଥିଲେ, "ମୁଁ ଆପଣଙ୍କର ଆଦେଶ ପାଳନ କରିବାକୁ ବାଧ; କିନ୍ତୁ ଏହା କରିବାକୁ ମୋର ବିବେକ ମୋତେ କହୁନାହିଁ ।" ଅଧସ୍ତନ କର୍ମଚାରୀ ମଧୁସୂଦନ ନିଜର ବଳିଷ୍ଠ ନ୍ୟାୟବୋଧରେ ପ୍ରଣୋଦିତ ହୋଇ ଏହି ଅବୈଧ କାର୍ଯ୍ୟ କରିବାକୁ କୁଣ୍ଠିତ ହେବାରୁ ସାହେବ ଅଭିମତ ବ୍ୟକ୍ତ କରିଥିଲେ– He is a very good teacher, but a weak disciplinarian–ସେ ଜଣେ ଉତ୍ତମ ଶିକ୍ଷକ; କିନ୍ତୁ ଶାସନ ଓ ଶୃଙ୍ଖଳା ରକ୍ଷାକରିବା ଦିଗରେ ଅପାରଗ ।

ଦୁଇବର୍ଷ ପ୍ରଧାନ-ଶିକ୍ଷକତା କାର୍ଯ୍ୟ ଦକ୍ଷତାର ସହିତ ସମ୍ପାଦନ କରି ୧୮୯୩ ଅଗଷ୍ଟ ମାସରେ ପ୍ରିନ୍‌ସପାଲଙ୍କ ସହିତ ଏହି ମନାନ୍ତର ଯୋଗୁଁ ତାଙ୍କୁ ବାଲେଶ୍ୱରର ଡେପୁଟି ଇନ୍‌ସପେକ୍ଟର ରୂପେ ସ୍ଥାନାନ୍ତରିତ ହେବାକୁ ପଡ଼ିଲା । କଟକରେ ମଧୁବାବୁ ବଡ଼ ଲୋକପ୍ରିୟ ଥିଲେ । କଟକରୁ ବିଦାୟ ନେଇ ସେ ବାଲେଶ୍ୱର ଯିବା ସମୟରେ 'ଉତ୍କଳ ଦୀପିକା' ଦୁଃଖ ପ୍ରକାଶ କରି ଲେଖିଥିଲେ, "ମଧୁବାବୁ ଛାତ୍ରମାନଙ୍କ ପ୍ରତି ଅନ୍ୟାୟ ଦଣ୍ଡଦାନର ସହାୟତା ନକରି ସୁବିଚାରପୂର୍ବକ ସ୍କୁଲ ଶାସନ କରୁଥିବାରୁ ତାଙ୍କ ଉର୍ଦ୍ଧ୍ୱତନ କର୍ମଚାରୀଙ୍କଦ୍ୱାରା ନିନ୍ଦିତହୋଇ ସ୍ଥାନାନ୍ତର ଯିବାକୁ ବାଧହେଲେ, ଏହା କି କମ୍ ପରିତାପର ବିଷୟ !"

# ଅଷ୍ଟମ ଅଧ୍ୟାୟ

## ଟ୍ରେନିଂ ସ୍କୁଲରେ ମଧୁସୂଦନ ଯୁଗ

'ଉତ୍କଳ-ସାହିତ୍ୟ'ରେ ଧାରାବାହିକ ଭାବରେ ପ୍ରକାଶପାଉଥିବା 'ବ୍ରହ୍ମଜ୍ଞ ମଧୁସୂଦନ'ର ଲେଖକ ୰ବାଣୀଭୂଷଣ ମୃତ୍ୟୁଞ୍ଜୟ ରଥ ଲେଖିଅଛନ୍ତି, ''ଟ୍ରେନିଂ ସ୍କୁଲର ଏହି ଯୁଗଟିକୁ 'ମଧୁସୂଦନ ଯୁଗ' କହିଲେ ଅତ୍ୟୁକ୍ତି ହେବନାହିଁ।''

ବାଣୀଭୂଷଣଙ୍କର ଏହି ଉକ୍ତିଟି ଯଥାର୍ଥରେ ତାତ୍ପର୍ଯ୍ୟପୂର୍ଣ୍ଣ। ମଧୁସୂଦନ ଆମରଣ ଥିଲେ ଜଣେ ନିଷ୍ଠାପର ଶିକ୍ଷାସେବୀ। ପ୍ରଧାନ-ଶିକ୍ଷକ, ପରିଦର୍ଶକ-କର୍ମଚାରୀ, ସାହିତ୍ୟିକ ଓ କବି ରୂପେ ସେ ଦେଶବାସୀଙ୍କୁ ଶିକ୍ଷା ଦେବାରେ ଯତ୍ନଶୀଳ ଥିଲେ। ମଧୁସୂଦନ ଥିଲେ ଜଣେ ଆଦର୍ଶ ଆଚାର୍ଯ୍ୟ। ବିନୋବାଜୀ ଏ ସମ୍ପର୍କରେ କହିଛନ୍ତି, ''ଶିକ୍ଷକମାନଙ୍କୁ ଆଗେ 'ଆଚାର୍ଯ୍ୟ' କୁହାଯାଉଥିଲା। ଆଚାର୍ଯ୍ୟ ଅର୍ଥାତ୍ ଆଚାରବାନ୍। ସ୍ୱୟଂ ଆଦର୍ଶ ଜୀବନ ଆଚରଣ କରି ରାଷ୍ଟ୍ରଦ୍ୱାରା ତହିଁର ଆଚରଣ କରେଇବା ଲୋକ ହେଉଛି ଆଚାର୍ଯ୍ୟ। ଏହିଭଳି ଆଚାର୍ଯ୍ୟମାନଙ୍କ କୃତିରୁହିଁ ରାଷ୍ଟ୍ରମାନ ତିଆରିହେଉଛି।'' ମଧୁସୂଦନ ଶିକ୍ଷା, ସେବା ଓ ସାହିତ୍ୟକ୍ଷେତ୍ରରେ ଏହିପରି ଜଣେ ଆଚାରବାନ୍ ପୁରୁଷ ଥିଲେ। ଗୋଟିଏ ସୁଚିନ୍ତିତ ଆଦର୍ଶରେ ଏ ଦେଶର ଶିକ୍ଷା-ନୀତି ଓ ଶିକ୍ଷକମାନଙ୍କ ଜୀବନକୁ ପରିଚାଳନ କରିବା ତାଙ୍କ ଜୀବନର ଅଭୀପ୍ସା ଥିଲା। ଶିକ୍ଷାକୁ ସେ ଅତି ଗଭୀର ଓ ବ୍ୟାପକ ଦୃଷ୍ଟିକୋଣରୁ ଦେଖୁଥିଲେ। ଟ୍ରେନିଂ ସ୍କୁଲର ଅଧକ୍ଷ ପଦରେ ନିଯୁକ୍ତ ହେବାରୁ ତାଙ୍କର ଶିକ୍ଷାଗତ ନୀତି ଓ ଆଦର୍ଶକୁ ବାସ୍ତବତାରେ ପରିଣତ କରିବାକୁ ତାଙ୍କୁ ସୁଯୋଗ ମିଳିଲା। ଟ୍ରେନିଂ ସ୍କୁଲର ଲକ୍ଷ୍ୟ ଓ ଶିକ୍ଷା-ନୀତି ସାଧାରଣ ହାଇସ୍କୁଲ କିମ୍ବା କଲେଜଠାରୁ ସଂପୂର୍ଣ୍ଣ ସ୍ୱତନ୍ତ୍ର। ଏଥିରେ ଶିକ୍ଷକତା କରିଥିବା କିମ୍ବା ଶିକ୍ଷକ ହେବାକୁ ଯାଉଥିବା ଗୁରୁ-ଛାତ୍ରମାନଙ୍କୁ ବିଭିନ୍ନ ପାଠ୍ୟ ବିଷୟର ଶିକ୍ଷା-ପ୍ରଣାଳୀ ଏବଂ ବିଦ୍ୟାଳୟ-ପରିଚାଳନା ବିଷୟରେ ବ୍ୟାବହାରିକ (Practical) ଶିକ୍ଷା ଦିଆଯାଏ। ସେମାନେ ସେମାନଙ୍କର ଭବିଷ୍ୟତ ଶିକ୍ଷକଜୀବନକୁ କି ଆଦର୍ଶରେ ଅନୁପ୍ରାଣିତ କରିବେ, ସେ ବିଷୟରେ ଆଲୋଚନା ହୁଏ। ସେମାନଙ୍କର ଜ୍ଞାନର ପରିସର ବୃଦ୍ଧି କରିବା ନିମନ୍ତେ ଟ୍ରେନିଂପ୍ରାପ୍ତ ଉପଯୁକ୍ତ ଶିକ୍ଷକମାନେ ସେମାନଙ୍କୁ ମନସ୍ତତ୍ତ୍ୱ, ସ୍ୱାସ୍ଥ୍ୟରକ୍ଷା, ବିଦ୍ୟାଳୟରେ ଶୃଙ୍ଖଳା-ବିଧାନ, ଇତିହାସ, ଭୂଗୋଳ ଓ ବିଜ୍ଞାନ ସମ୍ବନ୍ଧରେ ନାନା ପୁସ୍ତକ ପଢ଼ାନ୍ତି। ସେମାନଙ୍କର ନୈତିକ ଜୀବନର ଉନ୍ନତି ନିମନ୍ତେ ମଧ୍ୟ ଏହି ସ୍କୁଲର ଶିକ୍ଷକମାନେ ଦୃଷ୍ଟି ଦିଅନ୍ତି; କାରଣ ଛାତ୍ରମାନଙ୍କର ଚରିତ୍ରଗଠନର ଗୁରୁଦାୟିତ୍ୱ ଏଇମାନଙ୍କ ଉପରେ।

ବାଲେଶ୍ୱରରେ ଡେପୁଟି ଇନ୍‌ସପେକ୍‌ଟର ରୂପେ ତିନିମାସ କାର୍ଯ୍ୟ କଲା ପରେ, କଟକ ଟ୍ରେନିଂ ସ୍କୁଲର ହେଡ଼ମାଷ୍ଟର ଦ୍ୱାରକାନାଥ ଚକ୍ରବର୍ତ୍ତୀ ଅବସର ଗ୍ରହଣ କରିବାରୁ ମଧୁସୂଦନ ଏହି ପଦରେ ନିଯୁକ୍ତ ହୋଇ ୧୮୯୩ ଖ୍ରୀଷ୍ଟାବ୍ଦ ଅକ୍‌ଟୋବର ୨୬ ତାରିଖରେ କାର୍ଯ୍ୟଭାର ଗ୍ରହଣକଲେ ।

ମଧୁସୂଦନ ଏହି ସ୍କୁଲରେ ଯୋଗଦେବା ପୂର୍ବରୁ ଏହାର ଅବସ୍ଥା ସନ୍ତୋଷଜନକ ନଥିଲା । ଶିକ୍ଷକମାନଙ୍କ ଅଧ୍ୟାପନା-ରୀତି ଓ ସ୍କୁଲର ଶୃଙ୍ଖଳା ଓ ପରିଚାଳନାରେ କଟକର ଶିକ୍ଷାନୁରକ୍ତ ଲୋକେ ଅତ୍ୟନ୍ତ ବିରକ୍ତ ହୋଇ ଏ ବିଷୟରେ ସମ୍ବାଦପତ୍ରମାନଙ୍କରେ ରୀତିମତ ଗୋଟିଏ ଆନ୍ଦୋଳନ ସୃଷ୍ଟି କରିଥିଲେ । ଏହି ଆନ୍ଦୋଳନକାରୀମାନଙ୍କର ନେତୃତ୍ୱ ନେଇଥିଲେ ବିଶ୍ୱନାଥ କର । ସେ 'ସମ୍ବଲପୁର ହିତୈଷିଣୀ' ପତ୍ରିକାରେ ଏହି ସ୍କୁଲ ବିରୋଧରେ ଯେଉଁ ଗୁରୁତର ଅଭିଯୋଗମାନ ଉପସ୍ଥାପନ କରିଥିଲେ, ତାହାର ସାରମର୍ମ ହେଉଛି, 'ସାହିତ୍ୟ, ଗଣିତ, ସଂସ୍କୃତ, ଭୂଗୋଳ, ଇତିହାସ ପ୍ରଭୃତି ସକଳ ବିଷୟରେ ଚର୍ଚ୍ଚା ଅତି ହୀନଭାବରେ ହେଉଛି । ଛାତ୍ରବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ଛାତ୍ରଗଣ ଶିକ୍ଷକତା ଶିକ୍ଷଣ ନିମନ୍ତେ ଏହି ବିଦ୍ୟାଳୟରେ ପଢ଼ିବାକୁ ଆସନ୍ତି; କିନ୍ତୁ ଯେଉଁ ସାହିତ୍ୟ ବହି ସେମାନେ ଆଗରୁ ପଢ଼ି ଆସିଛନ୍ତି ଏଠାରେ ସେହି ବହିକୁ ହିଁ ଚର୍ବିତଚର୍ବଣ କରିବାକୁ ପଡ଼େ । ରଚନାର ଅନୁଶୀଳନ ପ୍ରାୟ ନାହିଁ କହିଲେ ଚଳେ । ଗଣିତ ଶିକ୍ଷା ମଧ୍ୟ ତଦନୁରୂପ । ଭୂଗୋଳ ଶିକ୍ଷା ସମ୍ବନ୍ଧରେ ଏପରି ଶୁଣାଯାଏ ଯେ, ଜଣେ ବୁଦ୍ଧିମାନ୍ ଛାତ୍ର ଶିକ୍ଷକ ମହାଶୟଙ୍କୁ ପଚାରିଲେ, ''ବହିରେ ଲେଖାଅଛି ଯେ, ପୃଥିବୀ ଶୂନ୍ୟରେ ଅଛି ଓ ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ଭ୍ରମଣ କରୁଅଛି; କିନ୍ତୁ ପୁରାଣରେ ଲେଖାଅଛି ଯେ, ପୃଥିବୀ ସ୍ଥିର ଓ ବାସୁକୀ ନାଗ ଏହାକୁ ମସ୍ତକରେ ଧାରଣ କରିଛି । ଏହି ଦୁଇ ତଥ୍ୟ ମଧ୍ୟରୁ କେଉଁଟି ସତ୍ୟ ?'' ପଣ୍ଡିତ ମହାଶୟ ଗମ୍ଭୀର ଭାବରେ ଉତ୍ତର ଦେଲେ, ''ମୂର୍ଖ ପୁରାଣ କ'ଣ ମିଥ୍ୟା କଥା କହେ ? ବହିରେ ଯାହା ଲେଖାଅଛି, ତାହା କେବଳ ପରୀକ୍ଷାରେ ପାସ୍ କରିବାପାଇଁ– ମୁଖସ୍ଥ କରିପକାଅ ।''

ଏହିସବୁ ଅଭିଯୋଗ ଉପସ୍ଥାପନ କରି ଶିକ୍ଷାବିତ୍ ବିଶ୍ୱନାଥ ଦାବି କରିଥିଲେ, ଟ୍ରେନିଂ ସ୍କୁଲ ପ୍ରତି ସରକାର ତୀକ୍ଷ୍ଣ ଦୃଷ୍ଟି ଦିଅନ୍ତୁ । ଏଥିପାଇଁ ଉପଯୁକ୍ତ ଶିକ୍ଷକ ନିଯୁକ୍ତ କରାଯାଉ ଏବଂ ଉପଯୋଗୀ ପାଠ୍ୟପୁସ୍ତକ ନିର୍ବାଚନ କରାଯାଇ ଟ୍ରେନିଂ ସ୍କୁଲର ବାତାବରଣକୁ ସଂପୂର୍ଣ୍ଣରୂପେ ପରିବର୍ତ୍ତିତ କରାଯାଉ ।

ମଧୁସୂଦନ ଟ୍ରେନିଂ ସ୍କୁଲର ପ୍ରଧାନ-ଶିକ୍ଷକ ପଦ ଗ୍ରହଣ କରି ଦେଖିଲେ, ବିଶ୍ୱନାଥ କରଙ୍କର ଅଭିଯୋଗଗୁଡ଼ିକ ଭିତ୍ତିହୀନ ନୁହେଁ । ଯେଉଁ ସ୍କୁଲରୁ ଶିକ୍ଷକମାନେ ଉତ୍ତୁରି ଦେଶର ଶିକ୍ଷା-ପ୍ରସାରର ଦାୟିତ୍ୱ ଗ୍ରହଣ କରିବେ, ତାହାର ଅବସ୍ଥା ନୈରାଶ୍ୟଜନକ, ତେଣୁ ଯଥାଶୀଘ୍ର ଏହାର ପ୍ରତିକାର ବିଧାନ କରିବାକୁ ହେବ । ଡେପୁଟି-

ଇନ୍‌ସପେକ୍ଟର ଥିଲାବେଳେ ସ୍କୁଲ ପରିଦର୍ଶନ କରି ଶିକ୍ଷକମାନଙ୍କର ଅଧ୍ୟାପନାରେ ସେ ଯେଉଁ ଦୋଷ ତ୍ରୁଟି ଲକ୍ଷ୍ୟକରିଥିଲେ, ବର୍ତ୍ତମାନ ସେହି ଦୋଷ ତ୍ରୁଟି ସଂଶୋଧନ କରି ଦେଶପାଇଁ ଉପଯୁକ୍ତ ଶିକ୍ଷକ ଗଢ଼ିବାର ପ୍ରଶସ୍ତ କ୍ଷେତ୍ର ତାଙ୍କୁ ମିଳିଲା । ଏ ସୁବର୍ଣ୍ଣସୁଯୋଗ ହାତରୁ ଛାଡ଼ିବା ଉଚିତ ନୁହେଁ ମନେକରି ସେ ଆଦର୍ଶ ଶିକ୍ଷକ ଗଢ଼ିବା ନିମନ୍ତେ ଏଇ କେତେ ବର୍ଷର ଅଭିଜ୍ଞତା ଓ ଚିନ୍ତାଶୀଳତା ଫଳରେ ତାଙ୍କ ମନରେ ଯେଉଁ କଳ୍ପନା ଓ ଯୋଜନାମାନ ଥିଲା, ତାହା ସୁଦକ୍ଷ ସହକର୍ମୀ ଚନ୍ଦ୍ରମୋହନ ମହାରଣା ଓ ମଧୁସୂଦନ ଦାଶଙ୍କ ସହଯୋଗିତାରେ କାର୍ଯ୍ୟରେ ରୂପାନ୍ତରିତ କରିବାପାଇଁ ବଦ୍ଧପରିକର ହେଲେ । ଟ୍ରେନିଂ ସ୍କୁଲରେ ଏହି ତ୍ରୟୀଙ୍କ ସମ୍ମିଳିତ ଉଦ୍ୟମରେ ନବଯୁଗର ସୃଷ୍ଟି ହେଲା । ବିଶ୍ୱନାଥ କରଙ୍କ ଦ୍ୱାରା ଅଭିଯୁକ୍ତ କଟକ ଟ୍ରେନିଂ ସ୍କୁଲର ବାହ୍ୟ ଓ ଆଭ୍ୟନ୍ତରୀଣ ରୂପ ଅଳ୍ପ ସମୟ ମଧ୍ୟରେ ବଦଳିଗଲା ।

ମଧୁସୂଦନ ଟ୍ରେନିଂ ସ୍କୁଲର ପ୍ରଧାନ-ଶିକ୍ଷକ ଥିଲାବେଳେ କେବଳ ରଙ୍ଗିନ ପରଦାବୃତ ଅଫିସ ଘର ମଧ୍ୟରେ କୁସନ୍ ଚେଆର ଉପରେ ବସି ଫାଇଲ୍-ଚାଷ କରୁନଥିଲେ କି ଶିକ୍ଷକମାନଙ୍କ ଉପରେ କଡ଼ା ହୁକୁମ ଜାରିକରି ହେଡ଼ମାଷ୍ଟ୍ରୀୟ ଗାମ୍ଭୀର୍ଯ୍ୟ ଓ 'ପ୍ରେଷ୍ଟିଜ୍' ଦେଖାଉନଥିଲେ । କଲିଙ୍ଗ୍‌ବେଲ୍‌ର ଘନଘନ ତାନରେ ସ୍କୁଲ ଗୃହ ଅଯଥା ମୁଖରିତ ହେଉନଥିଲା । ସେ ଯୁଗପଦ୍ ପ୍ରଧାନ-ଶିକ୍ଷକ ଓ ସହକାରୀ-ଶିକ୍ଷକ ଉଭୟର କାର୍ଯ୍ୟ କରୁଥିଲେ । ଇତିହାସ ଓ ଭୂଗୋଳ କ୍ଲାସ୍‌ରେ ଛାତ୍ରମାନେ ମନଦେଇ ପାଠ ଶୁଣୁନାହାନ୍ତି ଦେଖିଲେ ସେ କ୍ଲାସ୍‌କୁ ପଶିଯାଇ ଶିକ୍ଷକଙ୍କୁ ବସିବାକୁ କହି ନିଜେ ପଢ଼ାନ୍ତି—ପଢ଼ାଇବାର ବୈଜ୍ଞାନିକ ପ୍ରଣାଳୀ ଏଣେ ପରୋକ୍ଷଭାବରେ ଶିକ୍ଷକଙ୍କୁ ଶିକ୍ଷାଦେଉଥା'ନ୍ତି । ଡ୍ରିଲ୍ ଶିକ୍ଷାପ୍ରତି ଛାତ୍ରମାନଙ୍କୁ ବୀତାନୁରାଗ ଦେଖିଲେ ସେ ଡ୍ରିଲ୍‌ଘଣ୍ଟାରେ ଛାତ୍ରମାନଙ୍କ ସହିତ ଫେରିକଛା ମାରି ଠିଆହୋଇ ଡ୍ରିଲ୍-ଶିକ୍ଷକଙ୍କ ଆଦେଶାନୁଯାୟୀ ଡ୍ରିଲ କରନ୍ତି । ଏହା ଦେଖି କେଉଁ ଅଳସୁଆ ଛାତ୍ର ଆଉ ଡ୍ରିଲ୍ ପ୍ରତି ଉଦାସୀନ ହୋଇ ରହିପାରିବ ?

ସାହିତ୍ୟ ପଢ଼ାଇବା ସମୟରେ ସେ କେବଳମାତ୍ର ପାଠ୍ୟପୁସ୍ତକ ମଧ୍ୟରେ ନିଜକୁ ସୀମାବଦ୍ଧ ରଖୁନଥିଲେ । କବିତାଟିଏ ପଢ଼ାଇଲେ ତାହାର ଅନୁରୂପ କିମ୍ବା ବୈପରୀତ୍ୟବୋଧକ ଭାବ କେଉଁ ଇଂରେଜୀ, ବଙ୍ଗଳା ଅଥବା ସଂସ୍କୃତ କବିତାରେ ଅଛି, ତାହା ପଢ଼ି ଛାତ୍ରଙ୍କୁ ଶୁଣାଇଦେଉଥିଲେ । ଏଥିରେ ଛାତ୍ରମାନଙ୍କର ବିଦ୍ୟାନୁରାଗ ବଢ଼ୁଥିଲା, ଅନୁସନ୍ଧିତ୍ସା ଉଦ୍ଦୀପିତ ହେଉଥିଲା । ମଧୁସୂଦନଙ୍କ ଟେବୁଲ ଉପରେ ସଂସ୍କୃତ, ଇଂରେଜୀ, ଓଡ଼ିଆ ଓ ବଙ୍ଗଳା ବହି ସ୍ତୂପାକାରରେ ଜମାହୋଇଥାଏ । ଜ୍ଞାନଲାଭ କରିବାରେ ସମୟ ବୃଥା ଚାଲିଯାଉଛି ବୋଲି ସେ କେବେ ଅନୁଭବ କରୁନଥିଲେ । ସେଥିରୁ ସେ ପାଉଥିଲେ ଅଲୌକିକ ଆନନ୍ଦ । ଯେ ଥରେ ଅଧ୍ୟୟନର ସ୍ୱାଦ ଚାଖିଛି, ସେ ତାକୁ ଆଉ ଜୀବନରେ କେବେ ଛାଡ଼ିପାରିବ ନାହିଁ । ପ୍ରାଚୀନ ଆର୍ଯ୍ୟ ଋଷି କହିଛନ୍ତି—

ସବୁ କାମ କର, ମାତ୍ର ତାହା ସାଙ୍ଗରେ ସ୍ୱାଧ୍ୟାୟ ଓ ପ୍ରବଚନ ମଧ କରୁଥାଅ । ମଧୁସୂଦନ ଥିଲେ ଆମ ବିଦ୍ୟାପରମ୍ପରାର ବାହକ ଓ ସାଧକ । ଚିନ୍ତାବୀର ବିନୋବାଜୀ ମଧ 'ଆମ ବିଦ୍ୟାର ପରମ୍ପରା' ସମ୍ବନ୍ଧରେ ତାଙ୍କର 'ଶିକ୍ଷା-ତତ୍ତ୍ୱ' ପୁସ୍ତକରେ ଲେଖିଛନ୍ତି– ''ଯେଉଁ ଯୁଗରେ ପୃଥିବୀର ଆଉ ସମସ୍ତେ ଅନ୍ଧକାରରେ ଥିଲେ ଓ ବିଦ୍ୟା ସହିତ କାହାର ପରିଚୟ ହୋଇ ନଥିଲା, ସେ ଯୁଗରେ ଏଠାରେ (ଭାରତରେ) ବିଦ୍ୟା ବିଦ୍ୟମାନ ଥିଲା । ଏ ଦେଶବାସୀ ବ୍ରାହ୍ମମୁହୂର୍ତ୍ତରେହିଁ ନିଦରୁ ଉଠୁଥିଲେ 'ଅନନ୍ବୂବାଣଃ ଅଧେତି ନ ସ୍ୱପ୍ନନ୍'– ସେମାନେ ପ୍ରତ୍ୟୁଷରେ ଶୁଅନ୍ତି ନାହିଁ, ଅଧ୍ୟୟନ କରନ୍ତି ।''

ମହାକବି ମିଲଟନ୍‌ଙ୍କ ପରି ମଧୁସୂଦନଙ୍କର ଦୃଢ଼ ବିଶ୍ୱାସ ଥିଲା– ବହି କେତେଗୁଡ଼ିଏ ଜଡ଼ବସ୍ତୁ ନୁହେଁ । ଯେଉଁସବୁ ଆତ୍ମାରୁ ଏଗୁଡ଼ିକ ପ୍ରସୂତ, ସେମାନଙ୍କ ମଧରେ ଯେପରି ପ୍ରାଣସ୍ପନ୍ଦନ ଅଛି, ଏଗୁଡ଼ିକ ମଧରେ ବି ସେହିପରି ଅଛି । ଗୋଟିଏ ଦିଗରୁ ବିଚାରକଲେ ଖଣ୍ଡିଏ ଭଲ ବହି ହେଉଛି ଗୋଟିଏ ମହତ୍ ଆତ୍ମାର ପ୍ରାଣ-ନିର୍ଯାସ । ତାହା ଇହ-ଜୀବନକୁ ଅତିକ୍ରମ କରି ଜୀବନାନ୍ତରର ଇଙ୍ଗିତ ବହନ କରେ । ଯେ ଖଣ୍ଡିଏ ଭଲ ବହିର ବିନାଶ ସାଧନକରେ, ସେ କେବଳ ଗୋଟିଏ ପଞ୍ଚଭୌତିକ ଦେହକୁ ବିନଷ୍ଟ କରେନାହିଁ, ବିନଷ୍ଟ କରେ ମନୁଷ୍ୟର ମୂଳ ପ୍ରାଣସତ୍ତାକୁ, ଧ୍ୱଂସ କରେ ମନୁଷ୍ୟର ବୁଦ୍ଧିକୁ; ପ୍ରାଣକୁ ହନନ ନ କରି ସେଠାରେ ଅମରତ୍ୱକୁହିଁ ହନନ କରାଯାଏ ।''

ଭବିଷ୍ୟତରେ ଯେଉଁମାନଙ୍କର ଜୀବନ କେବଳ ଶିକ୍ଷକତାରେ ଅତିବାହିତ ହେବ ଏବଂ ଛାତ୍ରମାନଙ୍କଠାରେ ଜ୍ଞାନ-ପିପାସା ଉଦ୍ରେକ କରିବା ଯେଉଁମାନଙ୍କର କେବଳ ବହିରାରୋପିତ କର୍ତ୍ତବ୍ୟ ନୁହେଁ– ଜୀବନର ପରମାନନ୍ଦ, ସେହି ଗୁରୁ-ଛାତ୍ରମାନଙ୍କୁ ଅଳ୍ପ ସମୟ ମଧରେ ବିବିଧ ଭାବରାଶିରେ ବିଭାବନ କରିବା ଉଦ୍ଦେଶ୍ୟରେ ସେ ଅଳଙ୍କାରଶାସ୍ତ୍ର ପଢ଼ାଇଲାବେଳେ ସଂସ୍କୃତ ଅଳଙ୍କାରଶାସ୍ତ୍ରରୁ ତଦନୁରୂପ ବିଷୟ ଛାତ୍ରମାନଙ୍କୁ ପଢ଼ି ବୁଝାଇ ଦିଅନ୍ତି । ତହିଁ ସଙ୍ଗେସଙ୍ଗେ ସେ ଛାତ୍ରମାନେ ଇଂରେଜୀ ଭାଷାରେ ଅନଭିଜ୍ଞ ହେଲେ ମଧ ଇଂରେଜୀ ଭାଷାର ଅଳଙ୍କାର ସୂତ୍ର ସହିତ ସେମାନଙ୍କୁ ପରିଚିତ କରାଇ ଦେବାକୁ ଭୁଲନ୍ତି ନାହିଁ ।

ଗୁରୁ-ଛାତ୍ରମାନଙ୍କର ଶିକ୍ଷା ଓ ଅଧ୍ୟୟନକୁ ସୁସମ୍ପନ୍ନ କରିବା ଉଦ୍ଦେଶ୍ୟରେ ସେ କଟକ ଟ୍ରେନିଂ ସ୍କୁଲରେ ସମଯୋପଯୋଗୀ କେତେକ ନୂତନ ପାଠ୍ୟ-ବିଷୟ ପ୍ରବର୍ତ୍ତନ କରିଥିଲେ; ଯଥା– ଜ୍ୟୋତିର୍ଗଣିତ, ଅର୍ଥନୀତି, ରସାୟନ ଏବଂ ସ୍ଥିତିଗତିଶାସ୍ତ୍ର (Statics and Dynamics), ଇଉକ୍ଲିଡ୍ ଜ୍ୟାମିତି, ଇଂଲଣ୍ଡ, ଗ୍ରୀସ୍ ଓ ରୋମ୍‌ର ଇତିହାସ ପୁସ୍ତକ ସେତେବେଳେ ବଙ୍ଗଳାରେ ପଢ଼ାହେଉଥିଲା । ଓଡ଼ିଆ ବହି ନଥିଲା । ଶିକ୍ଷକମାନେ ଏହିସବୁ ବିଷୟ କ୍ଲାସ୍‌ରେ ପଢ଼ାଇଲାବେଳେ ସେମାନଙ୍କର ଅଧାପନା ପ୍ରଣାଳୀରୁ ଅତି ମନୋଯୋଗ ଓ ସାବଧାନତାର ସହିତ ସେ ଲକ୍ଷ୍ୟ କରୁଥିଲେ ଏବଂ ଶିକ୍ଷକମାନଙ୍କୁ ଜଣ

ଢଣ କରି ନିଜ ପାଖକୁ ଡାକି ସେମାନଙ୍କ ଦୋଷ ଓ ତ୍ରୁଟି ସବୁ ଆଲୋଚନା କରୁଥିଲେ । ଭବିଷ୍ୟତରେ ଯେପରି ଶିକ୍ଷଣରୀତିରେ ସେମାନେ ଯଥେଷ୍ଟ ଉନ୍ନତି କରନ୍ତି, ସେଦିଗରେ ସେ ସେମାନଙ୍କୁ ଗମ୍ଭୀରଭାବରେ ସତର୍କ କରିଦେଉଥିଲେ । ସ୍କୁଲ ବାହାରେ ସେ ଶିକ୍ଷକମାନଙ୍କର ପରମ ବନ୍ଧୁ ଥିଲେ; କିନ୍ତୁ ସ୍କୁଲ ଭିତରେ ସେ ସେମାନଙ୍କର ଦୋଷତ୍ରୁଟି ଦେଖିଲେ ବଜ୍ରଠାରୁ କଠୋର ଓ ଅନମନୀୟ ଥିଲେ ।

ସେତେବେଳେ ଟ୍ରେନିଂ ସ୍କୁଲରେ ପ୍ରାଚୀନ ରୀତିରେ ସଂସ୍କୃତ ଅଧ୍ୟାପନା ହେଉଥିଲା । ସିଦ୍ଧାନ୍ତକୌମୁଦୀର ଜଟିଳ ଓ ଦୁର୍ବୋଧ ବ୍ୟାକରଣସୂତ୍ର ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା । ସୂତ୍ର ଘୋଷିଘୋଷି ଛାତ୍ରମାନେ କଣ୍ଠାଗ୍ରତପ୍ରାଣ ହେଉଥିଲେ । ମଧୁସୂଦନ ଆଜୀବନ ଥିଲେ ପ୍ରଗାଢ଼ ସଂସ୍କୃତ-ପ୍ରେମୀ । ଏହି ଦେବବିଦ୍ୟାରେ ତାଙ୍କର ଥିଲା ପ୍ରଗାଢ଼ ବ୍ୟୁତ୍ପତ୍ତି । ସେ ଟ୍ରେନିଂ ସ୍କୁଲରେ ଏହି ସଂସ୍କୃତ-ଶିକ୍ଷା-ପଦ୍ଧତିରେ ପରିବର୍ତ୍ତନ ଆଣିଥିଲେ; ଛାତ୍ରମାନେ ବ୍ୟାକରଣରେ କେବଳ ନିତାନ୍ତ ଆବଶ୍ୟକୀୟ ଜ୍ଞାନ ଅର୍ଜନ କରି ମାତୃଭାଷାରେ ଯେପରି ସଂସ୍କୃତକୁ ଉତ୍ତମରୂପେ ଅନୁବାଦ କରିପାରିବେ, ସେ ଦିଗରେ ସେ ବିଶେଷ ସଚେଷ୍ଟ ଥିଲେ ଏବଂ ନିଜେ ସରଳ ଓଡ଼ିଆରେ ସଂସ୍କୃତ ଶ୍ଳୋକ ଅନୁବାଦ କରି ଛାତ୍ରମାନଙ୍କ ଆଗେ ତାହା ପାଠକରି ଅନୁବାଦ କିପରି କରିବାକୁ ହୁଏ, ତାହାର ମାର୍ଗ ଦେଖାଇ ଦେଉଥିଲେ । ସମୟେ ସମୟେ ସେ ସଂସ୍କୃତପାଠ୍ୟ ଭବଭୂତିଙ୍କ 'ଉତ୍ତରରାମଚରିତ' ନାଟକର କେତେକ ଅଂଶ ଅନୁବାଦକରି କ୍ଲାସ୍‌ରେ ପଢୁଥିଲେ ।

ଇତିମଧ୍ୟରେ ଟ୍ରେନିଂ ସ୍କୁଲର ଗଣିତ-ଶିକ୍ଷକ ଚନ୍ଦ୍ରମୋହନ ମହାରଣା ପୁରୀକୁ ବଦଳି ହୋଇଯିବାରୁ ହେଡ୍‌ମାଷ୍ଟର ମଧୁସୂଦନ ଅନ୍ୟ ସହକାରୀ ଗଣିତ-ଶିକ୍ଷକ ଥିଲେ ମଧ୍ୟ ନିଜେ ଆଗ୍ରହରେ କ୍ଲାସ୍‌ରେ ଗଣିତ ପଢ଼ାଇବାକୁ ଆରମ୍ଭ କଲେ । ଗଣିତ ପଢ଼ାଇଲାବେଳେ ସେ ଭାବୁଥିଲେ, ତାଙ୍କ ନିଜ ଛାତ୍ରାବସ୍ଥାର ଗୋଟିଏ ପାପର ସେ ବିହିତ ପ୍ରାୟଶ୍ଚିତ୍ତ କରୁଅଛନ୍ତି । ଛାତ୍ରାବସ୍ଥାରେ ସେ ଭଲଭାବରେ ଗଣିତଚର୍ଚ୍ଚା କରିପାରିନଥିବାରୁ ମନରେ ତାଙ୍କର ଯେଉଁ ଅବଶୋଷ ଥିଲା, ବର୍ତ୍ତମାନ ସେ ଅବଶୋଷ ମେଣ୍ଟିଲା । କ୍ଲାସ୍‌ରେ ପିଲାମାନଙ୍କୁ ଅଙ୍କ କଷିବାକୁ ଦେଇ ସେ ନିଜେ କାଗଜ ପେନ୍‌ସିଲ ଧରି ଅଙ୍କ କଷିବାରେ ଲାଗିଯାଉଥିଲେ । ଟ୍ରେନିଂ ସ୍କୁଲର ଛାତ୍ରମାନଙ୍କୁ ସେ ବାରମ୍ବାର କହିଥିଲେ, "ତୁମ୍ଭମାନଙ୍କ ମଧ୍ୟରୁ ଯେଉଁମାନେ ଅଙ୍କରେ ଦୁର୍ବଳ ଅଛ, ଶିକ୍ଷକ ହେବା ପରେ ତୁମ୍ଭେମାନେ ଯଦି ଅଙ୍କ ପଢ଼ାଇବାର ଦାୟିତ୍ୱ ନେଇ ସେଥିପାଇଁ ଟିକିଏ ବିଶେଷ ଯତ୍ନ କରିବ, ଗଣିତ ସୂତ୍ରଗୁଡ଼ିକ ମନଦେଇ ବୁଝିବ, ଟିକିଏ ବୁଦ୍ଧିଖର୍ଚ୍ଚ କରିବ, ତାହାହେଲେ ଦେଖିବ ତୁମ୍ଭମାନଙ୍କର ସେ ତ୍ରୁଟି ଦୁର୍ବଳତା ଦୂରହୋଇଯାଇଛି ।"

ଏ ସମ୍ପର୍କରେ ଅବନ୍ତୀ ଦେବୀ କହନ୍ତି, "ଫଳତଃ ତାଙ୍କର ତତ୍ତ୍ୱାବଧାନ ଓ ଅଧ୍ୟାପନାଯୋଗୁଁ କଟକ ଟ୍ରେନିଂ ସ୍କୁଲରେ ଗଣିତ ଓ ଅନ୍ୟାନ୍ୟ ସମସ୍ତ ବିଷୟରେ

ଛାତ୍ରମାନଙ୍କର ଜ୍ଞାନଦ୍ୱାର ପୂର୍ବାପେକ୍ଷା ପ୍ରଶସ୍ତତର ଓ ଶିକ୍ଷଣ-ପଦ୍ଧତିର ଅଭୂତପୂର୍ବ ଉନ୍ନତି ସଂସାଧିତ ହୋଇଥିଲା ।''

ଆଗରୁ କୁହାଯାଇଛି ଟ୍ରେନିଂ ସ୍କୁଲରେ ସେତେବେଳେ ମଧୁସୂଦନଙ୍କର ଦୁଇଜଣ କୃତୀ ଓ ସୁଦକ୍ଷ ସହକର୍ମୀ ଥିଲେ– ଜଣେ ଚନ୍ଦ୍ରମୋହନ ମହାରଣା, ଅନ୍ୟ ଜଣକ ମଧୁସୂଦନ ଦାଶ । ଚନ୍ଦ୍ରମୋହନ ମହାରଣା ସେ ସମୟର ଜଣେ ସୁପରିଚିତ ସାହିତ୍ୟିକ ଥିଲେ । ବ୍ୟାକରଣରେ ତାଙ୍କର ଅସାମାନ୍ୟ ବ୍ୟୁତ୍ପତ୍ତି ଥିଲା । କଥିତ ଅଛି, ରାଧାନାଥଙ୍କ କାବ୍ୟରୁ ସେ ବ୍ୟାକରଣଗତ ଦୋଷ ଦେଖାଇ କବିବରଙ୍କର ଭ୍ରମ ସଂଶୋଧନ କରୁଥିଲେ । 'ମହାଯାତ୍ରା' ମହାକାବ୍ୟରୁ ସେ କୁଆଡ଼େ ଅସଂଖ୍ୟ ଭ୍ରମ ପ୍ରମାଦ ଆବିଷ୍କାର କରିଥିଲେ । ଆଉ ମଧୁସୂଦନ ଦାଶ ଥିଲେ ମଧୁସୂଦନ ରାଓଙ୍କର ପରମବନ୍ଧୁ । ଦୁହିଁଙ୍କ ମଧ୍ୟରେ ଘନିଷ୍ଠ ସ୍ନେହ-ସମ୍ପର୍କ ଥିଲା । ରୋଗପୀଡ଼ା ସମୟରେ ଦାଶଙ୍କୁ ନିକଟରେ ଦେଖିଲେ ରାଓଙ୍କର ସକଳ ଦୁଃଖଯନ୍ତ୍ରଣା ବିସ୍ମୃତ ହୋଇଯାଉଥିଲା । ଥରେ ମଧୁସୂଦନଙ୍କ କ୍ଲାସ୍‌ରେ ପାଟିତୁଣ୍ଡ ହେଉଥିବାର ଶୁଣି ସେ କ୍ଲାସ୍‌ରେ ତାଙ୍କୁ ଛାତ୍ରମାନଙ୍କ ଆଗରେ ଗାଳିଦେଇ କହିଲେ, "You are very mild" । ମଧୁସୂଦନ ଏଥିରେ କ୍ଷୁଣ୍ଣ ହୋଇଥିଲେ; କିନ୍ତୁ ପରେ ରାଓ ନିଜର ଦୋଷ ସ୍ୱୀକାର କରି ତାଙ୍କୁ କହିଥିଲେ, ''କିଛି ମନରେ ଭାବିବ ନାହିଁ, ମୁଁ ଟିକିଏ କ୍ଷଣକୋପୀ ।'' ଏହି ମଧୁସୂଦନ ପରେ ଓଡ଼ିଶାରେ ଟ୍ରାନ୍‌ସଲେଟର (Translator) ମଧୁବାବୁରୂପେ ପରିଚିତ ହୋଇଥିଲେ । ଚନ୍ଦ୍ରମୋହନଙ୍କର ବ୍ୟାକରଣ ଓ ମଧୁବାବୁଙ୍କର ରଚନା ବହି ସେତେବେଳେ ବହୁବର୍ଷଧରି ଛାତ୍ରସମାଜରେ ବଡ଼ ଆଦରଣୀୟ ଥିଲା । ମଧୁବାବୁ ଜଣେ ଉଚ୍ଚକୋଟୀର ସାହିତ୍ୟ ସମାଲୋଚକ ଥିଲେ । ମଧୁସୂଦନ ଗ୍ରନ୍ଥାବଳୀରେ (ପ୍ରଥମ ସଂସ୍କରଣ) ସେ ମଧୁରାଓଙ୍କ ସାହିତ୍ୟ-ସାଧନା ଓ ଧର୍ମମତ ଉପରେ ଯେଉଁ ଭୂମିକା ଲେଖିଅଛନ୍ତି, ତାହା କ୍ଷୁଦ୍ର ହେଲେହେଁ ଭାବଗର୍ଭକ, ଉପାଦେୟ ଓ ପାଣ୍ଡିତ୍ୟପୂର୍ଣ୍ଣ । ଏହି ଭୂମିକାଠାରୁ ଅଧିକତର ସାହିତ୍ୟିକ ମୂଲ୍ୟ-ସମ୍ପନ୍ନ ହେଉଛି ସତ୍ୟବାଦୀ ବିଦ୍ୟାଳୟର ସ୍ୱର୍ଗତ ଐତିହାସିକ କୃପାସିନ୍ଧୁଙ୍କ ଅମୂଲ୍ୟ ଗ୍ରନ୍ଥ 'କୋଣାର୍କ'ରେ ସଂଯୋଜିତ ତାଙ୍କର ସରସ ସୁନ୍ଦର ସୁଦୀର୍ଘ ଭୂମିକା ।

—

# ନବମ ଅଧ୍ୟାୟ

## 'ଆଲୋଚନା ସଭା'ରୁ 'ଉତ୍କଳ-ସାହିତ୍ୟ-ସମାଜ'

ଏବେ କଟକରେ ଯେଉଁ 'ଉତ୍କଳ-ସାହିତ୍ୟ-ସମାଜ' ଅଛି ଏବଂ ସମଗ୍ର ଉତ୍କଳର ଯାହା ଏକମାତ୍ର ଉଲ୍ଲେଖଯୋଗ୍ୟ ସାହିତ୍ୟ-ଅନୁଷ୍ଠାନ, ତାହାର ପ୍ରାଣପ୍ରତିଷ୍ଠାତା ଭକ୍ତକବି ମଧୁସୂଦନ ଏବଂ ତାହାର କ୍ରମ-ପରିଣତିର ଇତିହାସ ମଧ୍ୟ କୌତୁକାବହ ।

ଟ୍ରେନିଂ ସ୍କୁଲରେ ପ୍ରଧାନଶିକ୍ଷକରୂପେ ଯୋଗଦେବାର ଅଳ୍ପଦିନ ପରେ ଏହି ସ୍କୁଲର ଛାତ୍ରମାନଙ୍କ ମଧ୍ୟରେ ଗୋଟିଏ ସାହିତ୍ୟିକ ବାତାବରଣ ସୃଷ୍ଟିକରି ସେମାନଙ୍କ ମନରେ ସାହିତ୍ୟ-ପ୍ରୀତି ସଞ୍ଚାରକରିବା ଉଦ୍ଦେଶ୍ୟରେ ମଧୁସୂଦନ ଏହି ଅନୁଷ୍ଠାନରେ ଗୋଟିଏ ଆଲୋଚନା ସଭା ସ୍ଥାପନ କରିଥିଲେ । ଏହା ୧୮୯୪ ଖ୍ରୀଷ୍ଟାବ୍ଦର କଥା । ପ୍ରତି ଶନିବାରରେ ଏହାର ଅଧିବେଶନ ହୁଏ । ଏହାର ପ୍ରଥମ ସମ୍ପାଦକ ଥିଲେ ଶିକ୍ଷକ ଚନ୍ଦ୍ରମୋହନ ମହାରଣା । ଏଥିରେ ମଧୁସୂଦନ ଦାଶଙ୍କର ଆନ୍ତରିକ ସହଯୋଗ ଥିଲା । ଟ୍ରେନିଂ ସ୍କୁଲର ସମସ୍ତ ଶିକ୍ଷକ ଓ ଛାତ୍ର ଏହି ସଭାରେ ପୂର୍ଣ୍ଣପ୍ରାଣରେ ଯୋଗ ଦେଉଥିଲେ ଏବଂ ଓଡ଼ିଆ ସାହିତ୍ୟ-ବିଷୟକ ନାନା ତର୍କବିତର୍କ, ଆଲୋଚନା ଓ ଅନୁଶୀଳନରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ଆଲୋଚନା ସଭାର କାର୍ଯ୍ୟକଳାପ ଅତ୍ୟନ୍ତ ପ୍ରାଣବନ୍ତ ଓ ଉତ୍ସାହପ୍ରଦ ହେଉଥିବାରୁ କ୍ରମେ ବାହାରର ସାହିତ୍ୟାମୋଦୀ ବ୍ୟକ୍ତିମାନେ ଏହି ସଭାର ସଭ୍ୟଶ୍ରେଣୀଭୁକ୍ତ ହେଲେ । ଏମାନଙ୍କ ମଧ୍ୟରେ ବିଶ୍ୱନାଥ କର, ରାଜମୋହନ ବସୁ, ନନ୍ଦକିଶୋର ବଳ, ମିଛୁ ନନ୍ଦ ଓ କୃଷ୍ଣପ୍ରସାଦ ଚୌଧୁରୀ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହି ଆଲୋଚନା ସଭା ଟ୍ରେନିଂ ସ୍କୁଲ ଛାତ୍ରମାନଙ୍କ ମଧ୍ୟରେ କେବଳ ସାହିତ୍ୟାନୁରାଗ ଜନ୍ମାଉ ନଥିଲା; ସେମାନଙ୍କ ରଚନାଶକ୍ତିକୁ ଉଦ୍‌ବୁଦ୍ଧ କରି ମନକୁ ଉନ୍ନତ ଚିନ୍ତାରେ ପରିମାର୍ଜିତ ଓ ସୁରୁଚିସମ୍ପନ୍ନ କରୁଥିଲା । ଏଥିରେ ଥିଲା ମଧୁସୂଦନଙ୍କର ପରମ ପରିତୃପ୍ତି ଓ ନିର୍ମଳ ଆନନ୍ଦ । ସେତେବେଳେ ଏହି ଆଲୋଚନା ସଭାଟି ହିଁ କଟକ ସହରର ଏକମାତ୍ର ସାହିତ୍ୟ-ସଭା ଥିଲା କହିଲେ ଚଳେ । ମଧୁସୂଦନ କେବଳ ଏହାର ପ୍ରତିଷ୍ଠାତା ନଥିଲେ; ପ୍ରାୟ ନଅ ବର୍ଷକାଳ ଏହାର ସଭାପତି ଥିଲେ ।

ତା'ପରେ ହୁଏ ଏହି ଆଲୋଚନା ସଭାର ଇତିହାସରେ ନବ ଅଧ୍ୟାୟର ଉଦ୍‌ଘାଟନ । ଗଞ୍ଜାମରେ ହୋଇଥିବା 'ଉତ୍କଳ-ସମ୍ମିଳନୀ'ରୁ ଫେରିଆସି କେତେ ଜଣ ସାହିତ୍ୟପ୍ରେମୀ ବ୍ୟକ୍ତି ଉତ୍କଳରେ ଗୋଟିଏ ସାହିତ୍ୟ-ସଭା ପ୍ରତିଷ୍ଠା କରିବାର

ପ୍ରୟୋଜନୀୟତା ଉପଲବ୍ଧି କଲେ । ସାହିତ୍ୟର ଉନ୍ନତିରେ ଦେଶର ସମୂହ ଉନ୍ନତି ଏବଂ ସାହିତ୍ୟହିଁ ଜାତୀୟ ଜୀବନର ମାନଦଣ୍ଡ— ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ଗୋଟିଏ ବଡ଼ ରକମର ସାହିତ୍ୟ ଅନୁଷ୍ଠାନ ସ୍ଥାପନକରିବା ନିମନ୍ତେ କେତେ ଜଣ ସାହିତ୍ୟ-ପ୍ରେମୀ ଯଚେଷ୍ଟ ହେଲେ । ଏହି ସମବେତ ଚେଷ୍ଟା ଫଳରେ ୧୯୦୩ ମେ ମାସ ୭ ତାରିଖରେ କଟକ ଟ୍ରେନିଂ ସ୍କୁଲର ଆଲୋଚନା ସଭା 'ଉତ୍କଳ-ସାହିତ୍ୟ-ସମାଜ'ରେ ପରିଣତ ହେଲା ।

'ରାଧାନାଥ ଜୀବନୀ'ରେ ଏହି ଉତ୍କଳ-ସାହିତ୍ୟ-ସମାଜ-ଗଠନର ଇତିହାସ ଅତି ପ୍ରାଞ୍ଜଳଭାବରେ ଲିପିବଦ୍ଧ ହୋଇଅଛି । ସେଥିରେ ଅନ୍ୟାନ୍ୟ ପ୍ରସଙ୍ଗ ମଧ୍ୟରେ ଉଲ୍ଲେଖ ଅଛି, ୧୯୦୩ ସାଲ ଡିସେମ୍ବର ୩୦ ତାରିଖରେ କଟକରେ ପ୍ରଥମ ଉତ୍କଳ-ସମ୍ମିଳନୀର ଅଧିବେଶନ ହେଲା । ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଏଥିରେ ସଭାପତିତ୍ୱ କରିଥିଲେ । ସମ୍ମିଳନୀର ପୂର୍ବଦିନ ଅର୍ଥାତ୍ ଡିସେମ୍ବର ୨୯ ତାରିଖ ସନ୍ଧ୍ୟାରେ କଟକ ବିନୋଦବିହାରୀ ନିକଟସ୍ଥ ଟାଉନ୍ ଭିକ୍ଟୋରିଆ ସ୍କୁଲ (ବର୍ତ୍ତମାନର ଭକ୍ତମଧୁ ବିଦ୍ୟାପୀଠ) ଗୃହରେ 'ଉତ୍କଳ-ସାହିତ୍ୟ-ସମାଜ'ର ପ୍ରଥମ ବାର୍ଷିକ ଅଧିବେଶନ ହୋଇଥିଲା । କଟକ ଟ୍ରେନିଂ ସ୍କୁଲରେ ଭକ୍ତକବି ମଧୁସୂଦନଙ୍କ ପ୍ରତିଷ୍ଠିତ 'ଆଲୋଚନା-ସଭା'ରୁ ଏହି ସମାଜର ଜନ୍ମ ୧୯୦୩ରେ ହୋଇଥିଲା । ଏହାର ପ୍ରଥମ ବାର୍ଷିକ ଅଧିବେଶନର ସମୟ ହୋଇନଥିଲା; କିନ୍ତୁ 'ଉତ୍କଳ-ସମ୍ମିଳନୀ' ସମୟରେ କଟକରେ ସୁଧିବୃନ୍ଦଙ୍କର ସମାବେଶର ସମ୍ଭାବନା ଦେଖି ଏହି ସମାଜର ପ୍ରଥମ ବାର୍ଷିକ ଅଧିବେଶନ ଡିସେମ୍ବର ୨୯ ତାରିଖରେ ଅନୁଷ୍ଠିତ ହୋଇଥିଲା । ବହୁ ଗଡ଼ଜାତ ରାଜା ଏଥିରେ ଯୋଗ ଦେଇଥିଲେ । ରାଧାନାଥ ରାୟ ଏହି ସଭାରେ ପୌରୋହିତ୍ୟ କରିଥିଲେ; କିନ୍ତୁ ସେ ତାଙ୍କ ଅଭିଭାଷଣ ପଢ଼ି ନପାରିବାରୁ ମୃତ୍ୟୁଞ୍ଜୟ ରଥ ତାହା ଅଧିବେଶନରେ ପାଠ କରିଥିଲେ । ଏଠାରେ କମଳାଙ୍କ ସହିତ ବରଦାଙ୍କ ସମ୍ମିଳନୀ ଦୃଶ୍ୟ ପରିପୂର୍ଣ୍ଣ ଭାବରେ ଅନୁଭୂତ ହେଉଥିଲା ।

ଏହାର ପରଦିନ, ଅର୍ଥାତ୍ ୩୦ ତାରିଖ ଦିନ ଉତ୍କଳ-ସମ୍ମିଳନୀରେ ଅନେକ ପ୍ରସ୍ତାବର ଅନୁମୋଦନ, ସମର୍ଥନ ଏବଂ ଗ୍ରହଣ ଉତ୍ତାରୁ ଦ୍ୱାଦଶ ନିର୍ଦ୍ଧାରଣରେ ରାଧାନାଥ ପ୍ରସ୍ତାବକ ହୋଇ ଦଣ୍ଡାୟମାନ ହେଲେ । ପ୍ରସ୍ତାବଟି ଏହିପରି—

''ଓଡ଼ିଆ ଭାଷାର ଏବଂ ସାହିତ୍ୟର ଉନ୍ନତି ସାଧନାର୍ଥ ସମ୍ମିଳିତ ଓ ସୁଚାଳିତ ଚେଷ୍ଟାର ଆବଶ୍ୟକତା ଏ ସମ୍ମିଳନୀ ଉପଲବ୍ଧି କରୁଅଛନ୍ତି । ସେହି ଉଦ୍ଦେଶ୍ୟ ସାଧନାର୍ଥ ନିମ୍ନଲିଖିତ ବ୍ୟକ୍ତିମାନଙ୍କଦ୍ୱାରା ଗୋଟିଏ ସ୍ଥାୟୀ କମିଟି ଗଠିତ ହେଲା । ଉକ୍ତ ସ୍ଥାୟୀ ସମିତି 'ଉତ୍କଳ-ସାହିତ୍ୟ-ସମାଜ' ସଙ୍ଗେ ଯୁକ୍ତହୋଇ ଉଦ୍ଦେଶ୍ୟ ସାଧନ ନିମନ୍ତେ ବିହିତ ଉପାୟ ବିଧାନ କରନ୍ତୁ । ଉତ୍କଳ ଭାଷାର ଇତିହାସ-ସଙ୍କଳନ ଓ ପ୍ରାଚୀନ ଉତ୍କଳୀୟ ଗ୍ରନ୍ଥ ସଂଗ୍ରହ

ଏବଂ ପ୍ରକାଶ କରିବା ନିମନ୍ତେ ସମ୍ମିଳନୀ ପକ୍ଷରୁ ଉତ୍କଳ-ସାହିତ୍ୟ-ସମାଜକୁ ସାହାଯ୍ୟ ଦିଆଯିବା ନିର୍ଦ୍ଧାରିତ ହେଉ।''

ପ୍ରସ୍ତାବିତ ସ୍ଥାୟୀ କମିଟିର ସଭ୍ୟମାନଙ୍କ ମଧରେ ଥିଲେ—

୧ । ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ

୨ । ରାଜା ବୈକୁଣ୍ଠନାଥ ଦେ

୩ । ବାବୁ ମଧୁସୂଦନ ରାଓ

୪ । ବାବୁ ଫକୀରମୋହନ ସେନାପତି

୫ । ବାବୁ ରାମଚନ୍ଦ୍ର ରାୟ

୬ । ବାବୁ ବିଶ୍ୱନାଥ କର ।

—

# ଦଶମ ଅଧ୍ୟାୟ

## ରାଧାନାଥଙ୍କ 'ମହାଯାତ୍ରା' ଓ ମଧୁସୂଦନ

ରାଧାନାଥଙ୍କ ଅମିତ୍ରାକ୍ଷର ଛନ୍ଦନିବଦ୍ଧ ଅସମ୍ପୂର୍ଣ୍ଣ 'ମହାଯାତ୍ରା' ମହାକାବ୍ୟ ପ୍ରଥମେ ପ୍ରକାଶ ପାଏ ୧୮୯୬ ମସିହାରେ । ମୁଖବନ୍ଧ ଲେଖିଥିଲେ ମଧୁସୂଦନ । ଏହି ମହାକାବ୍ୟ ଉପରେ ନିଜର ମତ ବ୍ୟକ୍ତକରି ତିନିପୃଷ୍ଠାବ୍ୟାପୀ ସୁଚିନ୍ତିତ ମୁଖବନ୍ଧର ଉପସଂହାରରେ ମଧୁସୂଦନ ଲେଖିଥିଲେ, ''ଭାବ ଓ ଭାଷା ଉଭୟ ବିଷୟରେ 'ମହାଯାତ୍ରା' ଯେ ଉତ୍କୃଷ୍ଟ ହୋଇଅଛି, ତାହା ଯେଉଁମାନେ ଥରେ ଅବଧାନପୂର୍ବକ ଅବିକୃତ ଚିତ୍ତରେ ପଢ଼ିବେ, ସେମାନେ ଅବଶ୍ୟ ମୁକ୍ତକଣ୍ଠରେ ସ୍ୱୀକାର କରିବେ । ପରିଶେଷରେ ମୋର ଏହି ଆଶା ଏବଂ ପ୍ରାର୍ଥନା ଯେ, କବି ଶ୍ରୀ ରାଧାନାଥ ମହାଯାତ୍ରାରୂପ ଯେଉଁ ସୁଧାମୟ ମନୋହର ଗୀତ ଆରମ୍ଭ କରିଛନ୍ତି, ତାହା ଆଦିକବି ବିଧାତାଙ୍କ କୃପାରେ ସମାପ୍ତ କରି ଉତ୍କଳ ସାହିତ୍ୟ ମନ୍ଦିରକୁ ଜ୍ୟୋତିର୍ମୟ କରନ୍ତୁ ।'' ୧୯୦୧ ରେ ପ୍ରକାଶିତ 'ବସନ୍ତଗାଥା'ର 'କବି ଶ୍ରୀ ରାଧାନାଥ ରାୟ ବାହାଦୁର' କବିତାରେ ନବଯୁଗର ବରପୁତ୍ର ରାଧାନାଥଙ୍କ ପ୍ରତି ପ୍ରାଣର ଆବେଗମୟ ଶ୍ରଦ୍ଧା, ସମ୍ମାନ ଓ କୃତଜ୍ଞତା ଅର୍ପଣ କରି ସେ ଲେଖିଥିଲେ—

''ଉତ୍କଳର ଅଭିନବ ସାହିତ୍ୟ-ସଂସାରେ,  
ପୂର୍ଣ୍ଣ କରିଅଛ କେତେ ରତ୍ନ ଅଳଙ୍କାରେ ।  
କାହିଁକି ବିଳମ୍ବ ଆଉ, ସମାପ ସତ୍ୱର,  
ମହାଯାତ୍ରା-ମହାଗୀତ, ଆହେ କବିବର !''

ଅସମ୍ପୂର୍ଣ୍ଣ 'ମହାଯାତ୍ରା'ର ପୂର୍ଣ୍ଣାଙ୍ଗ କଳେବର ଦେଖିବାର ସୌଭାଗ୍ୟ ମଧୁବାବୁଙ୍କର ହୋଇନଥିଲା, କି ରାଧାନାଥ କାବ୍ୟ-ଚନ୍ଦ୍ରିକା-ପିପାସୁ ଉତ୍କଳୀୟ ପାଠକ-ଚକୋରମାନଙ୍କର ହେଲାନାହିଁ । ରାଧାନାଥଙ୍କ ପରିକଳ୍ପନା ଥିଲା, ଏହି ମହାକାବ୍ୟକୁ ସେ ଅଠର ସର୍ଗରେ ପ୍ରକାଶ କରିବେ । ସାତ ସର୍ଗ ପ୍ରକାଶିତ ହେଲା । ପାଞ୍ଚ ସର୍ଗର ପାଣ୍ଡୁଲିପି ପ୍ରସ୍ତୁତ ହୋଇଥିଲା । ମୁଦ୍ରାଯନ୍ତ୍ର ନିମନ୍ତେ ବାକି ଛଅ ସର୍ଗର ଖସଡ଼ା ପ୍ରସ୍ତୁତ ହୋଇଥିଲା । କିନ୍ତୁ ଇତିମଧ୍ୟରେ ରାଧାନାଥଙ୍କୁ ରାଜଦ୍ରୋହୀରୂପେ ସନ୍ଦେହ କରାଗଲା; ସେ ଏହି ମହାକାବ୍ୟରେ କଳିଯୁଗର ଆବିର୍ଭାବର ଦୀର୍ଘ ବର୍ଣ୍ଣନା ଛଳରେ ଇଂରେଜ ସରକାରଙ୍କର ନିନ୍ଦାଗାନ କରିଅଛନ୍ତି ଏବଂ ପରାଧୀନ ଭାରତ-ଜାତିକୁ ବୈଦେଶିକ ଇଂରେଜ ଶାସକମାନଙ୍କ ବିରୁଦ୍ଧରେ ବିପ୍ଳବ ସୃଷ୍ଟିକରିବାକୁ ଉତ୍ତେଜିତ କରିଅଛନ୍ତି, ଏହି ସନ୍ଦେହ ଓ

ଅଭିଯୋଗରେ ଶିକ୍ଷା-ବିଭାଗର ଉଚ୍ଚପଦସ୍ଥ କର୍ମଚାରୀମାନେ ତାଙ୍କୁ ଦୋଷୀ ସାବ୍ୟସ୍ତ କରିବାରେ ସଚେଷ୍ଟ ହେଲେ । ଏଥିରେ ସେମାନଙ୍କର ବିଶେଷ କିଛି ଦୋଷ ନଥିଲା । ଆମରି ଦେଶର କେତେ ଜଣ ରାଧାନାଥଙ୍କ କବି-ସୁଖ୍ୟାତିରେ ନିତାନ୍ତ ଅସହିଷ୍ଣୁ ଓ ଈର୍ଷାକାତର ହୋଇ ୧୮୯୮ରେ 'ମହାଯାତ୍ରା' ମହାକାବ୍ୟର କୌଣସି କୌଣସି ଅଂଶ ନିତାନ୍ତ ପ୍ରତିକ୍ରିୟାଶୀଳ, ରାଜଦ୍ରୋହମୂଳକ ଓ ବୈପ୍ଳବିକ ଭାବୋଦ୍ଦୀପକ ବୋଲି ଉଚ୍ଚପଦସ୍ଥ କର୍ମଚାରୀମାନଙ୍କ ଦୃଷ୍ଟିକୁ ଆଣିଥିଲେ ।

ଜାତୀୟ ସାହିତ୍ୟର ଏହି ଅକ୍ଷମଣୀୟ ପରିପନ୍ଥୀମାନେ ହୁଏତ ସେଦିନ କେବଳ ନିଜର ନୀଚ ସ୍ୱାର୍ଥ ଉପରେ ଦୃଷ୍ଟି ନିବଦ୍ଧକରି ଏବଂ ଇଂରେଜ ସରକାର କୃପାବାରିକୁ ଚାତକରୂପେ ପାନକରିବାକୁ ଉତ୍କଣ୍ଠିତ ହୋଇ 'ମହାଯାତ୍ରା'ର ଚତୁର୍ଥ ସର୍ଗରୁ 'କଳିର ଆଗମନରେ ଭାରତବର୍ଷର ଅବସ୍ଥା ସକଳ ଦିଗରୁ କି ମର୍ମନ୍ତୁଦ ଓ ଲଜ୍ଜାଜନକ ହେବ' ସେହି ସମ୍ପର୍କୀୟ ବର୍ଣ୍ଣନାରୁ ଏହି ଅଂଶ ଉଦ୍ଧାର କରି ରାଜଦ୍ରୋହର ଅଭିଯୋଗ ଆଣିଥିବେ—

''ସେହି ଦେଶ, ସେହି ଗିରି, ସେହି ନଦନଦୀ
ନଗରନଗରୀ, ତୀର୍ଥ ଆଶ୍ରମାଦି କରି
ସର୍ବେ ଥିବେ ପୂର୍ବପରି, ମାନବେ କେବଳ
ନାମକୁ ମାନବ ରହି, ପଶୁଠାରୁ ହୀନ
ହୋଇଯିବେ ଯୁଗଧର୍ମେ ଭାରତମଣ୍ଡଳେ ।''

ମତ୍ସରୀ ବ୍ୟକ୍ତିମାନଙ୍କ ପକ୍ଷରେ ଅଥରୁ ଅନର୍ଥ ବାହାରକରି ବିଭ୍ରାଟ ସୃଷ୍ଟି କରିବା କିଛି ଅସମ୍ଭବ ନୁହେଁ । ପୁଣି ଯୁଧିଷ୍ଠିର ଭାରତର ଭବିଷ୍ୟତ ଚିନ୍ତାରେ କାତର ହୋଇ ଅଗ୍ନିଦେବଙ୍କୁ ଯେଉଁ କରୁଣ ପ୍ରଶ୍ନ ପଚାରିଅଛନ୍ତି—

''ପ୍ରଭୁ ତ୍ରିକାଳଦରଶୀ ତୁମ୍ଭେ ଯେଣୁ,
କହ ମୋତେ କିରୂପେ ଭାରତେ,
ଘଟିବ ଏ ମହାନର୍ଥ ସୁଜଳା ସୁଫଳା,
ଏ ଶସ୍ୟଶ୍ୟାମଳା ଧରା ପରହାତେ ଦେଇ
ପରପଦାନତ କି ହେ ହେବେ ଆର୍ଯ୍ୟସୁତେ ?''

ତାହା ସବୁ ସରକାରଙ୍କ ଗୋଚରକୁ ଆଣି, ଅଥବା ସପ୍ତମ ସର୍ଗରେ ଅମର୍ଷିଙ୍କ ଅଗ୍ନିମୟୀ ବାଣୀରୁ ନିମ୍ନଲିଖିତ ପଙ୍‌କ୍ତିମାନ ଉଦ୍ଧାର କରି ଓ ତା'ର ଇଂରେଜୀ ତର୍ଜମା କରି ସରକାରଙ୍କୁ ରାଧାନାଥଙ୍କର ଦେଶଦ୍ରୋହତାର ପ୍ରମାଣ ଦେବାକୁ ସଚେଷ୍ଟ ହୋଇଥିବେ ।

''ହା ଧିକ୍ ! ଏ ରଙ୍କପ୍ରାଣ ଆତଙ୍କେ ବଞ୍ଚାଇ
ଆଶୁ ମୃତ୍ୟୁ ପଦରେଣୁ ଅରପି ଯବନେ

ନିଜର ଏ ସ୍ୱର୍ଣ୍ଣପ୍ରସୂ ଭୂମି ସନାତନୀ,
ଯାପିବ କି ଦିନ ଚିର-ଅନଶନ-ବ୍ରତେ ?
କଳ୍ପଲତାମୂଳେ ବସି ଚିର ଉପବାସୀ !
ତୃଷାର୍ତ୍ତ ନିରତେ ରହି ସୁରଧୁନୀ ତୀରେ !''

ନିନ୍ଦୁକମାନେ 'ମହାଯାତ୍ରା'ରୁ ଯେ ଅଂଶ ଉଦ୍ଧାର କରନ୍ତୁ ନା କାହିଁକି, ଯେଉଁ ଅସଦଭିପ୍ରାୟରେ ଏହା କରାଯାଉଥିଲା, ଯଥା ସମୟରେ ତାହା ଫଳପ୍ରସୂ ହେଲା । ଏଥିରେ ନିଜେ ରାଧାନାଥ ବି ବିଚଳିତ ହୋଇପଡ଼ିଥିଲେ । ରାଜଦ୍ରୋହ ନିନ୍ଦାରୁ ମୁକ୍ତିଲାଭ କରି ଚାକିରି ଖଣ୍ଡକ ବଜାୟ ରଖିବା ନିମନ୍ତେ ପ୍ରଥମ ସଂସ୍କରଣର ସାତସର୍ଗ ପ୍ରକାଶିତ ହେବା ପରେ ସେ ସ୍ଥାନେ ସ୍ଥାନେ ଏହାର ପରିବର୍ତ୍ତନ କରି ଏବଂ ଭାଷାକୁ ଟିକିଏ ସଂଯତ ଓ କୋମଳ କରି 'ମହାଯାତ୍ରା' ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିବାକୁ ବାଧହୋଇଥିଲେ । ସେତେବେଳେ ନାଲିଫିତାର କରାମତି ଥିଲା ପ୍ରବଳ । ତଥାପି ରାଧାନାଥଙ୍କ ପରି ଜଣେ ସୁଖ୍ୟାତିସମ୍ପନ୍ନ ଉଚ୍ଚପଦସ୍ଥ ଶିକ୍ଷାବିଭାଗୀୟ କର୍ମଚାରୀ ଏପରି ବିଦ୍ରୋହସୂଚକ ଓ ଉତ୍ତେଜନାମୂଳକ କଥା ଲେଖି ପ୍ରକାଶ କରିବ, ଏଥିରେ ଇଂରେଜ ସରକାରଙ୍କ ବରପୁତ୍ରମାନେ କ୍ରୋଧରେ କମ୍ପମାନ ହେଲେ । ପ୍ରକାଶ୍ୟରେ ମଧ ତାଙ୍କ ଉପରେ ଉପରସ୍ଥ ହାକିମଙ୍କଠାରୁ ଗାଳିବର୍ଷଣ ହେଲା ।

ମଧୁସୂଦନଙ୍କ ସତ୍ୟନିଷ୍ଠ ଓ ନ୍ୟାୟପରାୟଣ ମନ ଏଥିରେ ବିଚଳିତ ହୋଇଉଠିଲା । ରାଧାନାଥଙ୍କ ପ୍ରତି ଏ ଅପମାନ ତାଙ୍କ ପ୍ରତି ଦୁର୍ବିସହ ହୋଇଉଠିଲା । ସେ କୈଶୋରର ଗୁରୁ ଓ ଆଜୀବନ ଅନ୍ତରଙ୍ଗ ସଖା ରାଧାନାଥଙ୍କୁ ଏହି ଭିତ୍ତିହୀନ ସନ୍ଦେହ, ନିନ୍ଦା ଓ ଭର୍ତ୍ସନାରୁ ମୁକ୍ତ କରିବା ନିମନ୍ତେ 'ମହାଯାତ୍ରା'ର ନୂତନ ବ୍ୟାଖ୍ୟା ଦେଲେ । ଅନର୍ଥରୁ ପ୍ରକୃତ ଅର୍ଥ ବାହାରକଲେ । ପ୍ରାମଣକଲେ, ଏଥିରେ ରାଧାନାଥଙ୍କର ରାଜଦ୍ରୋହତାର ଅଣୁମାତ୍ର ଚିହ୍ନ ନାହିଁ; ବରଂ ଅଛି ତାଙ୍କର ସଦିଚ୍ଛାପ୍ରଣୋଦିତ ଜନହିତୈଷଣା– ମହାଭାରତୀୟ ଭାବର ଗମ୍ଭୀର, ସୁମହାନ୍ ଓ ଅପରୂପ ଅଭିବ୍ୟକ୍ତି, ଯାହା ଯେକୌଣସି ଦେଶର ମହାକାବ୍ୟର ଗର୍ବର ସମ୍ପଦ ଓ ଗୌରବର ସାମଗ୍ରୀ । ଏହା ଫଳରେ ଶିକ୍ଷାବିଭାଗୀୟ ଉଚ୍ଚ କର୍ମଚାରୀମାନଙ୍କର କ୍ରୋଧ କବିବର ରାଧାନାଥଙ୍କଠାରୁ ଅନ୍ତରିତ ହୋଇ ତାଙ୍କର ପୃଷ୍ଠପୋଷକ ଓ ସମର୍ଥକ ମଧୁସୂଦନଙ୍କ ଉପରେ ପଡ଼ିଲା । ୧୮୯୯ ଖ୍ରୀଷ୍ଟାବ୍ଦରେ ଶିକ୍ଷାବିଭାଗର ଡିରେକ୍ଟର ପେଡଲାର ସାହେବ (Sir Alexander Pedlar) ସ୍କୁଲ କଲେଜ ଦେଖିବାକୁ କଟକ ଆସିଥିଲେ । ଆଗରୁ ତ ମଧୁସୂଦନଙ୍କ ପ୍ରତି ତାଙ୍କ ମନରେ ସନ୍ଦେହ ଓ ବିରକ୍ତି ଥିଲା, ଟ୍ରେନିଂ ସ୍କୁଲ ପରିଦର୍ଶନ କରି ସେ ମଧୁସୂଦନଙ୍କ ଉପରେ କେତେକ ଦୋଷ ଆରୋପ କଲେ । ସେ ଦୋଷ ମଧ୍ୟରୁ ଗୋଟିଏ ହେଉଛି– ତାଙ୍କର ଅନଧିକାରଚର୍ଚ୍ଚା; ଡିରେକ୍ଟରଙ୍କଠାରୁ ଅନୁମତି ନ ଆଣି ସେ ନିଜ

ସ୍କୁଲରେ କେତେକ ନୂଆ କଥା ସୃଷ୍ଟି କରିଛନ୍ତି; କିନ୍ତୁ ମଧୁସୂଦନ ଏଥିରେ ଭୟଭୀତ ହୋଇନଯାଇ, ସାହେବଙ୍କୁ ଦୃଢ଼ଭାବରେ ଜଣାଇଲେ, ସେ ସ୍କୁଲପାଇଁ ଯାହା କରିଛନ୍ତି ସେଥିରେ ତାଙ୍କର ଅନଧିକାରଚର୍ଚ୍ଚାର ଦୋଷ ନାହିଁ; ବରଂ ସେ ଯାହା କରିଛନ୍ତି, ସ୍କୁଲର ମଙ୍ଗଳ ନିମନ୍ତେ ଏବଂ ଏଥିପାଇଁ ଶିକ୍ଷାବିଭାଗକୁ କୌଣସି ଆର୍ଥିକ କିମ୍ବା ଅତିରିକ୍ତ ଖର୍ଚ୍ଚ ବହନକରିବାକୁ ପଡ଼ିନାହିଁ । ମଧୁସୂଦନଙ୍କର ତେଜସ୍ୱିତା, ସତ୍ୟନିଷ୍ଠା ଏବଂ ସ୍କୁଲର ମଙ୍ଗଳ ନିମନ୍ତେ ତାଙ୍କ ପ୍ରାଣର ବ୍ୟାକୁଳତା ଉପଲବ୍ଧି କରି ସାହେବ ସ୍କୁଲ ପରିଦର୍ଶନ କରି ଫେରିଗଲେ । କିନ୍ତୁ ମଧୁସୂଦନଙ୍କ ଯୁକ୍ତିରେ ପେଡଲର ସେଥର ଏପରି ସନ୍ତୁଷ୍ଟ ହୋଇଥିଲେ ଯେ ଦ୍ୱିତୀୟ ଥର ଟ୍ରେନିଂ ସ୍କୁଲ ପରିଦର୍ଶନକରି ଆସିଲାବେଳେ ସନ୍ଦେହଯୁକ୍ତ ସାହେବ ମଧୁସୂଦନଙ୍କର ବହୁମୁଖୀ କାର୍ଯ୍ୟକଳାପର ଭୂରିଭୂରି ପ୍ରଶଂସା କରିଥିଲେ । ଏହାପରେ ଅବାଞ୍ଛନୀୟ ସେହି 'ମହାଯାତ୍ରା ଆନ୍ଦୋଳନ'ର ଅବସାନ ଘଟିଥିଲା ।

୧୯୦୦ ଖ୍ରୀଷ୍ଟାବ୍ଦରେ ରାଧାନାଥ ବର୍ଦ୍ଧମାନ ବିଭାଗର ଇନ୍‌ସପେକ୍‌ଟର ପଦରେ ନିଯୁକ୍ତ ହୋଇ କଟକରୁ ବିଦାୟନେଲେ । ତାଙ୍କ ପରେ ତାଙ୍କ ସ୍ଥାନରେ ଆସିଲେ ଜଗବନ୍ଧୁ ଲାହା ଏବଂ ସେ ଚାଲିଯିବାରୁ ତାଙ୍କ ସ୍ଥାନରେ ରୁଥର୍ ସାହେବ ଓଡ଼ିଶା ସ୍କୁଲ ସମୂହର ଇନ୍‌ସପେକ୍‌ଟର ହୋଇ ଆସିଲେ । ସେ କଟକରେ ଅଳ୍ପଦିନ ଥିଲେ; କିନ୍ତୁ ମଧୁସୂଦନଙ୍କ ପ୍ରତି ତାଙ୍କର ବ୍ୟବହାର ଭଦ୍ରଜନୋଚିତ ନଥିଲା— ଥିଲା ଅତ୍ୟନ୍ତ ରୁକ୍ଷ ଓ ନିର୍ମମ । ସାହେବଙ୍କର ଏତାଦୃଶ ବ୍ୟବହାର ଓ ଅଦ୍ଭୁତ କାର୍ଯ୍ୟକଳାପରେ ମଧୁସୂଦନ ଅତ୍ୟନ୍ତ ମର୍ମାହତ ହୋଇପଡ଼ିଥିଲେ । ତାଙ୍କ ମନ ଅଶାନ୍ତି ଓ ଦୁଶ୍ଚିନ୍ତାରେ ଅସ୍ଥିର ହୋଇଥିଲା । ଏହି ସମୟରେ ସେ ତାଙ୍କର ଜ୍ୟେଷ୍ଠ ଜାମାତା ବିଜୟଚନ୍ଦ୍ର ମଜୁମଦାରଙ୍କ ନିକଟକୁ ସମ୍ବଲପୁରକୁ ଯେଉଁ ପତ୍ର ଲେଖିଥିଲେ, ତାହାର କେତେକାଂଶ ଏଠାରେ ଦିଆଗଲା ।

କଟକ

୧୪ । ୧୧ । ୧୯୦୦

ପ୍ରାଣାଧିକେଷୁ,

ବାବୁ, ପତ୍ର ପାଇଛି । ଏକେ ତ ଶରୀର ଶୂଳାଦିରୋଗରେ କାତର, ତା'ଉପରେ ସଂସାରର ଜଞ୍ଜାଳ ଦିନକୁ ଦିନ ଅଭିଭୂତ କରିପକାଉଛି । ବର୍ତ୍ତମାନ ଯେ ଇନ୍‌ସପେକ୍ଟର ହୋଇଛନ୍ତି (Mr. Ruther) ସେ ଏକ ଅଦ୍ଭୁତ ଜୀବ । ସେ ପ୍ରଥମେ ପ୍ରଥମେ ଆନୁଆଲ ରିପୋର୍ଟ ପ୍ରଭୃତି କଠିନ କାର୍ଯ୍ୟ କରାଇନେଇ, ମୋ ଉପରେ ଖୁବ୍ ପ୍ରସନ୍ନତା ପ୍ରକାଶ କରୁଥିଲେ । ବର୍ତ୍ତମାନ ତାଙ୍କ ସ୍ୱାର୍ଥ ସହିତ ମୋ କର୍ତ୍ତବ୍ୟର ସଂଘର୍ଷ ହେବାରୁ ଆମ ସ୍କୁଲର ଜଣେ ମୁସଲମାନ ଶିକ୍ଷକଙ୍କ ଚାଟୁକ୍ତି ପ୍ରଭୃତି କଦୁପାୟଦ୍ୱାରା ବଶୀଭୂତ ହୋଇ ମୋ ସ୍କୁଲକାର୍ଯ୍ୟରେ ହସ୍ତକ୍ଷେପ କରି ମୋତେ ଅପଦସ୍ଥ କରିବାକୁ ଚେଷ୍ଟା କରୁଛନ୍ତି । ସେ ଯେ ମୋର ଅନିଷ୍ଟ କରିପାରିବେ, ତାହା ନୁହଁ; କିନ୍ତୁ ଦୁଃଖର ବିଷୟ ଏହି ଯେ ଏହିପରି

ଦୁର୍ନୀତିପରାୟଣ ଲୋକର ଅଧୀନରେ କାମ କରିବାକୁ ହେଉଛି । ମୁଁ ତିନିମାସ ଛୁଟି ପାଇଁ ଆବେଦନ କରିଛି ଏବଂ ଶୀଘ୍ର ରିଟାୟର୍ କରିବା ବିଷୟ ଭାବୁଛି । ଆର୍ଥିକ ଅବସ୍ଥା ବଡ଼ ପ୍ରତିକୂଳ, ଅଥଚ ଶରୀର ଓ ମନ ଉଭୟ ଆଉ ଏପରି ସର୍ଭିସରେ ରହିବାକୁ ଅନିଚ୍ଛୁକ ।

ଶ୍ରୀ ମଧୁସୂଦନ

ଯାହାହେଉ ଅଳ୍ପଦିନ ପରେ ରୁଥର୍ ସାହେବ ଓଡ଼ିଶାରୁ ବିଦାୟ ନେଇଗଲେ; କିନ୍ତୁ ଯିବାପୂର୍ବରୁ ସେ ମଧୁସୂଦନଙ୍କ ପ୍ରତି ଯେଉଁ ଅନ୍ୟାୟ କରିଥିଲେ ସେଥି ନିମନ୍ତେ ନିତାନ୍ତ ଅନୁତପ୍ତ ହୋଇ ନିଜେ ମଧୁସୂଦନଙ୍କ ଘରକୁ ଆସି ତାଙ୍କୁ କ୍ଷମାମାଗିଥିଲେ ।

ଟ୍ରେନିଂ ସ୍କୁଲର ହେଡ୍‌ମାଷ୍ଟ୍ର ଥିବା ସମୟରେ ମଧୁସୂଦନ ୧୮୯୮ ଖ୍ରୀଷ୍ଟାବ୍ଦ ଜାନୁୟାରୀଠାରୁ ଏପ୍ରିଲ ୧୫ ତାରିଖ ପର୍ଯ୍ୟନ୍ତ ଅସ୍ଥାୟୀଭାବରେ ଓଡ଼ିଶାର ଜଏଣ୍ଟ ଇନ୍‌ସପେକ୍ଟର କାର୍ଯ୍ୟ କରିଥିଲେ । ଏକ ସମୟରେ ଏହିପରି ଦୁଇଟି ଗୁରୁତ୍ୱପୂର୍ଣ୍ଣ କର୍ମ ନିର୍ବାହ କରିବାର ଦାୟିତ୍ୱ ତାଙ୍କୁ ଜୀବନରେ ବହୁବାର ବହନ କରିବାକୁ ପଡ଼ିଛି ।

—

# ଏକାଦଶ ଅଧ୍ୟାୟ

## ପଦୋନ୍ନତି

୧୯୦୧ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସରେ ମଧୁସୂଦନ ବଙ୍ଗୀୟ ପ୍ରାଦେଶିକ ଶିକ୍ଷା-ବିଭାଗର ସରକାରୀ କାର୍ଯ୍ୟର (Bengal Education Service) ସପ୍ତମ ଶ୍ରେଣୀକୁ ମାସିକ ଟ.୨୫୦ ବେତନରେ ଉନ୍ନୀତ ହେଲେ । ୧୯୦୫ରେ ଶିକ୍ଷା ବିଭାଗର ନୂତନ ବ୍ୟବସ୍ଥାନୁସାରେ ସେ ଷଷ୍ଠ ଶ୍ରେଣୀ ଲାଭକଲେ । ସେତେବେଳେ ତାଙ୍କର ମାସିକ ବେତନ ଟ. ୩୫୦ । ତତ୍ପରେ ୧୯୦୬ ଏପ୍ରିଲଠାରୁ ଜୁନ୍ ପର୍ଯ୍ୟନ୍ତ ସେ ଅସ୍ଥାୟୀଭାବରେ ଓଡ଼ିଶା ସ୍କୁଲସମୂହର ଇନ୍‌ସ୍ପେକ୍ଟରର କାର୍ଯ୍ୟ କଲେ । ୧୯୦୭ର ଅକ୍ଟୋବର ୭ ତାରିଖରୁ ସେ ବିଭାଗୀୟ ପଞ୍ଚମ ଶ୍ରେଣୀକୁ ଉନ୍ନୀତ ହୋଇ ମାସିକ ଟ.୪୦୦ ବେତନ ପାଇଲେ ଏବଂ ୧୯୦୭ ଅକ୍ଟୋବର ୧୦ ତାରିଖଠାରୁ ୧୯୦୮ ମାର୍ଚ୍ଚ ମାସ ପର୍ଯ୍ୟନ୍ତ ପାଞ୍ଚମାସ ଅସ୍ଥାୟୀ ଭାବରେ ବିଭାଗୀୟ ଇନ୍‌ସ୍ପେକ୍ଟରର କାର୍ଯ୍ୟ କଲେ । ଏହି ସମୟରେ ସେ ଭାରତୀୟ ଶିକ୍ଷା ବିଭାଗର (Indian Educational Service) କର୍ମଚାରୀ ଶ୍ରେଣୀଭୁକ୍ତ ହୋଇ ମାସିକ ଟ. ୧୦୦ ଅତିରିକ୍ତ ଭତ୍ତା ପାଉଥିଲେ । ୧୯୦୮ ମାର୍ଚ୍ଚ ମାସ ୧୪ ତାରିଖରୁ ସେ ଓଡ଼ିଶାର ଅତିରିକ୍ତ ଇନ୍‌ସ୍ପେକ୍ଟରରୂପେ ସ୍ଥାୟୀ ଭାବରେ ନିଯୁକ୍ତ ହେଲେ; କିନ୍ତୁ ଏହି ସମୟରେ ବିଭାଗୀୟ ଇନ୍‌ସ୍ପେକ୍ଟରରୂପେ ନିଯୁକ୍ତ ହୋଇ କେହି ନଆସିବା ପର୍ଯ୍ୟନ୍ତ ସେ ଉଭୟ କାର୍ଯ୍ୟ ଅସାମାନ୍ୟ ଦକ୍ଷତା ଓ ପ୍ରଗାଢ଼ କର୍ତ୍ତବ୍ୟପରାୟଣତାର ସହିତ ସମ୍ପାଦନ କରିଥିଲେ ।

ଡେପୁଟି ଇନ୍‌ସ୍ପେକ୍ଟରରୂପେ ମଧୁସୂଦନ ବିଭିନ୍ନ ସ୍କୁଲ ପରିଦର୍ଶନ କରିବାରେ ଯେଉଁ ଅନୁଭୂତି ଓ ଅଭିଜ୍ଞତା ଅର୍ଜନ କରିଥିଲେ ଏବଂ ଉତ୍କଳର ଶିକ୍ଷାପ୍ରଣାଳୀର ଉତ୍କର୍ଷ ବିଧାନକରିବା ନିମନ୍ତେ ମନ ମଧ୍ୟରେ ଯେଉଁ ଆଦର୍ଶ ଓ ପରିକଳ୍ପନା ପୋଷଣକରି ତାକୁ ବାସ୍ତବ କ୍ଷେତ୍ରରେ କାର୍ଯ୍ୟରେ ରୂପାନ୍ତରିତ କରି ଶିକ୍ଷକ ଓ ଛାତ୍ରମାନଙ୍କର ଜୀବନ ଗଠନ କରିବାକୁ ସଚେଷ୍ଟ ଥିଲେ, ଗଡ଼ଜାତ ସମେତ ସମଗ୍ର ଉତ୍କଳ ପ୍ରଦେଶର ବିଭାଗୀୟ ଇନ୍‌ସ୍ପେକ୍ଟରରୂପେ ନିଯୁକ୍ତ ହେବାରୁ ସେ ଅଭିଜ୍ଞତା ଓ ବହୁଦର୍ଶିତାକୁ ବ୍ୟାପକତର କ୍ଷେତ୍ରରେ ପ୍ରୟୋଗ କରିବାର ଅବାଧ ସୁଯୋଗ ପାଇଥିଲେ । ଉଚ୍ଚ ଇଂରେଜୀ ସ୍କୁଲମାନଙ୍କର ବାୟୁମଣ୍ଡଳ ନବରୂପ ଧାରଣକଲା । ସେ ଜଣେ ସାଧୁ ଓ ସତର୍କ ପରିଦର୍ଶକ ଥିବାରୁ ତାଙ୍କ ପରିଦର୍ଶନ-ସମୟ-ନିର୍ଘଣ୍ଟ ପାଇଲେ ପ୍ରଧାନଶିକ୍ଷକ ଓ ତାଙ୍କ

ସହକାରୀମାନେ ଏକରକମ ଭୟରେ ଥରହର ହୋଇଉଠୁଥିଲେ; କିନ୍ତୁ ମଧୁସୂଦନ କର୍ତ୍ତବ୍ୟନିଷ୍ଠ ଥିଲେ ସୁଦ୍ଧା ସର୍ବଭୟହର ଥିଲେ । ଶିକ୍ଷକମାନଙ୍କର ତ୍ରୁଟିବିଚ୍ୟୁତି ଦେଖିଲେ ସେ କଦାପି ତାହା କ୍ଷମା କରୁନଥିଲେ ସତ; କିନ୍ତୁ ଏ ତ୍ରୁଟି ସଂଶୋଧନ ନ କରିବା ପର୍ଯ୍ୟନ୍ତ ଶିକ୍ଷକମାନଙ୍କର ଶାନ୍ତି ନଥିଲା । ଦଣ୍ଡ ବିଧାନ ନୁହେଁ, ଆଦର୍ଶର ଅନୁପ୍ରେରଣାରେ ସେ ଶିକ୍ଷକମାନଙ୍କର ମତିଗତିରେ ସଞ୍ଜୀବନୀ ଶକ୍ତି ସଂଚାର କରୁଥିଲେ । ଜଣେ ସମାଲୋଚକ ପୁରୁଣା ନଥିପତ୍ର ଘାଣ୍ଟି ଉଲ୍ଲେଖ କରିଅଛନ୍ତି '୧୮୯୦-୯୧ ବେଳକୁ ଓଡ଼ିଶାରେ ଉଚ୍ଚ-ଇଂରେଜୀ ସ୍କୁଲର ସଂଖ୍ୟା ଥିଲା ୧୦ ଏବଂ ଛାତ୍ରସଂଖ୍ୟା ଥିଲା ୧୪୧୧; ମଧ୍ୟ ଇଂରେଜୀ ସ୍କୁଲ ଥିଲା ୪୦, ଛାତ୍ର ଥିଲେ ୨୨୫୮, ମଧ୍ୟ ଭର୍ଣ୍ଣାକୁଲର ସ୍କୁଲ ଥିଲା ୪୧ ଏବଂ ଛାତ୍ରସଂଖ୍ୟା ଥିଲା ୧୬୬୧ । ୧୯୦୮ ମସିହା ବେଳକୁ ଏ ସଂଖ୍ୟାର ଆଶାନୁରୂପ ବୃଦ୍ଧି ନିଶ୍ଚୟ ଘଟିଥିବ । ଏଥିରୁ ଅନୁମାନ କରାଯାଇପାରେ ଇନ୍‌ସ୍ପେକ୍‌ଟରରୂପେ ତାଙ୍କର କର୍ମ କିପରି ବ୍ୟାପକ ଏବଂ ଦାୟିତ୍ୱ କିପରି ଗୁରୁତ୍ୱପୂର୍ଣ୍ଣ ଥିଲା । ମୋଗଲବନ୍ଦୀ ଛଡ଼ା ସ୍କୁଲ ପରିଦର୍ଶନ କରିବାକୁ ତାଙ୍କୁ ବିଭିନ୍ନ ଗଡ଼ଜାତ ରାଜ୍ୟକୁ ଯିବାକୁ ପଡ଼ିଥିଲା । ରାଧାନାଥଙ୍କ ପରି ଏହି ଗଡ଼ଜାତ-ଭ୍ରମଣ ଫଳରେ ତାଙ୍କର ଦ୍ୱୈତ କଲ୍ୟାଣ ସାଧିତ ହୋଇଥିଲା— ପ୍ରଥମତଃ ଗଡ଼ଜାତର ପ୍ରାକୃତିକ ଶୋଭା ସନ୍ଦର୍ଶନ ଏବଂ ଦ୍ୱିତୀୟତଃ ଗଡ଼ଜାତର ରାଜାମାନଙ୍କ ସହିତ ଘନିଷ୍ଠ ବନ୍ଧୁତା ସ୍ଥାପନ । 'ବସନ୍ତ-ଗାଥା'ରେ ସନ୍ନିବିଷ୍ଟ 'ବାମଣ୍ଡେଶ ରାଜା ଶ୍ରୀ ଶ୍ରୀ ଶ୍ରୀ ସୁଢ଼ଳଦେବ', 'କୁସୁମାଞ୍ଜଳି'ର 'ଶୋକଲହରୀ' ଓ 'ବାମଣ୍ଡା ରାଜ-ପ୍ରଶସ୍ତି' ଏବଂ ମୟୂରଭଞ୍ଜର ସ୍ୱନାମଧନ୍ୟ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ଅକାଳ ବିୟୋଗରେ ରଚିତ 'ଶୋକ-ଶ୍ଳୋକ'— ଏହି ଶୋକଗୀତିକାଗୁଡ଼ିକରୁ ଜଣାଯାଏ, ଗଡ଼ଜାତ ରାଜାମାନଙ୍କ ସହିତ ତାଙ୍କର କିପରି ଘନିଷ୍ଠ ସମ୍ପର୍କ ଥିଲା । ଏ ଶୋକ ପୁଣି ମଧୁସୂଦନଙ୍କର ବ୍ୟକ୍ତିଗତ ନୁହେଁ— ଜାତିଗତ, ସମଷ୍ଟିଗତ, ସମଗ୍ର ଓଡ଼ିଆଜାତିର ଅପୂରଣୀୟ ସାମୂହିକ କ୍ଷତିରେ ତାଙ୍କ ଦେଶାତ୍ମବୋଧସମ୍ପନ୍ନ ପ୍ରାଣର ଅତଳସ୍ପର୍ଶୀ ବେଦନା-ବୋଧର ବହିଃପ୍ରକାଶ ।

୧୯୦୦ ଠାରୁ ୧୯୦୯ ମଧ୍ୟରେ ମଧୁସୂଦନଙ୍କର ସବୁ ଉଲ୍ଲେଖଯୋଗ୍ୟ ଗ୍ରନ୍ଥ ପ୍ରାୟ ପ୍ରକାଶ ପାଇଥିଲା । ସେଥିମଧ୍ୟରୁ ଅନେକ ଗଦ୍ୟ ଓ ପଦ୍ୟ ରଚନା 'ଉତ୍କଳ-ସାହିତ୍ୟ' ଓ ଅନ୍ୟାନ୍ୟ ମାସିକ ପତ୍ରିକାରେ ପ୍ରଥମେ ପ୍ରକାଶିତ ହୋଇ ପାଠକ ସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । 'ବସନ୍ତ-ଗାଥା' ୧୯୦୧ରେ, 'କୁସୁମାଞ୍ଜଳି' ୧୯୦୩ରେ, 'ଉତ୍କଳ-ଗାଥା' ୧୯୦୮ରେ ଏବଂ 'ଉତ୍ତର-ରାମ-ଚରିତ' ନାଟକର ଅନୁବାଦ ୧୯୦୭ରୁ ୧୯୦୮ ମଧ୍ୟରେ ଲେଖାଯାଇଥିଲା । ସେ କେବଳ ଏହି ନାଟକର ଚତୁର୍ଥ ଅଙ୍କ ଶେଷ କରି ପଞ୍ଚମରୁ କିଛି ଅଂଶ ଅନୁବାଦ କରିଥିଲେ । ଏହି ସମୟ ମଧ୍ୟରେ ବାଲେଶ୍ୱରର ନିର୍ଜନ ଶାନ୍ତିକାନନରେ ବସି ସାହିତ୍ୟରଥୀ

ଫକୀରମୋହନ ତାଙ୍କର ସର୍ବଶ୍ରେଷ୍ଠ ଉପନ୍ୟାସମାନ ରଚନା କରୁଥିଲେ । 'ଆତ୍ମ-ଚରିତ' ଦ୍ୱାବିଂଶ ପରିଚ୍ଛେଦରେ ସେ ନିଜେ ଲେଖିଛନ୍ତି, ତାଙ୍କର ବାଲେଶ୍ୱର ନିବାସ ସମୟରେ 'ଶାନ୍ତିକାନନ'ର ନିର୍ଜନତାର କ୍ରୋଡ଼ରେ ବସି ସେ ତାଙ୍କର ଜୀବନର ଶେଷ ଗ୍ରନ୍ଥମାନ ରଚନା କରିଅଛନ୍ତି । ରାଧାନାଥଙ୍କର ସୁଧାମୟୀ ଲେଖନୀ ମଧ୍ୟ ମୂକ ହୋଇନଥିଲା । ତେଣୁ ଏହି ସମୟଟିକୁ ଉତ୍କଳର ନବଜାଗରଣର ଯୁଗ (Renaissance) କହିଲେ ସତ୍ୟର ବିଶେଷ ଅପଳାପ ହେବନାହିଁ । ୧୯୦୯ ମସିହାରେ ଗୋପବନ୍ଧୁଙ୍କ ପ୍ରଯତ୍ନରେ ସତ୍ୟବାଦୀ ବିଦ୍ୟାଳୟର ସୂତ୍ରପାତ ଏବଂ ଓଡ଼ିଶାରେ ଶିକ୍ଷା ଓ ସାହିତ୍ୟର ନବୀକରଣ ହୋଇଥିଲା । ଏହିସବୁ କାରଣରୁ ୧୯୦୦ରୁ ୧୯୦୯ ଏହି ନଅବର୍ଷକୁ ଓଡ଼ିଆ ସାହିତ୍ୟର 'ଭିକ୍ଟୋରିୟା ଯୁଗ' କୁହାଯାଇପାରେ ।

ଉଚ୍ଚକୋଟିର ଭକ୍ତିରସାତ୍ମକ କାବ୍ୟକବିତା ଓ ପାଠ୍ୟପୁସ୍ତକ ଲେଖି ମଧୁସୂଦନ ସେତେବେଳେ ସମଗ୍ର ଓଡ଼ିଶାରେ ସୁନାମ ଅର୍ଜନ କରିଥିଲେ ଏବଂ ତାଙ୍କର 'ଚରିତ୍ର-ମାଧୁର୍ଯ୍ୟ', 'କର୍ମଦକ୍ଷତା' ଏବଂ 'କର୍ତ୍ତବ୍ୟପରାୟଣତା'ରେ ସନ୍ତୁଷ୍ଟ ହୋଇ ୧୯୦୭ ଖ୍ରୀଷ୍ଟାବ୍ଦରେ ସରକାର ତାହାଙ୍କୁ 'ରାୟବାହାଦୁର' ଉପାଧିରେ ଭୂଷିତ କରିଥିଲେ । କିନ୍ତୁ ଯେଉଁ ସର୍ବଜନାନୁମୋଦିତ ଉପାଧିରେ ଉତ୍କଳର ଶିକ୍ଷିତ ସାଧାରଣ 'ରାୟବାହାଦୁର' ଉପାଧି ପାଇବା ପୂର୍ବରୁ ତାଙ୍କୁ ବିମଣ୍ଡିତ କରିଥିଲେ, ତାହା ହେଉଛି 'ଭକ୍ତକବି' । ମୃତ୍ୟୁର ଅର୍ଦ୍ଧଶତାବ୍ଦୀ ପରେ ମଧ୍ୟ ମଧୁସୂଦନ ଆଜି ସେହି ନାମରେ ପରିଚିତ ଏବଂ ସେହି ନାମରେ ହିଁ ମଧୁସୂଦନଙ୍କର ମାନବିକ ତଥା ସାହିତ୍ୟିକ ମହତ୍ତ୍ୱ ନିହିତ ।

୧୯୦୯ ଖ୍ରୀଷ୍ଟାବ୍ଦ ଜୁଲାଇ ମାସ ୨୮ ତାରିଖରେ ମଧୁସୂଦନ ସରକାରୀ ଚାକିରିରୁ ଅବସର ଗ୍ରହଣ କରିଥିଲେ । ଓଡ଼ିଶାର ଶିକ୍ଷା ବିଭାଗ, ସମଗ୍ର ଉତ୍କଳର ଶିକ୍ଷକ ଓ ଛାତ୍ରମଣ୍ଡଳୀ ସେହିଦିନଠାରୁ ନିଜକୁ ପିତୃହୀନ ବୋଲି ହୁଏତ ମନେକରିଥିବେ ।

ଅବସର ଗ୍ରହଣ କରିବାର ତୃତୀୟ ବର୍ଷରେ ମଧୁସୂଦନଙ୍କର ପରଲୋକପ୍ରାପ୍ତି ଘଟେ । ଏହାର ବହୁଦିନ ଆଗରୁ ସେ ଜ୍ୱର ବ୍ୟାଧିର ଆକ୍ରମଣରେ ପୀଡ଼ିତ ହୋଇଥିଲେ । ଅବସର ଗ୍ରହଣ କରିବାର ଆଠବର୍ଷ ପୂର୍ବେ ପ୍ରକାଶିତ 'ବସନ୍ତ-ଗାଥା'ର 'ଜରା ଆକ୍ରମଣ' କବିତାରେ ସେ ଲେଖିଅଛନ୍ତି :—

''ଜରା ଆକ୍ରମଣେ ତେବେ ହେବି କି ନିରାଶ,
ଡାକିବି କି ଆର୍ତ୍ତନାଦେ ବିଷାଦର ଶ୍ୱାସ ?''

—

# ଦ୍ୱାଦଶ ଅଧ୍ୟାୟ

## ଜନହିତକର ଅନୁଷ୍ଠାନ ପ୍ରତିଷ୍ଠା

ମଧୁସୂଦନ ବର୍ତ୍ତମାନ ଉତ୍କଳୀୟମାନଙ୍କ ନିକଟରେ କେବଳ 'ଭକ୍ତକବି'ରୂପେ ପରିଚିତ । ତାଙ୍କର ବହୁମୁଖୀ ପ୍ରତିଭା ଓ ସାଧନାର ଅନ୍ୟାନ୍ୟ ଦିଗ ଆଜି ବିସ୍ମୃତିରେ ବିଲୀନ ହେବାକୁ ଯାଉଛି । ତାଙ୍କର ଗରୀୟାନ୍ ମାନବିକତା କିମ୍ବା ବ୍ୟକ୍ତିତ୍ୱର ବିଭା କ୍ରମେ ଲୁଚି ଲୁଚି ଯାଉଛି । ଆମେ ଆଜି ତାଙ୍କର କେବଳ କାବ୍ୟକଳାର ସମୀକ୍ଷଣ କରି ମନ୍ତବ୍ୟ ପ୍ରକାଶ କରୁଥାଇଁ, ମଧୁସୂଦନଙ୍କ ବ୍ୟକ୍ତିତ୍ୱ ଏକମୁଖୀ– ତାଙ୍କର କାବ୍ୟ-ସାହିତ୍ୟରେ ମନୁଷ୍ୟ ଜୀବନର ବିଚିତ୍ର ରହସ୍ୟ ଉଦ୍‌ଘାଟିତ ହୋଇନାହିଁ– ସେଥିରେ ମନୁଷ୍ୟର ଚିତ୍ତବୃତ୍ତିର ଅପରୂପ ଆଲେଖ୍ୟ ନାହିଁ, ମନୁଷ୍ୟ ପ୍ରାଣର ଆବେଗ, ଅନୁଭୂତି ଓ ସୁକୁମାର କମ୍ପନ-ସ୍ପନ୍ଦନର ରୂପାୟନ ନାହିଁ । ତାଙ୍କ ସାହିତ୍ୟରେ ଆମେ କେବଳ ଦେଖିବାକୁ ପାଉଁ ତାଙ୍କ ବ୍ରହ୍ମସମର୍ପିତ ମନର ଆଧ୍ୟାତ୍ମିକ ମାଧୁରୀ, ତାଙ୍କ ଭକ୍ତିପ୍ରବଣତାର ପ୍ରତିଫଳନ; କିନ୍ତୁ ଏ କଥା ଯେଉଁମାନେ କହନ୍ତି, ସେମାନେ ମଧୁସୂଦନଙ୍କର ସମଗ୍ର ଜୀବନ ସହତ ପରିଚିତ ନୁହନ୍ତି । ମନୁଷ୍ୟ ଅନେକ କାର୍ଯ୍ୟ କରେ । ସେସବୁ ତା'ର କାବ୍ୟ-କବିତାରେ ଅଭିବ୍ୟକ୍ତ ହୋଇପାରେ ନାହିଁ । କର୍ମୀ ମନୁଷ୍ୟ ଓ କବି ମନୁଷ୍ୟ ଅନେକ ସମୟରେ ଏକ ନୁହନ୍ତି । ସେ ଯେଉଁ ଦେଶହିତକର କାର୍ଯ୍ୟ ସାଧନ କରିଯାଏ, ତା' ସାହିତ୍ୟରେ ସ୍ଥାନ ପାଇବ କିପରି ? କବି ଏଡ଼େ ଅହଂଭାବାପନ୍ନ ନୁହେଁ ଯେ, ସେ ଯାହା କିଛି ସତ୍‌କାର୍ଯ୍ୟ ସମ୍ପାଦନ କରିଯାଇଛି, ତା'ର ଗୋଟିଏ ଇତିହାସ ତାହାର କୃତିମାନଙ୍କରେ ଲିପିବଦ୍ଧ କରିଯିବ । ଆତ୍ମଚରିତରେ ଏହାର ଇତିହାସ ମିଳିପାରେ; କିନ୍ତୁ ଆତ୍ମଚରିତ କାବ୍ୟ-କବିତା ନୁହେଁ । ଏହି ଆତ୍ମଚରିତରୁ କବି ଓ ସାହିତ୍ୟିକର ସାମଗ୍ରିକ ମନୁଷ୍ୟତା କିମ୍ବା ବହୁମୁଖୀ ବ୍ୟକ୍ତିତ୍ୱ ସମ୍ବନ୍ଧରେ ଆମ୍ଭମାନଙ୍କର ପୂର୍ଣ୍ଣ ଧାରଣା ଜନ୍ମେ । ତେଣୁ ମଧୁସୂଦନଙ୍କ କାବ୍ୟ-କବିତା ପାଠକରି ଯେଉଁମାନେ ମତ ଦିଅନ୍ତି ଯେ, ସେ କେବଳ ସାମଗାନ କରୁଥିଲେ, ସେମାନେ ମଧୁସୂଦନଙ୍କୁ ଆଂଶିକ ଭାବରେ ଦେଖୁଛନ୍ତି– ତାଙ୍କ ସମ୍ବନ୍ଧରେ ଏମାନଙ୍କର ପୂର୍ଣ୍ଣ ଦୃଷ୍ଟି ନାହିଁ । ମଧୁସୂଦନ କାବ୍ୟରେ ଯାହା ପ୍ରକାଶ କରିନାହାନ୍ତି, ଜୀବନର ପ୍ରଶସ୍ତ କ୍ଷେତ୍ରରେ ତାହା କାର୍ଯ୍ୟରେ ଦେଖାଇଦେଇ ଆମ୍ଭମାନଙ୍କ ସମ୍ମୁଖରେ ନିରାଡ଼ମ୍ବର ଜନହିତୈଷଣାର ଏକ ଉଜ୍ଜ୍ୱଳ ଆଦର୍ଶ ରଖିଯାଇଅଛନ୍ତି ।

ଏକଥା ବୁଝିଥିଲେ ତାଙ୍କର ସମସାମୟିକ ଶିକ୍ଷିତ ଉତ୍କଳୀୟମାନେ । ତେଣୁ ଏମାନଙ୍କ ମଧ୍ୟରୁ କେତେକ ତାଙ୍କର ମୃତ୍ୟୁର ଅବ୍ୟବହିତ ପରେ ତାଙ୍କର ସ୍ମୃତିତର୍ପଣ

କରିବାକୁ ଯାଇ 'ଉତ୍କଳ ସାହିତ୍ୟ'ର ମଧୁସୂଦନ ସଂଖ୍ୟାରେ ଯେଉଁ ପ୍ରବନ୍ଧ କିମ୍ବା ଶୋକ-ଗୀତିକା ଲେଖି ପ୍ରକାଶ କରିଥିଲେ, ସେଥିରେ ସେମାନେ ମଧୁସୂଦନଙ୍କ ସମଗ୍ର ବ୍ୟକ୍ତିତ୍ୱର ଆଭାସ ଦେଇଛନ୍ତି । ସେମାନେ କର୍ମୀ ମଧୁସୂଦନଙ୍କୁ କବି ମଧୁସୂଦନଙ୍କଠାରୁ ଉଚ୍ଚତର ସ୍ଥାନ ଦେଇଅଛନ୍ତି । ଉଦାହରଣ ସ୍ୱରୂପ ଓଡ଼ିଶାର ପଲ୍ଲୀକବି ନନ୍ଦକିଶୋର ବଳ 'ଉତ୍କଳ-ସାହିତ୍ୟ'ର ମଧୁସୂଦନ ସଂଖ୍ୟାରେ ଯେଉଁ ପ୍ରବନ୍ଧ ଲେଖିଥିଲେ ସେଥିରେ ଉଲ୍ଲେଖ ଥିଲା, ମଧୁସୂଦନଙ୍କର ବିଶେଷତ୍ୱ ଏହି ଯେ, ସେ ଏକାଧିକ କର୍ମକ୍ଷେତ୍ରରେ କାର୍ଯ୍ୟ କରି କୃତିତ୍ୱ ଲାଭକରିଥିଲେ । ତାଙ୍କର ପ୍ରଧାନ କର୍ମକ୍ଷେତ୍ର ଥିଲା ଧର୍ମସାଧନ ଓ ଧର୍ମପ୍ରଚାର ଏବଂ ତାହାର ଉପାୟ ସ୍ୱରୂପ ଜ୍ଞାନାର୍ଜନ, ଶିକ୍ଷା-ବିସ୍ତାର ଓ ସମାଜ-ସଂସ୍କାର, ଗୃହଧର୍ମ ସାଧନା, ଅତିଥି-ସତ୍କାର ଓ ସମାଜ-ସେବା ତାହାଙ୍କ ଧର୍ମସାଧନାର ବି ଅଙ୍ଗୀଭୂତ ଥିଲା । ତାହାଙ୍କ ଧର୍ମ-ଜୀବନର ଆଦର୍ଶ ଥିଲା— ଜ୍ଞାନ, କର୍ମ ଓ ତପସ୍ୟାର ତ୍ରିଯୋଗ ସାଧନ ଓ ବିଶ୍ୱଜନୀନ ଜୀବନ ଲାଭ । ଏହାର ପ୍ରତ୍ୟେକ ବିଭାଗରେ ସେ ଯାହା ଯାହା କରିଯାଇଛନ୍ତି, ସେଥିମଧ୍ୟରୁ କେବଳ ଗୋଟିଏ ଗୋଟିଏ ଦ୍ୱାରା ସେ ସମାଜରେ ଉଚ୍ଚସ୍ଥାନ ଲାଭ କରିପାରିଥା'ନ୍ତେ । ପରନ୍ତୁ ଏହି ଗୁଣଗୁଡ଼ିକ ଏକାଧାରରେ ସମାବିଷ୍ଟ ହୋଇଥିଲା ବୋଲି ସେ ଜୀବିତକାଳରେ 'ଋଷି', 'ଆଦର୍ଶପୁରୁଷ', 'ଭକ୍ତକବି' ପ୍ରଭୃତି ଆଖ୍ୟା ଲାଭ କରିଅଛନ୍ତି । ତାହାଙ୍କ ତିରୋଧାନରେ ଉତ୍କଳର ବହୁସ୍ଥାନ ଶୂନ୍ୟପଡ଼ିଲା ।

ଏହି 'ଆଦର୍ଶ ପୁରୁଷ' ମଧୁସୂଦନ ତାଙ୍କ ଜୀବନରେ ବହୁ ଦେଶହିତକର କାର୍ଯ୍ୟ କରିଥିଲେ । ସରକାରୀ କର୍ମଚାରୀ ଥାଇ ସୁଦ୍ଧା ନିଜର ସ୍ୱାଧୀନ ଚିନ୍ତାକୁ ସେ କେବେ ସ୍ୱାର୍ଥ ସକାଶେ ବଳିଦେଇନାହାନ୍ତି । ଶିକ୍ଷା ବିଭାଗର ନାଲିଫିତା, ହାକିମମାନଙ୍କର ନାଲିଆଖି ଏବଂ ଅମଲାତନ୍ତ୍ର ଶାସନର ରକ୍ଷଣଶୀଳତା ପ୍ରତି ସେ ତିଳେମାତ୍ର ଭ୍ରୁକ୍ଷେପ ନକରି ପ୍ରାଥମିକ ଓ ମାଧ୍ୟମିକ ବିଦ୍ୟାଳୟର ଶିକ୍ଷକମାନଙ୍କର ସମ୍ମିଳନୀ ଆହ୍ୱାନ କରିଥିଲେ । ଶିକ୍ଷାର ଆଲୋକ ବିକିରଣ କରିବା ଉଦ୍ଦେଶ୍ୟରେ ନୈଶ ବିଦ୍ୟାଳୟ, ବାଳିକା ବିଦ୍ୟାଳୟ ଓ ଅସ୍ପୃଶ୍ୟ ଜାତିର ଲୋକମାନଙ୍କ ନିମନ୍ତେ ବହୁ ଶିକ୍ଷା-ଅନୁଷ୍ଠାନ ସ୍ଥାପନ କରିଥିଲେ । ଏସବୁ ହୁଏତ ଆଜି ଇତିହାସ ଭୁଲିଗଲାଣି; କିନ୍ତୁ କଟକର ଟାଉନ୍ ଭିକ୍ଟୋରିଆ ହାଇସ୍କୁଲ ମଧୁସୂଦନଙ୍କର ସକ୍ରିୟ ଜନକଲ୍ୟାଣ କାମନାର ମୂର୍ତ୍ତି ରୂପେ ଆଜି ସଗର୍ବରେ ବିରାଜମାନ ।

ଆଜି 'ରେଭେନ୍‌ସା କଲେଜ', 'ଭିକ୍ଟୋରିଆ ହାଇସ୍କୁଲ' ଓ 'ଭିକ୍ଟୋରିଆ ମେମୋରିଆଲ ହଷ୍ଟେଲ' ଏସବୁ କଥା ଶୁଣି କାହାରି କାହାରି ଆଧୁନିକତାଧର୍ମୀ ସ୍ୱାଧୀନ ମନ ବିଦ୍ରୋହୀ ଓ ବିଷାୟିତ ହୋଇଉଠିପାରେ । କେହି କେହି ବ୍ରିଟିଶ୍ ସାମ୍ରାଜ୍ୟବାଦର ସକଳ ଅବାଞ୍ଛନୀୟ ସ୍ମୃତିକୁ ବିସ୍ମୃତିର ଅତଳ ଗର୍ଭରେ ଫିଙ୍ଗିଦେବାକୁ ବ୍ୟାକୁଳ ହେବା ମଧ୍ୟ ନିତାନ୍ତ ଅସ୍ୱାଭାବିକ ନୁହେଁ । 'ଆରେ ରେ, ଯେତେବେଳେ ଯେ ।' ମନୁଷ୍ୟର

ଜାଗ୍ରତ ଓ ମାର୍ଜିତ ରୁଚିବୋଧ ଏହାର ଅନ୍ୟଥା କଳ୍ପନା କରିନପାରେ । ତଥାପି ବ୍ରିଟିଶ୍ ସାମ୍ରାଜ୍ୟବାଦର ଅଙ୍ଗୀଭୂତ ହୋଇ ସୁଦ୍ଧା ଯେଉଁ ଜନହିତୈଷୀ ଇଂରେଜମାନ ଆମ ଦେଶରେ କୌଣସି ସାଧାରଣ ହିତକର କାର୍ଯ୍ୟ କରିଯାଇଅଛନ୍ତି ଏବଂ ଯାହାର ଫଳ ଆମେ ବର୍ତ୍ତମାନ ଭୋଗକରି ଉପକୃତ ହେଉଅଛୁଁ, ସେହି ବ୍ୟକ୍ତିବିଶେଷଙ୍କ ନାମ ସ୍ମୃତି-ପଟରୁ ଏକବାରେ ପୋଛିପକାଇବା ନିତାନ୍ତ ସମୀଚୀନ ହେବନାହିଁ । ଏହି ଧାରଣାର ବଶବର୍ତ୍ତୀ ହୋଇ ସ୍ୱାଧୀନତା ଲାଭ କରିବାର ଅଳ୍ପଦିନ ପରେ ରେଭେନ୍ସା କଲେଜକୁ କୁଳବୃଦ୍ଧ ମଧୁସୂଦନ କିମ୍ବା ଉତ୍କଳମଣି ଗୋପବନ୍ଧୁଙ୍କ ନାମରେ ନାମିତ କରିବାକୁ ଜନସାଧାରଣଙ୍କ ମଧ୍ୟରେ ଏବଂ ପତ୍ରପତ୍ରିକାମାନଙ୍କରେ ଆନ୍ଦୋଳନର ସୂତ୍ରପାତ ହୋଇଥିଲେ ମଧ୍ୟ ତାହା ମାନବିକତାର ଦୃଷ୍ଟିକୋଣରୁ କାର୍ଯ୍ୟରେ ପରିଣତ ହୋଇପାରି ନାହିଁ ।

ଟାଉନ୍ ଭିକ୍ଟୋରିଆ ହାଇସ୍କୁଲଟି ମଧୁସୂଦନଙ୍କ ଐକାନ୍ତିକ ନିଷ୍ଠା, ଅଦମ୍ୟ ଉତ୍ସାହ ଓ ପ୍ରଗାଢ଼ ଯତ୍ନ ଯୋଗୁଁ ପ୍ରତିଷ୍ଠିତ ହୋଇପାରିଥିଲା । ପୂର୍ବେ କୁହାଯାଇଅଛି ଆଦର୍ଶ ଶିକ୍ଷାର ଦୃଷ୍ଟାନ୍ତ ଦେବା ନିମନ୍ତେ ମଧୁସୂଦନ ୧୮୮୧ରେ 'କଟକ ଟାଉନ୍ ସ୍କୁଲ' ନାମରେ ଗୋଟିଏ ମଧ୍ୟ-ଇଂରାଜୀ ବିଦ୍ୟାଳୟ ସ୍ଥାପନକରି ୧୮୮୯ରେ ତାକୁ ହାଇସ୍କୁଲରେ ପରିଣତ କରିଥିଲେ । କିନ୍ତୁ ଏ ଗୁରୁଦାୟିତ୍ୱ ଆର୍ଥିକ କାରଣରୁ ବହନ କରିନପାରି ପୁନର୍ବାର ତାହାକୁ ମଧ୍ୟଇଂରାଜୀ ବିଦ୍ୟାଳୟରେ ପରିଣତ କରିଥିଲେ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ମଧୁସୂଦନ ପୁଣି ଏହି ବିଦ୍ୟାଳୟଟିକୁ ହାଇସ୍କୁଲ କରିବାକୁ ସଚେଷ୍ଟ ହେଲେ । ସେତେବେଳେ ଉଚ୍ଚ ଇଂରାଜୀ ଶିକ୍ଷା ପ୍ରତି ଲୋକ-ସାଧାରଣଙ୍କର ଆଗ୍ରହ କ୍ରମେ ବଢୁଥାଏ; କିନ୍ତୁ ହାଇସ୍କୁଲର ସଂଖ୍ୟା ଅତି ଅଳ୍ପ । ହାଇସ୍କୁଲମାନଙ୍କ ମଧ୍ୟରୁ ଅଧିକାଂଶ ବେସରକାରୀ; ଅଥଚ ସରକାରୀ ସାହାଯ୍ୟପ୍ରାପ୍ତ । ତେଣୁ ଶିକ୍ଷା ବିଭାଗର ନିୟମକାନୁନ ପାଳନ କରିବାକୁ ଏହି ସାହାଯ୍ୟପାପ୍ତ ସ୍କୁଲଗୁଡ଼ିକ ବାଧ୍ୟ; ନଚେତ, ଏମାନେ ସରକାରୀ-ସାହାଯ୍ୟ (Grant-in-aid) ପାଇବାରୁ ବଞ୍ଚିତହେବେ । ସରକାରୀ ସ୍କୁଲରେ ଛାତ୍ରଦତ୍ତ ବେତନ ଯାହା, ଏହି ସ୍କୁଲମାନଙ୍କରେ ଛାତ୍ରମାନଙ୍କଠାରୁ ସେହି ହାରରେ ବେତନ ଆଦାୟ କରିବାକୁ ହେବ । ତେଣୁ ଦରିଦ୍ର ଛାତ୍ରମାନେ ଗଡ଼ଜାତ ଓ ନିକଟବର୍ତ୍ତୀ ଅଞ୍ଚଳରୁ କଟକ ସହରକୁ ବହୁସଂଖ୍ୟାରେ ଆସନ୍ତି ସରକାରୀ ସ୍କୁଲରେ ନାମ ଲେଖାଇବାକୁ । ସେମାନଙ୍କର ଧାରଣା, ଏହି ସ୍କୁଲରେ ସେମାନେ ପୂରା ଦରମା କିମ୍ବା ଅଧା ଦରମା ଛାଡ଼ପାଇ କଷ୍ଟେମଷ୍ଟେ ପ୍ରବେଶିକା ପରୀକ୍ଷାଟା ପାସ୍‌କରିଯିବେ । କିନ୍ତୁ ସରକାରୀ ସ୍କୁଲରେ ଦରମା ଛାଡ଼ ସମ୍ବନ୍ଧରେ ନିୟମ ବଡ଼ କଠୋର; ତେଣୁ ଏହି ଦରିଦ୍ର ଛାତ୍ରମାନଙ୍କ ମଧ୍ୟରୁ ଅଧିକାଂଶ ନିରାଶ ହୋଇ ଘରକୁ ଫେରିଯା'ନ୍ତି । ଉଚ୍ଚ ଶିକ୍ଷାଲାଭର ଦ୍ୱାର ଏହି ଦୁଃସ୍ଥ ଛାତ୍ରମାନଙ୍କ ସକାଶେ ଚିରକାଳପାଇଁ ରୁଦ୍ଧହୋଇଯାଏ । ଏହା ଦେଖି ମଧୁସୂଦନ

ବଡ଼ ଚିନ୍ତିତ ହେଲେ । ଏହି ଦରିଦ୍ର ଛାତ୍ରମାନଙ୍କୁ ଉଚ୍ଚ-ଇଂରେଜୀ ଶିକ୍ଷାର ସୁବିଧା ଦେବା ନିମନ୍ତେ ୧୯୦୧ ଫେବୃଆରୀ ୪ ତାରିଖରେ ସେ ଏହି ମଧ୍ୟଇଂରାଜୀ ବିଦ୍ୟାଳୟକୁ ପୁନର୍ବାର ଉଚ୍ଚ-ଇଂରାଜୀ ବିଦ୍ୟାଳୟରେ ପରିଣତ କଲେ । ଏହାର ଅଳ୍ପଦିନ ପୂର୍ବେ (୧୯୦୧, ଜାନୁୟାରୀ ୨୨ ତାରିଖ) ତଦାନୀନ୍ତନ ଭାରତସାମ୍ରାଜ୍ଞୀ ଭିକ୍ଟୋରିୟା ପରଲୋକ ଗମନ କରିଥିଲେ । ଭାରତ ଜନସାଧାରଣଙ୍କର ଭିକ୍ଟୋରିଆଙ୍କ ପ୍ରତି ବିଶେଷ ଶ୍ରଦ୍ଧା ଓ ସମ୍ମାନ ଥିଲା । ଗୁଣଗ୍ରାହୀ ମଧୁସୂଦନ ମଧ୍ୟ ସାମ୍ରାଜ୍ଞୀଙ୍କ ସଦ୍‌ଗୁଣରାଶିରେ ମୁଗ୍ଧ ଥିଲେ । ସେହି ଭକ୍ତି, ଶ୍ରଦ୍ଧା ଓ ସମ୍ମାନକୁ ସ୍ମରଣୀୟ କରି ରଖିବା ଉଦ୍ଦେଶ୍ୟରେ ମଧୁସୂଦନ ଏହାର ନୂତନ ନାମ ଦେଲେ 'ଟାଉନ୍ ଭିକ୍ଟୋରିଆ ହାଇସ୍କୁଲ' । ମଧୁସୂଦନ ଭାରତ-ସାମ୍ରାଜ୍ଞୀ ଭିକ୍ଟୋରିଆଙ୍କ ସଦ୍‌ଗୁଣରାଜିରେ କିପରି ମନ୍ତ୍ର-ମୁଗ୍ଧ ହୋଇଥିଲେ ତାହାର ସୁମନୋଜ୍ଞ ସାକ୍ଷ୍ୟ ତାଙ୍କ ରଚିତ 'ମହାଦେବୀ ଭିକ୍ଟୋରିୟା' କବିତାରୁ ମିଳେ । ସେ କବିତାର ପ୍ରଥମ ପଦ ହେଉଛି—

''ମହାମୃତ୍ୟୁ-ଶୋକ-ତାମସୀ ଛାୟା
ସହସା ବିସ୍ତାରି ବିରାଟ କାୟା,
ଘୋଟି ଯାଇଅଛି ନିଖିଳ ମହୀ
ଦାରୁଣ ନିର୍ବେଦ ମାରୁତ ବହି
ଲିଭାଇଛି ମହାଶ୍ୱାସେ,
ହର୍ଷ ଦୀପ-ଶିଖା ସହସ୍ର ପ୍ରଦେଶେ
କୋଟି କୁଟୀ-ସୌଧାବାସେ ।''

ଏ ପଦରେ ଅଯଥା ପ୍ରଶସ୍ତି ଗାନ ନାହିଁ । ମଧୁବାବୁ ନିର୍ଭୀକଚେତା ଥିଲେ । ସେ ତୋଷାମୋଦକାରୀ ନଥିଲେ । ତେଣୁ ତାଙ୍କର ପୁତ୍ର ଶ୍ରୀ ସୁକାନ୍ତ ରାଓ ଥରେ କ୍ଷୋଭ ପ୍ରକାଶ କରି ଯାହା ଲେଖିଥିଲେ, ତାହା ଯଥାର୍ଥ । ୧୯୪୯ରେ ପ୍ରକାଶିତ ମଧୁସୂଦନ ଗ୍ରନ୍ଥାବଳୀର ଦ୍ୱିତୀୟ ସଂସ୍କରଣର ଭୂମିକାରେ ସେ ଲେଖିଥିଲେ, ''ଥରେ ମଧୁସୂଦନଙ୍କ ଜନ୍ମତିଥିରେ ଜଣେ ନବୀନ ଲେଖକ କହିଥିଲେ, ମଧୁସୂଦନ ସରକାରୀ ଚାକର ଥିବାରୁ 'ମହାଦେବୀ ଭିକ୍ଟୋରିୟା' ପଦ୍ୟ ଲେଖିଥିଲେ— ଏ ଯୁଗରେ ଏହାର ଆଦର କିପରି ହେବ ? ମହାତ୍ମାଜୀଙ୍କର ତିରୋଧାନରେ ମୋର ମନେହୋଇଥିଲା...'' ଏତିକି ଲେଖିସାରି ସୁକାନ୍ତବାବୁ ଉପରେ ଉଦ୍ଧାର କରାଯାଇଥିବା ପଦଟି ଉଲ୍ଲେଖ କରିଅଛନ୍ତି । ବାସ୍ତବରେ 'ମହାଦେବୀ ଭିକ୍ଟୋରିୟା' କବିତାରେ ଯେ ଚିରନ୍ତନ ସାହିତ୍ୟିକ ମୂଲ୍ୟ ନାହିଁ, ତାହା ନୁହେଁ । ଏ ପ୍ରସଙ୍ଗରେ କବିଗୁରୁ ରବୀନ୍ଦ୍ରନାଥଙ୍କ ଉଦାହରଣ ଦିଆଯାଇ ପାରେ । ସମସାମୟିକ ଓ ନିତାନ୍ତ ସାମୟିକ ଘଟନା ତାଙ୍କ ଲେଖନୀରେ କିପରି ବିସ୍ମୟକର ରୂପାନ୍ତର ଲାଭ କରି ଚିରନ୍ତନ ସାହିତ୍ୟ ସମ୍ପଦରେ ପରିଣତ ହୋଇଅଛି, ତାହାର ବହୁ ଜ୍ୱଳନ୍ତ

ନିଦର୍ଶନ ଅଛି । ମଧୁସୂଦନଙ୍କ କବିତାଟି ତାଙ୍କର ଗଭୀର ବେଦନାବୋଧରୁ ଉତ୍ସାରିତ । ତେଣୁ ଏହାର ସାର୍ବକାଳିକ ମୂଲ୍ୟ କେହି ଅସ୍ୱୀକାର କରିପାରିବେ ନାହିଁ ।

ସେ ଯାହାହେଉ, ଭିକ୍‌ଟୋରିଆ ହାଇସ୍କୁଲ କ୍ରମଶଃ ଉନ୍ନତି ପଥରେ ଅଗ୍ରସର ହେଲା । ଉପଯୁକ୍ତ ଶିକ୍ଷକ ନିଯୁକ୍ତ ହେଲେ । ମଧୁସୂଦନ ବହୁ ଅଭାବଗ୍ରସ୍ତ ଛାତ୍ରଙ୍କୁ ବିନା ଦରମା କିମ୍ବା ଅଧା ଦରମାରେ ଏହି ସ୍କୁଲରେ ସ୍ଥାନ ଦେବାରୁ ସ୍କୁଲର ଆର୍ଥିକ କ୍ଷତି ଘଟିଲା । ସ୍ୱାଧୀନଚେତା ମଧୁସୂଦନ ଅନେକ ସ୍ଥଳରେ ଶିକ୍ଷାବିଭାଗର ଧରାବନ୍ଧା ନିୟମ ଲଙ୍ଘନ କରି ତାଙ୍କ ନିଜ ଆଦର୍ଶ ଓ ପରିକଳ୍ପନାନୁସାରେ ଏହି ଅନୁଷ୍ଠାନକୁ ପରିଚାଳିତ କରୁଥିବାରୁ କାହାରି କାହାରି ମନରେ ସେତେବେଳେ ସନ୍ଦେହ ହେଉଥିଲା– ଏହି ଅନୁଷ୍ଠାନ ବିଶ୍ୱବିଦ୍ୟାଳୟର ଅନୁମୋଦନ ଲାଭ କରିବ ନାହିଁ ଏବଂ ଛାତ୍ରମାନେ ପ୍ରବେଶିକା ପରୀକ୍ଷା ଦେଇପାରିବେ ନାହିଁ । କିନ୍ତୁ ଏ ସନ୍ଦେହ ଶେଷରେ ଭିତ୍ତିହୀନ ବୋଲି ପ୍ରମାଣିତ ହେଲା । ସରକାରୀ ସାହାଯ୍ୟ ମଧ୍ୟ ନିଆଯାଉନଥିଲା । ମଧୁସୂଦନ ଆମରଣ ସ୍କୁଲର ପରିଚାଳନା ସମିତିର ସଭାପତି ଥିଲେ । ଏହାର ଆର୍ଥିକ ଅବସ୍ଥା ନେଇ ଅନ୍ୟାନ୍ୟ ସଭ୍ୟମାନଙ୍କ ସହିତ ମଧୁସୂଦନଙ୍କର ସମୟେ ସମୟେ ମତଦ୍ୱୈଧ ଘଟୁଥିଲା । ସେମାନେ କହୁଥିଲେ ଅବୈତନିକ ଛାତ୍ରମାନଙ୍କ ସଂଖ୍ୟା କମାଇଦିଆଯାଉ; କିନ୍ତୁ ମଧୁସୂଦନ ଏ ନୀତିର ଘୋର ବିରୋଧୀ ଥିଲେ । ଶିକ୍ଷକମାନେ ସେତେବେଳେ ଅବଶ୍ୟ ଖୁବ୍ ଅଳ୍ପ ବେତନରେ କାର୍ଯ୍ୟ କରୁଥିଲେ । ଛାତ୍ରଦତ୍ତ ବେତନ ମାସକୁ ମାତ୍ର ଟ.୨୦୦ ଆଦାୟ ହେଉଥିଲା । ବାମଣ୍ଡାର ମହାରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମାସକୁ ଚାଳିଶିଟି ଟଙ୍କା ସାହାଯ୍ୟ କରୁଥିଲେ । ତଥାପି ଯଥାସମୟରେ ଶିକ୍ଷକମାନଙ୍କୁ ପୂରା ବେତନ ଦିଆଯାଇ ପାରୁନଥିଲା । ମଧୁସୂଦନ ନିଜର ମାସିକ ଦରମା ଟ.୨୦୦ରୁ ପ୍ରାୟ ପ୍ରତି ମାସରେ ଟ.୫୦ ସ୍କୁଲକୁ ସାହାଯ୍ୟ କରୁଥିଲେ । ଏହି ଘୋର ଆର୍ଥିକ ସଙ୍କଟ ସମୟରେ ତାଙ୍କୁ କେହି କେହି ଲୋକ ପରାମର୍ଶ ଦେଲେ– ଛାତ୍ରଦତ୍ତ ବେତନ ବଢ଼ାଇଦିଆଯାଉ ଏବଂ ତହିଁ ସଙ୍ଗେ ସଙ୍ଗେ ସରକାରୀ ସାହାଯ୍ୟ ନିମନ୍ତେ ଆବେଦନ କରାଯାଉ; କିନ୍ତୁ ଇତିମଧ୍ୟରୁ କୌଣସିଟିରେ ମଧୁସୂଦନ ଏକମତ ହେଲେ ନାହିଁ । ବରଂ ସ୍ୱାବଲମ୍ବନଶୀଳତାରେ ପୂର୍ଣ୍ଣ ଆସ୍ଥାବାନ୍ ମଧୁସୂଦନ ସେମାନଙ୍କୁ ନିର୍ଭୀକ ଭାବରେ ଜବାବଦେଇଥିଲେ, ‘‘ସାମାନ୍ୟ ଅର୍ଥଲୋଭରେ ସମସ୍ତ ସ୍ୱାଧିକାର ଓ ସ୍ୱାଧୀନତା ବିସର୍ଜନ କରିବା ବୁଦ୍ଧିମତ୍ତାର କାର୍ଯ୍ୟ ନୁହେଁ ।’’

୧୯୧୨-୧୯୧୩ ମସିହାରେ ସତ୍ୟବାଦୀ ବିଦ୍ୟାଳୟ ପ୍ରତିଷ୍ଠା କଲାବେଳେ ଶିକ୍ଷା ବିଷୟରେ ଉଦାର ଓ ସ୍ୱାଧୀନ ଦୃଷ୍ଟିଭଙ୍ଗୀସମ୍ପନ୍ନ ଗୋପବନ୍ଧୁ ମଧ୍ୟ ଦିନେ ଏହିପରି ନିର୍ଭୀକବାଣୀ ଉଚ୍ଚାରଣ କରି ସରକାରୀ ସାହାଯ୍ୟକୁ ଉପେକ୍ଷା କରିଦେଇଥିଲେ ।

୧୯୦୨ ଖ୍ରୀଷ୍ଟାବ୍ଦରେ ପ୍ରବେଶିକା ପରୀକ୍ଷା ଦେବା ନିମନ୍ତେ ଏହି ସ୍କୁଲରୁ ଯେ କେତେଜଣ ଛାତ୍ରଙ୍କୁ ପଠାଯାଇଥିଲା, ସେମାନଙ୍କ ମଧ୍ୟରୁ ଛଅଜଣ ପ୍ରଶଂସାର ସହିତ

ଉତ୍ତୀର୍ଣ୍ଣ ହୋଇଥିଲେ । ମଧୁସୂଦନଙ୍କ ଦ୍ୱିତୀୟ ପୁତ୍ର ପ୍ରଶାନ୍ତ ରାଓ ସେମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ ।

ସ୍କୁଲର ସ୍ୱତନ୍ତ୍ର ଗୃହ ନଥିଲା । ୧୯୦୯ରେ ମଧୁସୂଦନ ଚାକିରିରୁ ଅବସର ଗ୍ରହଣ କରି ସ୍କୁଲପାଇଁ ଗୋଟିଏ ସ୍ୱତନ୍ତ୍ର ପକ୍‌କା ଘର ନିର୍ମାଣ ସକାଶେ ଚାନ୍ଦା ଆଦାୟ କରିବା ନିମନ୍ତେ ପୂର୍ଣ୍ଣପ୍ରାଣରେ ଲାଗିପଡ଼ିଲେ । ସମ୍ବଲପୁରଠାରୁ ଗଞ୍ଜାମ ପର୍ଯ୍ୟନ୍ତ ରୁଗ୍‌ଣ ଓ ଜରାଜୀର୍ଣ୍ଣ ଶରୀରରେ ଭ୍ରମଣକରି ସେ ଟ.୧୪୦୦୦ ସଂଗ୍ରହ କଲେ । ଗଡ଼ଜାତର ରାଜାମାନେ ମଧ୍ୟ କିଛି କିଛି ସାହାଯ୍ୟ କରିଥିଲେ । ଏହିଭଳି ମୋଟ ଟ.୧୯୦୦୦ ବ୍ୟୟରେ କାଜିବଜାରରେ ସ୍କୁଲ ନିମନ୍ତେ ଗୋଟିଏ କୋଠାଘର ନିର୍ମାଣ କରାଗଲା ।

ଅବନ୍ତୀ ଦେବୀ ଏହି ନୂତନ ଗୃହର ଉଦ୍‌ଘାଟନ ଉତ୍ସବ ସମ୍ବନ୍ଧରେ ଲେଖିଅଛନ୍ତି, ''୧୯୧୧ ଖ୍ରୀଷ୍ଟାବ୍ଦ ଫେବୃଆରୀ ୨ ତାରିଖରେ ସ୍କୁଲ ଗୃହର ଦ୍ୱାରୋଦ୍‌ଘାଟନ କାର୍ଯ୍ୟ ତତ୍‌କାଳୀନ କମିସନର ଲେଭିଂ (Levinge) ସାହେବଙ୍କଦ୍ୱାରା ସମ୍ପାଦିତ ହୁଏ । ସେଦିନ ଭକ୍ତ-ବିଶ୍ୱାସୀ ବ୍ରହ୍ମଙ୍କଠାରେ ଚିରନିର୍ଭରଶୀଳ ମଧୁସୂଦନଙ୍କ କଣ୍ଠରୁ ଯେଉଁ ପ୍ରାର୍ଥନାବାଣୀ ନିଃସୃତ ହୋଇଥିଲା ତାହା ଉପସ୍ଥିତ ଜନଗଣର ଅନ୍ତରକୁ ଦ୍ରବିତ କରି ସ୍କୁଲ ପ୍ରତି ସ୍ଥାୟୀ ସହାନୁଭୂତି ଜାଗରିତ କରିଥିଲା ।''

ବର୍ତ୍ତମାନ ସେହି ଟାଉନ୍ ଭିକ୍‌ଟୋରିୟା ହାଇସ୍କୁଲର ନାମ 'ଭକ୍ତକବି ମଧୁସୂଦନ ବିଦ୍ୟାପୀଠ' ହୋଇଅଛି ।

—

# ତ୍ରୟୋଦଶ ଅଧ୍ୟାୟ

## ବୈକୁଣ୍ଠ ସମାନ ଆହା ଅଟେ ସେହି ଘର

### [କ]

୧୮୮୦-୮୧ ମଧ୍ୟରେ ଲିଖିତ ଶିଶୁପାଠ୍ୟ 'ଛାନ୍ଦମାଳା'– ପ୍ରଥମ ଖଣ୍ଡରେ ମଧୁସୂଦନ ଶିଶୁମାନଙ୍କୁ ଉପଦେଶ ଦେଇ ଲେଖିଥିଲେ–

''ପିତାମାତା ପରି ଆଉ କେ ଅଛି ସଂସାରେ,
ଧନ୍ୟ ସେ ଯେ ଦିଏ ପ୍ରାଣ ତାଙ୍କରି ସେବାରେ ।
ତାଙ୍କ ସ୍ନେହ ଉପକାର ଅତୁଲ୍ୟ ଜଗତେ,
ଭକ୍ତିଭରେ ଶିଶୁଗଣ ସୁମର ସନ୍ତତେ ।''

X X X

''ବୈକୁଣ୍ଠ ସମାନ ଆହା ଅଟେ ସେହି ଘର,
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।''

୧୯୦୮-୧୨ ମଧ୍ୟରେ ପରିଣତ ବୟସରେ ଲିଖିତ 'ବିବିଧ କବିତା' ଅନ୍ତର୍ଗତ 'ନୀତିରତ୍ନମାଳା'ରେ ମଧ୍ୟ ସେହି ନୀତି-ଉପଦେଶର ମଧୁର ମୂର୍ଚ୍ଛନା ରହିଅଛି । ସେଥିରେ ବାଳକବାଳିକାମାନଙ୍କୁ ଉପଦେଶ ଛଳରେ ଉଦ୍‌ବୋଦନ ଦିଆଯାଇ ଲେଖାଯାଇଅଛି–

''ପ୍ରତ୍ୟକ୍ଷ ଦେବତା ବୋଲି ମଣିବ ହେ ଜନନୀ ଜନକେ,
କରିବ ଦୁହିଁଙ୍କ ସେବା ପ୍ରାଣପଣେ ବାଳିକା ବାଳକେ ।
ଶୁଣାଇବ ମୃଦୁବାଣୀ ଆଚରିବ ପ୍ରିୟ ଅନୁକ୍ଷଣ,
ସୁପୁତ୍ର ସୁକନ୍ୟା ହୋଇ ସୁପବିତ୍ର କର ହେ ଜୀବନ ।
ଅଟନ୍ତି ପରମଗୁରୁ ପିତାମାତା ଘେନ ଏହି ଦୀକ୍ଷା,
ଆକାଶହୁଁ ବଡ଼ ପିତା, ମାତା ବଡ଼ ପୃଥିବୀ ଅପେକ୍ଷା ।''

ମଧୁସୂଦନ ପିତାମାତାଙ୍କର ଆଦର୍ଶ ପୁତ୍ର ଥିଲେ ଏବଂ ବାଳକବାଳିକାମାନଙ୍କୁ ସେ ଯେଉଁ ନୀତି ଉପଦେଶ ଦେଇଯାଇଅଛନ୍ତି, ତାହା ସେ ତାଙ୍କ ଜୀବନରେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ସେ ତାଙ୍କ ଜନକ-ଜନନୀଙ୍କର ଯେପରି ସୁଶୀଳ ଓ ସୁବାଧ୍ୟ ସନ୍ତାନ ଥିଲେ, ନିଜର ପୁତ୍ରକନ୍ୟାମାନଙ୍କୁ ସେହି ଆଦର୍ଶରେ ଗଢ଼ିବାକୁ ସତତ

ସଚେଷ୍ଟ ଥିଲେ । ସ୍ୱଦେଶକୁ ସ୍ୱର୍ଗ ସମାନ ମନେକରି ତା'ର ମଙ୍ଗଳସାଧନ କରିବା ନିମନ୍ତେ ସେ ଯେପରି ତତ୍ପର ଥିଲେ, ସ୍ୱଗୃହକୁ ମଧ୍ୟ ସେହିପରି ସ୍ୱର୍ଗ ସମାନ ମନେକରି 'ଗୃହହିତ'ରେ ମନପ୍ରାଣ ଢାଳିଦେଇଥିଲେ । ଶିବର ଉପାସକ ମଧୁସୂଦନଙ୍କର ଜୀବନର ମର୍ମବାଣୀ ଥିଲା—

''ସ୍ୱଦେଶ ସ୍ୱଗୃହ ଅଟେ ସ୍ୱରଗ ସମାନ,
ଦେଶହିତେ ଗୃହହିତେ ଲଗାଇବି ପ୍ରାଣ ।''

ତେଣୁ ମଧୁସୂଦନଙ୍କର ପାରିବାରିକ ଜୀବନ ଯେ ସୁଖମୟ ହେବ, ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ଆଜିକାଲି ସନ୍ତାନମାନେ ଆମ୍ଭମାନଙ୍କ ପରିବାର ମଧ୍ୟରେ ଯେପରି କୌଣସି ଉଚ୍ଚ ଆଦର୍ଶ ଦେଖିବାକୁ ପାଉନଥିବାରୁ ଘର ଭିତରେ ସେମାନେ ଯେପରି ନାନା ଅବାଞ୍ଛନୀୟ ପରିସ୍ଥିତି ସୃଷ୍ଟିକରୁଅଛନ୍ତି, ଘରବାହାରେ ମଧ୍ୟ ସେହିପରି ଦୁର୍ବିନୀତତା ଓ ଉଚ୍ଛୃଙ୍ଖଳତାର ପରିଚୟ ଦେଉଅଛନ୍ତି । ପୁତ୍ରକନ୍ୟାମାନଙ୍କ ପ୍ରତି ମଧୁସୂଦନ ବଜ୍ରଠାରୁ ଅଧିକ କଠୋର ଏବଂ କୁସୁମଠାରୁ ଅଧିକ କୋମଳ ଥିଲେ । ଶୈଶବରେ ପାଞ୍ଚବର୍ଷ ବୟସବେଳେ ସେ ମାତୃଶୂନ୍ୟ ହୋଇଥିଲେ ମଧ୍ୟ ଏପରି ଦିନ ନଥିଲା, ଯେଉଁଦିନ ମଧୁସୂଦନ ଅବସରବେଳେ ଜନନୀଙ୍କ ମଧୁମୟ ସ୍ମୃତିରେ ବିହ୍ୱଳ ଓ କାତର ହୋଇ ଅଶ୍ରୁ ବିସର୍ଜନ କରୁନଥିଲେ । ପ୍ରତିବର୍ଷ ଜନନୀ ଅମ୍ବିକା ବାଈଙ୍କର ମୃତ୍ୟୁଦିବସଟି ମଧୁସୂଦନ ଅତି ଭକ୍ତିନମ୍ର ଚିତ୍ତରେ ପାଳନ କରୁଥିଲେ । ସେ ଦୀନଦରିଦ୍ରମାନଙ୍କୁ ସେଦିନ ଅନ୍ନବସ୍ତ୍ର ବିତରଣ କରୁଥିଲେ । ସେଦିନ ମଧୁବାବୁ ଆକୁଳପ୍ରାଣ ଓ ସାଶ୍ରୁଲୋଚନରେ ସ୍ୱର୍ଗତା ଜନନୀଙ୍କ ଉଦ୍ଦେଶ୍ୟରେ ଉପାସନା କରନ୍ତି । ସେଦିନର ମଧୁସୂଦନଙ୍କ ପ୍ରଶାନ୍ତ ଉଜ୍ଜ୍ୱଳ ମୁଖଚ୍ଛବି ତାଙ୍କର ପୁତ୍ରକନ୍ୟାଗଣ ବିସ୍ମୟରେ ଅବାକ୍ ହୋଇ ନିରୀକ୍ଷଣ କରୁଥିଲେ । ଅବନ୍ତୀ ଦେବୀ କହନ୍ତି, ''ମାତୃଭକ୍ତ ସନ୍ତାନମାନଙ୍କର ସେଦିନର ସେହି ପବିତ୍ର ସୁନ୍ଦର ପୁଣ୍ୟାଭା ମୁଖଚ୍ଛବି ଏପର୍ଯ୍ୟନ୍ତ ମୋର ସ୍ମୃତି-ପଟରେ ଉଜ୍ଜ୍ୱଳ ହୋଇ ରହିଛି ।'' ମଧୁସୂଦନଙ୍କ ଅଗାଧ ମାତୃଭକ୍ତିର ଅକ୍ଷୟ ସ୍ମୃତି-ବୈଭବ ବହନକରି ବାତ୍ସଲ୍ୟରସବ୍ୟଞ୍ଜକ ଓଡ଼ିଆ କବିତାରେ ଚିର ଅମ୍ଳାନ ସ୍ଥାନ ଲାଭ କରି ଦେଦୀପ୍ୟମାନ ହୋଇ ରହିଛି ତାଙ୍କର 'ମୋ ଜନନୀ' କବିତା । ପାଞ୍ଚବର୍ଷ ବୟସର ଅସ୍ପଷ୍ଟ ଶୈଶବ-ସ୍ମୃତିକୁ ଅବଲମ୍ବନ କରି ରଚିତ ଏପରି ସର୍ବଜନଚିତ୍ତସ୍ପର୍ଶୀ କବିତା ବିଶ୍ୱ-ସାହିତ୍ୟରେ ବା ଆଉ କେତେ ଜଣ କବି ରଚନା କରି ସ୍ଥାୟୀ ଯଶ ଲାଭ କରିଅଛନ୍ତି ? ତାଙ୍କର ମାତୃବତ୍ସଳ ହୃଦୟରେ ସେହି ଜନନୀ-ମୂର୍ତ୍ତି ଜଳ-ସ୍ଥଳ-ବ୍ୟୋମପ୍ରସାରୀ ବିଶ୍ୱମୂର୍ତ୍ତିରେ ରୂପାନ୍ତରିତ ହୋଇଅଛି— ସସୀମ ଅସୀମରେ ଦିଗନ୍ତ ବିଚ୍ଛୁରିତ ହୋଇଯାଇଛି । ମାତୃସ୍ନେହ ଜଗଜ୍ଜନନୀଙ୍କ ଭକ୍ତିରସାମୃତରେ ପରିଣତ ହୋଇଅଛି ।

ମଧୁସୂଦନଙ୍କର ପିତୃଭକ୍ତି ମଧ୍ୟ ଥିଲା ଅତୁଳନୀୟ । ଭାଗୀରଥି ରାଓ ପ୍ରାୟ ୮୨ ବର୍ଷ ଜୀବିତ ଥିଲେ । ତାଙ୍କର ମୃତ୍ୟୁ ହୁଏ ୧୯୦୯ରେ, ମଧୁସୂଦଙ୍କର ମୃତ୍ୟୁର ତିନିବର୍ଷ ପୂର୍ବରୁ । ସେ କଟକରେ ନରହି ଅଧିକାଂଶ ସମୟ ପୁରୀରେ ରହୁଥିଲେ । ଧର୍ମପ୍ରାଣ ବ୍ୟକ୍ତି ଥିବାରୁ ଜଗନ୍ନାଥଧାମରେ ରହିବାକୁ ତାଙ୍କର ପ୍ରବଳ ଇଚ୍ଛାଥିଲା । କିନ୍ତୁ ମଝିରେ ମଝିରେ ସେ କଟକ ଆସି ପୁଅ, ବୋହୂ, ନାତି, ନାତୁଣୀମାନଙ୍କୁ ଦେଖିଯା'ନ୍ତି । କଟକଘରକୁ ଆସିଲେ ମଧୁସୂଦନ ତାଙ୍କର ସେବା-ଚର୍ଚ୍ଚାରେ ଦିନ ରାତି ଲାଗିଥା'ନ୍ତି । ସେ ଟିକିଏ ରକ୍ଷଣଶୀଳ ଲୋକ ଥିଲେ । ପ୍ରତିଦିନ ସକାଳୁ ଉଠି, ସ୍ନାନ ସାରି, ପୂଜାରେ ବସିବେ । ପୂଜା ଶେଷ ନହେଲେ ସେ ଜଳ ସ୍ପର୍ଶ କରୁନଥିଲେ । ଏହି ଦୈନନ୍ଦିନ କାର୍ଯ୍ୟରେ ଟିକିଏ ବ୍ୟାଘାତ ଜନ୍ମିଲେ, ସେ ବିରକ୍ତି ପ୍ରକାଶ କରୁଥିଲେ । ତେଣୁ ପୁତ୍ରକନ୍ୟାମାନେ ସମସ୍ତେ ଭାଗୀରଥିଙ୍କର ଯେପରି ତିଳେମାତ୍ର ଅସୁବିଧା ନହୁଏ, ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥା'ନ୍ତି । ମଧୁସୂଦନଙ୍କ ଘରେ ସେତେବେଳେ ବହୁତ ଚାକରବାକର ଥିଲେ । କିନ୍ତୁ ପିତାଙ୍କ କାର୍ଯ୍ୟସବୁ ମଧୁସୂଦନ ଯଥାସମ୍ଭବ ନିଜେ ନିଜ ହାତରେ କରୁଥିଲେ । ପିତାଙ୍କ ପାଦରେ ବେଦନା ହେଲେ, ସେ ନିଜେ ତେଲଗିନା ନେଇ ତାଙ୍କ ପାଦସେବାରେ ଲାଗିପଡୁଥିଲେ । ମଧୁସୂଦନଙ୍କର ଏହି ଅକୁଣ୍ଠ ସେବାପରାୟଣତା ଦେଖି ଭାଗୀରଥି ପରମ ପରିତୋଷ ଲାଭକରୁଥିଲେ ।

୧୮୯୬ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ 'ଛାନ୍ଦମାଳା' ନାମକ ତାହାଙ୍କ କବିତା ପୁସ୍ତକର ଦ୍ୱିତୀୟ ଖଣ୍ଡ ସେ ପିତୃଦେବଙ୍କ ନାମରେ ଉତ୍ସର୍ଗ କରିଥିଲେ । ଉତ୍ସର୍ଗପତ୍ରରେ ସେ ଲେଖିଲେ : "ଏ ପୃଥିବୀରେ ପରମାରାଧ୍ୟ, ପରମତୀର୍ଥରୂପ ଶ୍ରୀ ପିତୃଦେବଙ୍କ ଶ୍ରୀପାଦପଦ୍ମରେ ଏହି କ୍ଷୁଦ୍ରଗ୍ରନ୍ଥ ଭକ୍ତିସହକାରେ ଅର୍ପିତ ହେଲା ।"

କନ୍ୟା ଅବନ୍ତୀ ଦେବୀ ପିତାଙ୍କର ପିତୃଭକ୍ତି ସମ୍ବନ୍ଧରେ ବାଲ୍ୟଜୀବନର ଗୋଟିଏ ସୁନ୍ଦର ଓ ଶିକ୍ଷଣୀୟ ଘଟଣାର ଉଲ୍ଲେଖ କରିଅଛନ୍ତି । ବଡ଼ମାମୁ ନାରାୟଣଜୀ ମାତୃହୀନ ଦୁଇ ଭଣଜାଙ୍କୁ ଭାରି ସ୍ନେହକରୁଥିଲେ । ଥରେ କୌଣସି କାରଣରୁ ତାଙ୍କ ସହିତ ଭାଗୀରଥି ରାଓଙ୍କର ମନାନ୍ତର ହେଲା । ସେ ମଧୁସୂଦନଙ୍କୁ ମାମୁଘରକୁ ଯିବାକୁ ମନା କରିଥିଲେ । ମଧୁସୂଦନଙ୍କ ପ୍ରାଣରେ ଏଥିପାଇଁ ଗଭୀର ଦୁଃଖ ହୋଇଥିଲା, କିନ୍ତୁ ପିତାଙ୍କ ନିଷେଧ ବାକ୍ୟ ସେ ଅମାନ୍ୟ କରିବେ କିପରି ? ଏହି ସମୟରେ ଦିନେ ସେ ପୁରୀ ବଡ଼ଦାଣ୍ଡରେ ଯାଉଥିଲେ, ହଠାତ୍ ମାମୁଙ୍କ ସହିତ ତାଙ୍କର ଦେଖାହେଲା । ମାମୁ ମଧୁସୂଦନଙ୍କୁ ଦେଖିଲାମାତ୍ରକେ ତାଙ୍କୁ ସ୍ନେହରେ ଜାକିପକାଇ 'ତୁ କାହିଁକି ଆମ ଘରକୁ ଯାଉନାହୁଁ' କହି କାନ୍ଦିପକାଇଲେ । ମାମୁଙ୍କ ବୁକୁରେ ମୁଣ୍ଡ ରଖି ଭଣଜା ବି କଇଁକଇଁ ହୋଇ କାନ୍ଦିବାକୁ ଲାଗିଲେ । କିନ୍ତୁ ପିତାଙ୍କ ଆଦେଶ ନପାଇବା ପର୍ଯ୍ୟନ୍ତ ସେ ମାମୁଘରକୁ ଯାଇନଥିଲେ ।

ପିତାଙ୍କର ଶରୀର ଭୟଙ୍କର ଅସୁସ୍ଥ ଥିବାର ସମ୍ବାଦ ପାଇ ମଧୁସୂଦନ ପତ୍ନୀ, କନିଷ୍ଠାକନ୍ୟା ସାନ୍ତ୍ୱନା ଓ ଜ୍ୟେଷ୍ଠା ଭ୍ରାତୃଷ୍ପୁତ୍ରୀ ରେବାଙ୍କୁ ସାଙ୍ଗରେ ନେଇ ପୁରୀ ଯାଇଥିଲେ ଏବଂ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ପିତାଙ୍କର ସେବା ଶୁଶ୍ରୂଷା ଅତି ନିଷ୍ଠାର ସହିତ କରିଥିଲେ । ସେତେବେଳେ ସାନଭାଇ ଜଗନ୍ନାଥ ରାଓ, ବୌଦ ଗଡ଼ଜାତ ରାଜ୍ୟରେ ଦେବାନ କାର୍ଯ୍ୟ କରୁଥିଲେ । ପିତାଙ୍କ ମୃତ୍ୟୁ ସମୟରେ ସେ ପୁରୀକୁ ଆସି ପାରି ନଥିଲେ । ପିତୃବିଚ୍ଛେଦକାତର ମଧୁସୂଦନ ଜଗନ୍ନାଥ ରାଓଙ୍କ ନିକଟକୁ ଏ ସମ୍ପର୍କରେ ଯେଉଁ ଚିଠି ଲେଖିଥିଲେ, ସେଥିରୁ ଜଣାଯାଏ ସାନଭାଇକୁ ମଧୁସୂଦନ କିପରି ନିଜର ପୁଅ ପରି ସ୍ନେହକରୁଥିଲେ । ସଂସ୍କୃତରେ ଗୋଟିଏ କଥା ଅଛି, 'ଜ୍ୟେଷ୍ଠଭ୍ରାତା ସମୋ ପିତୃଃ'— ବଡ଼ଭାଇ ସାନଭାଇ ପ୍ରତି ପିତା ସଦୃଶ । ଏହି ଉକ୍ତିଟି ମଧୁସୂଦନଙ୍କ ଜୀବନରେ ସାର୍ଥକ ହୋଇଥିଲା । ପିତା ଭାଗୀରଥି ରାଓଙ୍କ ଅନ୍ତିମ ମୁହୂର୍ତ୍ତରେ ଗୋଟିଏ କରୁଣ ଚିତ୍ର ଦେବା ପରେ ସେ ଏହି ଚିଠିରେ ଲେଖିଥିଲେ—

"ତୁମେ ସତ୍‌ପୁତ୍ର ହୋଇ ତାଙ୍କର କେତେ ଆକାଙ୍‌କ୍ଷା ପୂର୍ଣ୍ଣ କରିଅଛ । ମୁଁ ସେପରି କିଛି କରିପାରି ନାହିଁ — ତେଣୁ ବ୍ୟାକୁଳ ହୃଦୟରେ କାନ୍ଦୁଛି । ତେବେ ଏତିକିମାତ୍ର ଭରସା ଯେ ସେହି କ୍ଷମାପୂର୍ଣ୍ଣ ସନ୍ତାନବତ୍ସଳ ପିତା ମୋର ଶତ ଶତ ଅପରାଧ କ୍ଷମାକରିଅଛନ୍ତି ।

ବାବା, ପ୍ରାଣ ଅତ୍ୟନ୍ତ ବ୍ୟାକୁଳ ହେଉଛି । ତୁମକୁ ବୁକୁରେ ଜାକିଧରି 'ବାବା' ବୋଲି ଡାକିବାପାଇଁ କାନ୍ଦୁଛି । ପିତୃଦେବଙ୍କର ଆକାଙ୍‌କ୍ଷା ପୂର୍ଣ୍ଣ କରିବା ନିମନ୍ତେ ଏବଂ ତାଙ୍କର ଦୁଃଖ ଦୂର କରିବା ନିମନ୍ତେ ତୁମେ ଯାହା କରିଛ, ତାହା ସ୍ମରଣ କରି ମୋର ପ୍ରାଣ ତୁମକୁ ଧନ୍ୟ ଧନ୍ୟ କହୁଛି । ତୁମେ ତାଙ୍କର ଶେଷ ବୟସରେ ସତ୍‌ପୁତ୍ରର କାର୍ଯ୍ୟ କରିଅଛ ।"

୧୨ । ୬ । ୧୯୦୯ରେ ମଧୁସୂଦନ ଆଉ ଗୋଟିଏ ଚିଠିରେ ଅନୁଜ ଜଗନ୍ନାଥଙ୍କ ନିକଟକୁ ଲେଖିଥିଲେ—

"ବାବା,

ତୁମର ୪ ତାରିଖର ପତ୍ର ଛଅ ଦିନ ପରେ ପାଇଲି । ଅଶ୍ରୁପୂର୍ଣ୍ଣ ନୟନରେ ସେ ପତ୍ର ପଢ଼ିଲି । ବର୍ତ୍ତମାନ କାନ୍ଦିକାନ୍ଦି ଏ ପତ୍ର ଲେଖୁଛି । ଆମର ଯାହା କିଛି ଉନ୍ନତି, ତା କେବଳ ପିତୃଦେବଙ୍କ ଆଶୀର୍ବାଦରୁ । ଆମ ପିତୃଦେବଙ୍କ ସ୍ନେହ ଅପେକ୍ଷା ସଂସାରରେ କେଉଁ ପିତାର ସ୍ନେହ ଅଧିକ ମଙ୍ଗଳକର ଓ ଆଶୀର୍ବାଦମୟ ? ହାୟ, ହାୟ, ସେ ଯେତେବେଳେ ଦେହଜୀବନରେ ଥିଲେ, ସେତେବେଳେ ତାହାଙ୍କର ମୂଲ୍ୟ ବୁଝିନଥିଲି । ଏତିକିମାତ୍ର ସାନ୍ତ୍ୱନା, ପରଲୋକଗତ ହେଲେ ମଧ ଆମେ ତାଙ୍କଠାରୁ ଦୂରରେ ନାହୁଁ । ପ୍ରଭୁଙ୍କ କୃପାରୁ ତାହାଙ୍କୁ ନିକଟତମ ବୋଲି ଅନୁଭବ କରୁଛୁଁ । ପରମପିତାଙ୍କ ପ୍ରତିନିଧି ପିତୃଦେବ ପରମପିତାଙ୍କ କ୍ରୋଡ଼ରେ ରହି, ଆହା କି ପୁଣ୍ୟ ସ୍ନେହାମୃତମୟ ନୟନରେ

ଆମଆଡ଼କୁ ଚାହିଁରହିଛନ୍ତି । ସେ ଆମ୍ଭମାନଙ୍କ ପ୍ରାଣରେ ଅଛନ୍ତି । ତାହାଙ୍କ ପାଦପଦ୍ମରେ ଆମ୍ଭମାନଙ୍କର ମତି ସ୍ଥିର ରହୁ ।''

ମଧୁସୂଦନଙ୍କ ଦିବ୍ୟାନନ୍ଦରସପରିପୂରିତ ଏହି ଭ୍ରାତୃସ୍ନେହର ନାନା ଦୃଷ୍ଟାନ୍ତ ପ୍ରତ୍ୟକ୍ଷାନୁଭବିନୀ ଅବନ୍ତୀ ଦେବୀ ତାଙ୍କ ଗ୍ରନ୍ଥରେ ଉଲ୍ଲେଖ କରିଅଛନ୍ତି । ବିଦେଶରେ କର୍ମକ୍ଷେତ୍ରରେ ଥିଲାବେଳେ ଜଗନ୍ନାଥଙ୍କୁ ମଧୁସୂଦନ ଥରେ ଗୋଟିଏ ପତ୍ରରେ ଲେଖିଥିଲେ, ''ତୁମେ ଯେ ମୋର କି ସମ୍ପଦ, ତାହା କ'ଣ ମୁଁ ଭାଷାରେ ପ୍ରକାଶ କରିପାରିବି ? ଆଉ, ତୁମେ ମୋତେ କି ଦୃଷ୍ଟିରେ ଦେଖ, ତାହା କ'ଣ ପ୍ରଭୁ ମୋତେ ବୁଝାଇଦେଇନାହାନ୍ତି ? ଆଉ ଅଧିକ କି ଲେଖିବି ? ପରମପିତା ଆମ ଦୁଇଜଣଙ୍କୁ ଏକତ୍ର ଏକନିଷ୍ଠ ଭାବରେ ତାହାଙ୍କ ପାଦପଦ୍ମ ପ୍ରତି ଉନ୍ମୁଖ ରଖନ୍ତୁ, ଏଇ ମାତ୍ର ପ୍ରାର୍ଥନା ।''

ଜଗନ୍ନାଥଙ୍କର ପଚାଶ ବର୍ଷ ବୟସ-ପୂର୍ତ୍ତିର ଜନ୍ମଦିବସ ଉପଲକ୍ଷ୍ୟେ ସେ 'ଆଶୀର୍ବାଦ' ନାମକ ଗୋଟିଏ କବିତା ରଚନା କରିଥିଲେ । ତାହାର କେତେକ ଅଂଶ ତଳେ ଦିଆଗଲା—

''ଅର୍ଦ୍ଧଶତ ବର୍ଷ ଯା'ର ଅଶେଷ ଆଶିଷ,
ବରଷିଛି ତୋ ମସ୍ତକେ, ବତ୍ସ ! ଅହର୍ନିଶ ।
ସ୍ୱରଗର ପ୍ରେମ-ସୁଧା ଧାରା ଅବିରତେ,
ରଖିଛି ଆଦରେ ତୋତେ ଏ ମହା ଜଗତେ,
ସେହି ବିଶ୍ୱଜନନୀର ଶ୍ରୀଚରଣ ପ୍ରାନ୍ତେ,
ଆଜି ତୋ ଜନମ ଦିନେ ବସିଣ ଏକାନ୍ତେ,
ଆକୁଳ ଅଗ୍ରଜ ତୋର କୃତଜ୍ଞ ଅନ୍ତରେ,
ଆଜନ୍ମ ଜୀବନ-ବାର୍ତ୍ତା ସ୍ମରି ଭକ୍ତିଭରେ;
X X X
ଅନନ୍ତ ପ୍ରେମର ମଧୁମୟ ଆଲିଙ୍ଗନେ,
ଅନନ୍ତ ସ୍ନେହର ପୁଣ୍ୟ ଅମୃତ ଚୁମ୍ବନେ,
ସାର୍ଥକ ସଫଳ ଧନ୍ୟ କର ତା ଜୀବନ,
ଶ୍ରୀପଦେ ମାଗଇ ଭିକ୍ଷା ଏ ଅଧମ ଜନ ।''

## (ଖ) ପତ୍ନୀ ପଦ୍ମାବାଈ

ମଧୁସୂଦନଙ୍କ ଦାମ୍ପତ୍ୟ ଜୀବନ ମଧ୍ୟ ଅତ୍ୟନ୍ତ ପବିତ୍ର ଓ ସୁଖମୟ ଥିଲା । ସେ ସେକାଳର ରୀତି ଅନୁସାରେ ବାଳିକାକନ୍ୟା ବିବାହ କରିଥିଲେ । ମଧୁସୂଦନଙ୍କର ବୟସ ସେତେବେଳେ ବାର ଏବଂ ଚମ୍ପାଙ୍କ (ପରେ ପଦ୍ମାବାଈ) ବୟସ ନଅବର୍ଷ ମାତ୍ର ।

ମଧୁସୂଦନ ଥିଲେ ଆଧୁନିକ ଶିକ୍ଷିତ ବ୍ୟକ୍ତି; କିନ୍ତୁ ତାଙ୍କର ପତ୍ନୀ ପଦ୍ମା ଥିଲେ ସଂପୂର୍ଣ୍ଣ ନିରକ୍ଷରା । ନିରକ୍ଷରା ହେଲେ ସୁଦ୍ଧା ସେ ତାଙ୍କର ଅନୁପଯୁକ୍ତା ପତ୍ନୀ ନଥିଲେ । ପ୍ରାଚୀନ ଭାରତୀୟ ନାରୀମାନଙ୍କ ଆଦର୍ଶରେ ସେ ନିଜ ଜୀବନ ଗଠନ କରିଥିଲେ । ମଧୁସୂଦନଙ୍କ ଭାଷାରେ ସେ ଥିଲେ ''ଗୃହେ ସୁଗୃହିଣୀ ସୁପତିବ୍ରତା, ଜୀବନେ ମରଣେ ପତି ଦେବତା ।'' ସେ ସ୍ୱାମୀଙ୍କର ଉପଯୁକ୍ତ ଏବଂ ସାର୍ଥକ ଅର୍ଦ୍ଧାଙ୍ଗିନୀ ହେବାକୁ ଆପ୍ରାଣ ଚେଷ୍ଟା କରି ସାଫଲ୍ୟବତୀ ହୋଇଥିଲେ ।

ସ୍ୱାମୀଙ୍କର କର୍ମସାଧନା ଏବଂ ଧର୍ମସାଧନାରେ ତାଙ୍କର ସକ୍ରିୟ ପୂର୍ଣ୍ଣପ୍ରାଣତା ଥିଲା । ରକ୍ଷଣଶୀଳ ପରିବାରରୁ ଆସିଥିଲେ ମଧ୍ୟ ସ୍ୱାମୀ ଯେତେବେଳେ ବ୍ରାହ୍ମଧର୍ମରେ ଦୀକ୍ଷିତ ହେଲେ, ସେ ସେହି ଧର୍ମର ନୀତି ଅନୁସାରେ ନିଜକୁ ନିୟନ୍ତ୍ରଣ କରିବାରେ କୁଣ୍ଠାବୋଧ କଲେନାହିଁ । ସ୍ୱାମୀଙ୍କ ସହିତ ପଦ୍ମାବାଈଙ୍କର ଥିଲା କ୍ଷୀର-ନୀର କିମ୍ବା କାୟା-ଛାୟା ସମ୍ପର୍କ । ସେ ପତିଙ୍କଠାରୁ ଆଗ୍ରହରେ ଓଡ଼ିଆ ଓ ବଙ୍ଗଳା ଶିକ୍ଷାକରି ଏଇ ଦୁଇଟି ଭାଷାରେ ଚଳନୀୟ ଜ୍ଞାନ ଅର୍ଜନ କରିଥିଲେ । ଭଲ ଭଲ ଓଡ଼ିଆ ଓ ବଙ୍ଗଳା ପୁସ୍ତକ ଅବସର ସମୟରେ ପଢ଼ି ଜ୍ଞାନ ଅର୍ଜନ କରୁଥିଲେ ।

'ବସନ୍ତଗାଥା'ରେ ସନ୍ନିବିଷ୍ଟ 'ଯୌବନର ସ୍ୱପ୍ନ' କବିତାଟି କବିଙ୍କର ପ୍ରଥମ ବାସର-ମିଳନର ମଧୁମୟ ସ୍ମୃତିକୁ ଅବଲମ୍ବନ କରି ରଚିତ । ଏଥିରେ ଯେଉଁ 'ଷୋଡ଼ଶୀ ସୁନ୍ଦରୀ ମୂର୍ତ୍ତି'ର ଅପରୂପ ଲାବଣ୍ୟ ବ୍ୟଞ୍ଜିତ ହୋଇଉଠିଛି, ତାହା ନବବଧୂ ପଦ୍ମାବାଈଙ୍କର । ଜୀବନର ନବୀନ ଯୌବନରେ କବିଙ୍କ ପ୍ରାଣ ଯେତେବେଳେ ନାରୀ-ସଙ୍ଗ-ଲିପ୍‌ସା ନିମନ୍ତେ ଉଦ୍ଦାମ ବ୍ୟାକୁଳତାରେ ଅଧୀର, ପ୍ରେମ-ପିପାସା ଯେତେବେଳେ ଦୁର୍ବାର, ସେହି ବହୁପ୍ରତୀକ୍ଷିତ ଶୁଭଲଗ୍ନରେ ବାସରଗୃହରେ ନିଜ ସମ୍ମୁଖରେ କବି ଦେଖିବାକୁ ପାଇଲେ ଏକ ଷୋଡ଼ଶୀସୁନ୍ଦରୀ ମୂର୍ତ୍ତି । ଏପର୍ଯ୍ୟନ୍ତ ସ୍ୱପ୍ନାତୁର କବି କେବଳ ପ୍ରକୃତିର ଲୀଳାମୟ ସୌନ୍ଦର୍ଯ୍ୟ ସନ୍ଦର୍ଶନ କରି ଏବଂ ତାହା ମଧ୍ୟରେ 'ବିଶ୍ୱମୋହନ ଏବଂ ବିଶ୍ୱମୋହିନୀ'ଙ୍କର ମହାମିଳନର ସ୍ୱପ୍ନ ଦେଖି ଆତ୍ମବିସ୍ମୃତ ହେଉଥିଲେ; କିନ୍ତୁ ବର୍ତ୍ତମାନ ତାଙ୍କରି ସମ୍ମୁଖରେ ଦେଖିବାକୁ ପାଇଲେ—

''ଅମଣ୍ଡନା, ଦୀନବସ୍ତ୍ରେ ମନୋଜ୍ଞ-ମଣ୍ଡନା,
ଅର୍ଦ୍ଧମୁକୁଳିତ ନେତ୍ରୀ, ଲଜ୍ଜା ମୂର୍ତ୍ତିମତୀ;
ନିଜ ପ୍ରାଣେ ଅନୁଭବି ମୋ ପ୍ରାଣକାମନା,
ସ୍ୱରଗରୁ ଆସିଛନ୍ତି ଯେହ୍ନେ ମୋର କତି,
ହୃଦୟର ଲକ୍ଷ୍ମୀ ମୋର ପ୍ରାଣ-ସୀମନ୍ତିନୀ,
ଚିହ୍ନିଲି ନିମେଷେ ସେହି ନୀରବଭାଷିଣୀ ।
ପ୍ରେମାବେଗେ ଧରି ମୁହିଁ ବାହୁର ବେଷ୍ଟନେ

କହିଲି, 'ପରାଣ-ସଖୀ, ଏ ପ୍ରାଣ ତୁମ୍ଭର ।'
ନୀରବେ ଅର୍ପିଲେ ବାଳା ଜୀବନ ଯୌବନେ
ହୃଦୟ-କୁଟୀର-ରାଣୀ ମୋ ପ୍ରାଣ ଦୋସର ।''

ଏହି କବିତାର ଉପଲକ୍ଷ୍ୟ 'ହୃଦୟ-କୁଟୀର-ରାଣୀ' ମଧୁସୂଦନଙ୍କର ସହଧର୍ମିଣୀ ପଦ୍ମାବାଈ । ଏହି 'ହୃଦୟ-କୁଟୀର-ରାଣୀ'ଙ୍କ ସହ ମଧୁସୂଦନ ପରମ ଶାନ୍ତିରେ ସଂସାର-ସାଗରରେ ତାଙ୍କର ଜୀବନ-ତରୀ ଭସାଇ ଦେଇଥିଲେ; କିନ୍ତୁ ପାର୍ଥିବ ସୁଖଶାନ୍ତିରେ ସେ ଭୂମାର ଆନନ୍ଦ ଉପଲବ୍ଧି କରିପାରୁନଥିଲେହେଁ ସେ ଏଥିରେ ସାଧାରଣ ସଂସାରୀ ଲୋକ ପରି ନିତାନ୍ତ ଲିପ୍ତ ନଥିଲେ । ପଦ୍ମପତ୍ର ଉପରେ ଜଳବିନ୍ଦୁ ପରି ତାଙ୍କର ଚିତ୍ତ ସଦାବେଳେ ଉଦାସ ଓ ନିରାସକ୍ତ ଥିଲା । ଏହି ଆଦରିଣୀ ପତ୍ନୀ ଆଠଟି ସନ୍ତାନର ଜନନୀ ହୋଇ ମଧ ଅନ୍ତରାତ୍ମାକୁ ଭଗବଦ୍‌ଭକ୍ତିରେ ନିରନ୍ତର ଉଦ୍‌ଭାସିତ କରିଥିଲେ ଏବଂ ସଂସାରର ପ୍ରପଞ୍ଚ ଓ ଜଞ୍ଜାଳରେ ବୁଡ଼ିରହିନଥିଲେ ମଧ ଗୃହିଣୀର ନାନା କର୍ତ୍ତବ୍ୟରେ କଦାପି ତ୍ରୁଟି କରୁନଥିଲେ । ଏଇମାନଙ୍କୁ ତ ରାଧାନାଥଙ୍କ ଭାଷାରେ କହିବାକୁ ଇଚ୍ଛା ହୁଏ—

''ସଂସାରେ ଥାଇ ମୁଁ ସଦା ଉଦାସୀନ, ଉଦାସୀନ ପ୍ରାୟେ କଟାଇଲି ଦିନ ।''

ଏହି ନିରାସକ୍ତ ନିର୍ଲିପ୍ତତାହିଁ ମଧୁସୂଦନଙ୍କୁ 'ଭକ୍ତକବି'ରେ ପରିଣତ କରିଥିଲା ଏବଂ ଅଷ୍ଟସନ୍ତାନର ଜନନୀଙ୍କୁ ଆଦର୍ଶ ସହଧର୍ମିଣୀରେ ରୂପାନ୍ତରିତ କରିଥିଲା, କାଚ ସଂସ୍ପର୍ଶ ପ୍ରଭାବରେ କାଞ୍ଚନର ଦୀପ୍ତି ଧାରଣ କରିଥିଲା ।

ମଧୁସୂଦନଙ୍କ ମୃତ୍ୟୁ ପୂର୍ବରୁ ପଦ୍ମାବାଈ କଠିନ ଚକ୍ଷୁରୋଗରେ ଆକ୍ରାନ୍ତ ହୋଇଥିଲେ । ସେ ପ୍ରଥମେ ଗୋଟିଏ ଚକ୍ଷୁ ହରାଇଲେ । ପୁଣି କେତେବର୍ଷ ପରେ ଦ୍ୱିତୀୟ ଚକ୍ଷୁଟି ଗଲା । ଦୃଷ୍ଟିଶକ୍ତିଶୂନ୍ୟା ହୋଇ ତାଙ୍କୁ ପତିଙ୍କ ବିୟୋଗ ପରେ ଆହୁରି ସୁଦୀର୍ଘ ୨୩ବର୍ଷ ବଞ୍ଚି ରହିବାକୁ ପଡ଼ିଥିଲା । ଏହି ଚକ୍ଷୁହୀନ ଅବସ୍ଥାରେ ୧୯୩୫ ଖ୍ରୀଷ୍ଟାବ୍ଦ ଡିସେମ୍ବର ୨୩ ତାରିଖରେ ପଦ୍ମାବାଈ ପରଲୋକ ଗମନ କଲେ ।

## (ଗ) ଦୈନନ୍ଦିନ ଜୀବନ-ଯାତ୍ରା

ମଧୁସୂଦନଙ୍କ ଜୀବନ ଯେପରି ପବିତ୍ର ଓ ସାଧନାମୟ, ତାଙ୍କର ଦୈନନ୍ଦିନ କର୍ମ-ସୂଚୀ ସେହିପରି ସୁଚିନ୍ତିତ ଓ ଶୃଙ୍ଖଳିତ ଥିଲା । ସବୁ କାମ ତାଙ୍କର ନିୟମରେ ବନ୍ଧା । ସେ ନିୟମ ଏପଟ ସେପଟ ହେବାର ଉପାୟନଥିଲା । ଜୀବନଟିକୁ ସେ ଚଳାଉଥିଲେ ଠିକ୍ ଘଣ୍ଟାର କଣ୍ଟା ପରି । 'ଏ ଜୀବନ ନୁହେଁ ବୃଥା ଖେଳା'— ଜୀବନର ଏ ମୂଲ୍ୟବୋଧରେ ତାଙ୍କର ଗଭୀର ଆସ୍ଥା ଥିଲା । ତେଣୁ ରାଧାନାଥଙ୍କ ଜୀବନ-ଦର୍ଶନ ସହିତ କୌଣସି କୌଣସି କ୍ଷେତ୍ରରେ ତାଙ୍କର ଜୀବନ-ବେଦର ବୈସାଦୃଶ୍ୟ ଥିଲେ ମଧ, ସେ 'କୈଶୋର ଗୁରୁ' ଓ 'ଯୌବନ-ସଖା' ରାଧାନାଥଙ୍କର ନିମ୍ନୋକ୍ତ ବାଣୀ ସହିତ ଏକାତ୍ମ ଥିଲେ—

''ହସିଖେଳି ଯେହ୍ନ ଗମନ୍ତି ସମୟ, ଜୀବନ ମଣନ୍ତି ମହୋତ୍ସବମୟ,
ଛାର ଭାଗ୍ୟ ମୋର ପିହିତ ପାଷାଣେ, ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ ।''

ତେଣୁ ସଂସାର ସୃଷ୍ଟିକୁ ସେ ଆନନ୍ଦମୟ ଚକ୍ଷୁରେ ଦେଖୁଥିଲେ ମଧ ମନୁଷ୍ୟ-ଜୀବନକୁ ସ୍ୱପ୍ନ-ବିଳାସ କିମ୍ବା ମହାମହୋତ୍ସବମୟ ବୋଲି ମନେକରୁନଥିଲେ ।

ମଧୁସୂଦନ ପ୍ରତ୍ୟହ ବଡ଼ିଭୋରରୁ ଉଠୁଥିଲେ । ସୂର୍ଯ୍ୟୋଦୟ ପରେ ଶେଯରେ ପଡ଼ିରହିବା ତାଙ୍କର ପରିବାରର ଲୋକେ କେବେ ତାଙ୍କୁ ଦେଖିନାହାନ୍ତି । ବ୍ରାହ୍ମମୁହୂର୍ତ୍ତରେ ଶଯ୍ୟା ତ୍ୟାଗକରି ଭଗବତ୍ ପ୍ରାର୍ଥନା କରିବା ତାଙ୍କର ଆମରଣ ଅଭ୍ୟାସ ଥିଲା । ମଧୁସୂଦନ ଭକ୍ତିତଦ୍‌ଗତକଣ୍ଠରେ ଯେତେବେଳେ ପ୍ରଭାତ ଉପାସନା ଆରମ୍ଭ କରିଦିଅନ୍ତି—

(୧) ଜାଗ ସକଳେ ଏବେ, ଅମୃତର ଅଧିକାରୀ,
ନୟନ ଫେଡ଼ିଣ ଦେଖ, କରୁଣା-ନିଧାନ, ପାପତାପହାରୀ ।

(୨) ଜଗତମୋହିନୀ ଉଷା ଆଗତ ଅବନୀ ତଳେ,
ନୟନ ମେଲରେ ମନ, ଜୟ ଜଗଦୀଶ ହରେ ।

(୩) ଅୟି ସୁଖମୟୀ ଉଷେ, କେ ତୁମକୁ ନିର୍ମାଣିଲା,
ବାଳାର୍କ ସିନ୍ଦୂରବିନ୍ଦୁ କେ ତୁମର ଭାଲେ ଦେଲା—

ସେତେବେଳେ ସମଗ୍ର ପରିବାର ମଧ୍ୟରେ ଯେପରି ଦିବ୍ୟାନନ୍ଦର ଅମୃତ-ସ୍ରୋତ ପ୍ରବାହିତ ହୋଇଯାଏ, ବିଭୁଙ୍କର ଅପାର ମହିମାଗାନରେ ନିର୍ଜନ ନିସ୍ତବ୍ଧ ନିକେତନଟି ମୁଖରିତ ହୋଇଉଠେ । ପ୍ରତ୍ୟେକଙ୍କ ପ୍ରାଣରେ ନବଜାଗରଣର ସ୍ପନ୍ଦନ ଅନୁଭୂତ ହୁଏ । ସମସ୍ତେ କର୍ମ-ଚଞ୍ଚଳ ହୋଇଉଠନ୍ତି ।

ପ୍ରାତରୁପାସନା ପରେ ତୈଳମର୍ଦ୍ଦନ ଓ ସ୍ନାନ । ସ୍ନାନାନ୍ତେ ଟିକିଏ ଅଦାଲବଣ ସେବନ । ସ୍ନାନ ପରେ ପାରିବାରିକ ଉପାସନା । ସେ ମନରୁ ଉପାସନାସଙ୍ଗୀତ ରଚନା କରି ଏକତାରା ସାହାଯ୍ୟରେ ତାହା ଗାନ କଲା ପରେ ପୁତ୍ରକନ୍ୟାଗଣ ମିଳିତ କଣ୍ଠରେ ତାଙ୍କ ଉପାସନାର ଅନୁଧାବନ କରନ୍ତି । କେହି କେହି ମଧ ଏହି ସଙ୍ଗୀତକୁ ଲେଖିରଖନ୍ତି ।

ଉପାସନା ପରେ କିଞ୍ଚିତ୍ ଜଳଯୋଗର ବ୍ୟବସ୍ଥା । ମଧୁସୂଦନଙ୍କ ଖାଦ୍ୟପେୟ ଓ ପୋଷାକ-ପରିଚ୍ଛଦ ଅତ୍ୟନ୍ତ ସରଳ ଓ ନିରାଡ଼ମ୍ବର ଥିଲା । ସେ ନିରାମିଷାଶୀ ଥିଲେ । ସେତେବେଳେ ବ୍ରାହ୍ମମାନେ ନିଷ୍ଠାପରଭାବରେ ନିରାମିଷ ଭୋଜନ କରୁଥିଲେ । ମଧୁସୂଦନ ୨୦ । ୨୧ ବର୍ଷ ବୟସରୁ ଆମିଷ ବର୍ଜନ କରିଥିଲେ । ତାଙ୍କର ପତ୍ନୀ ଓ ପୁତ୍ରକନ୍ୟାଗଣ ମଧ ନିରାମିଷାଶୀ ଥିଲେ । କିନ୍ତୁ ମଧୁସୂଦନ ଏ ବିଷୟରେ ନିତାନ୍ତ କଠୋର ନଥିଲେ । ପରିବାର ମଧ୍ୟରେ ଯେଉଁମାନେ ମାଛ-ମାଂସ ଖାଇବାକୁ ଇଚ୍ଛା କରୁଥିଲେ, ମଧୁସୂଦନ ତହିଁରେ କୌଣସି ବାଧା ସୃଷ୍ଟିକରୁନଥିଲେ । ଅତି ଅକିଞ୍ଚିତ୍ କାର୍ଯ୍ୟକଳାପରେ ମଧ ମଧୁସୂଦନଙ୍କର ଅନୁଦାରତା ପ୍ରକାଶ ପାଉନଥିଲା ।

ଜଳଯୋଗ ପରେ ଅନ୍ନ ଭୋଜନ ପର୍ଯ୍ୟନ୍ତ ସମୟ ମଧ୍ୟରେ ପୁତ୍ର କନ୍ୟା, ଭ୍ରାତୃଷ୍ପୁତ୍ରୀ ଓ ଅନ୍ୟାନ୍ୟ ଯେଉଁ ଆତ୍ମୀୟ ବାଳକ ତାହାଙ୍କ ପରିବାରରେ ରହି ପାଠପଢ଼ୁଥିଲେ, ମଧୁସୂଦନ ଏ କୋଠରିରୁ ସେ କୋଠରିକୁ ଯାଇ ସେମାନଙ୍କର ପଢ଼ାଶୁଣା ଦେଖୁଥିଲେ ଓ ଘରର ଅଭାବ ଅସୁବିଧା ସବୁ ବୁଝୁଥିଲେ ।

ହୁକାରେ ଧୂମପାନ କରିବା ଅଭ୍ୟାସ ତାଙ୍କର ଥିଲା; କିନ୍ତୁ ସେ ସେଥିରେ ଅତ୍ୟନ୍ତ ଆସକ୍ତ ନଥିଲେ— ଦିନକେ ଦୁଇ ଚାରିଥର ଯଥେଷ୍ଟ ।

ଅନ୍ନ ଭୋଜନ ପରେ କର୍ମକ୍ଷେତ୍ରକୁ ଯିବା ପୂର୍ବରୁ ସେ କେତେକ ସମୟ ଖବରକାଗଜ ପ୍ରଭୃତି ପାଠକରୁଥିଲେ । ସନ୍ଧ୍ୟାରେ କର୍ମସ୍ଥଳରୁ ଫେରିଆସି ଜଳଯୋଗ ପରେ ଗୃହ ସଂଲଗ୍ନ ଉଦ୍ୟାନର ତତ୍ତ୍ୱାବଧାନ କରୁଥିଲେ । ସନ୍ଧ୍ୟା ପରେ କୌଣସି କୌଣସି ଭଦ୍ରବ୍ୟକ୍ତି ତାଙ୍କ ସହିତ ଆଳାପ କରିବାକୁ ଆସିଲେ, ମଧୁସୂଦନ ସବୁ କାର୍ଯ୍ୟ ଛାଡ଼ି ସେମାନଙ୍କୁ ବୈଠକଖାନାରେ ବସାଇ ପ୍ରାଣଖୋଲି ଆଗନ୍ତୁକ ଭଦ୍ରବ୍ୟକ୍ତିମାନଙ୍କ ସହିତ କଥାବାର୍ତ୍ତା କରୁଥିଲେ । ସନ୍ଧ୍ୟାରେ ପୁଣି ସମ୍ମିଳିତ ପାରିବାରିକ ଉପାସନା ଅନୁଷ୍ଠିତ ହୁଏ । ତା' ପରେ ରାତି ନଅଟା ପର୍ଯ୍ୟନ୍ତ ସେ ଲେଖାପଢ଼ାରେ ଲାଗନ୍ତି । ଇତିମଧ୍ୟରେ ସୁବିଧା ପାଇଲେ ସେ ପୁତ୍ର-କନ୍ୟାମାନଙ୍କୁ ଏକତ୍ର କରି ସେମାନଙ୍କୁ ନିଜର ବହୁ ବିଚିତ୍ର ଅନୁଭୂତିର କଥା କହନ୍ତି । କେଉଁ ସାଧୁ ସଜ୍ଜନମାନଙ୍କ ସଂସ୍ପର୍ଶରେ ଆସି ସେ ଜୀବନରେ କି ମହାଶିକ୍ଷା ଲାଭକରିଛନ୍ତି, ତାହା ଅତି ଚମତ୍କାର ଭାବରେ ପୁତ୍ରକନ୍ୟାମାନଙ୍କ ସମ୍ମୁଖରେ ବର୍ଣ୍ଣନା କରନ୍ତି । ରାତ୍ର-ଭୋଜନ ସମୟରେ ସେ ପୁତ୍ରକନ୍ୟା ସମସ୍ତଙ୍କୁ ପାଖରେ ବସାଇ ଭୋଜନକରନ୍ତି । ଭୋଜନ ସମୟରେ ମଧୁସୂଦନ ପିଲାଙ୍କୁ ପଚାରନ୍ତି, "ଆଜି ଦିନଟା କିଏ କିପରି କଟାଇଛ, ତା'ର ହିସାବ ଦିଅ ।"— ପିଲେ ଜଣ ଜଣ କରି ତାହାର ହିସାବ ଦିଅନ୍ତି । ଏହିପରି ହାସ-ପରିହାସ, ଥଟ୍ଟା ଓ କୌତୁକରେ ରାତ୍ର-ଭୋଜନ ସମାପ୍ତ ହୁଏ । ଭୋଜନ ପରେ ସେ କିଛି ସମୟ ପଢ଼ନ୍ତି, ତା' ପରେ ଶୁଅନ୍ତି; କିନ୍ତୁ ରୋଗଗ୍ରସ୍ତ ଏବଂ ବାର୍ଦ୍ଧକ୍ୟପୀଡ଼ିତ ମଧୁସୂଦନ ମୃତ୍ୟୁର କେତେ ବର୍ଷ ପୂର୍ବରୁ ଏହି କାର୍ଯ୍ୟସୂଚୀକୁ ନିୟମିତ ଭାବରେ ରକ୍ଷା କରିପାରି ନଥିଲେ । ଶୂଳରୋଗ ଓ ଅନିଦ୍ରା ରୋଗରେ ସେ ବିଷମ ଯନ୍ତ୍ରଣା ଭୋଗକରୁଥିଲେ । ତଥାପି ତାଙ୍କ ଅଧ୍ୟୟନ-ସ୍ପୃହାର ଅବସାନ ଘଟିନଥିଲା । ଜୀବନକୁ ସେ ଏକ ସୁଷମାନ୍ୱିତ ଶିଳ୍ପକଳାରୂପେ ଜ୍ଞାନକରୁଥିଲେ ଏବଂ ଏହି ଜୀବନ-ସାଧନ-କଳାର ସୌଷ୍ଠବ ସମ୍ପାଦନ କରିବା ନିମନ୍ତେ ସେ ସୁରୁଚିସମ୍ପନ୍ନ ଓ ଉନ୍ନତ ଭାବଧାରା ସମ୍ବଳିତ ଗ୍ରନ୍ଥମାନ ଏହି ରୋଗାକ୍ରାନ୍ତ ଅବସ୍ଥାରେ ବି ଅତ୍ୟନ୍ତ ଅଭିନିବେଶ ସହିତ ଅଧ୍ୟୟନ କରୁଥିଲେ । ଗ୍ରନ୍ଥ-ଅଧ୍ୟୟନ ସମ୍ବନ୍ଧରେ ସେ ଯେଉଁ ନୀତି ଅବଲମ୍ବନ କରିଥିଲେ ତାହା ପାଶ୍ଚାତ୍ୟ ଦାର୍ଶନିକ ବେକନ୍ (Bacon) ଏବଂ କବି ସାଉଦିଙ୍କ (Southey) ଆଦର୍ଶର ଅନୁରୂପ ଥିଲା । କବି ସାଉଦି ଗ୍ରନ୍ଥାଗାରକୁ ଲକ୍ଷ୍ୟ କରି ଲେଖିଥିଲେ—

"My never-failing friends are they
With whom I converse day by day."

ବେକନ୍ ଅଧ୍ୟୟନ-ପ୍ରଣାଳୀ ଉପରେ ନିଜର ମତ ବ୍ୟକ୍ତ କରିବାକୁ ଯାଇ ଲେଖିଥିଲେ, "Some books are to be tasted, others to be swallowed, and some few to be chewed and digested." ମଧୁସୂଦନ ଯେଉଁସବୁ ପୁସ୍ତକକୁ ବାରମ୍ବାର ଚର୍ବଣ ଓ ଆତ୍ମସାତ୍ କରୁଥିଲେ ଏବଂ ଯେଉଁ ସବୁ ପୁସ୍ତକ ସେ ପ୍ରାୟ ଦୈନନ୍ଦିନ ପାଠକରୁଥିଲେ ତାହାର ଗୋଟିଏ ଦୀର୍ଘ ତାଲିକା ଅବନ୍ତୀ ଦେବୀ ଏହିପରି ଦେଇଅଛନ୍ତି–

୧. ଇଂରାଜୀ– ମାର୍ଟିନୋ (Martinew), ରସ୍କିନ (Ruskin), ଇମର୍ସନ (Emerson), ଭୟସୀ (Voysey), ହୁଗୋ (Victor Hugo), ମାଥିଉ ଆର୍ନଲଡ଼ (Mathew Arnold), ଆର୍ମଷ୍ଟ୍ରଂ (Armstrong) ପ୍ରଭୃତି ମନୀଷୀମାନଙ୍କର ଦାର୍ଶନିକ ପ୍ରବନ୍ଧ ଓ ଉପନ୍ୟାସ ପ୍ରଭୃତି ଏବଂ ଟେନିସନ (Tennyson), ୱର୍ଡ଼ସ୍‌ଉଆର୍ଥ (Wordsworth), ଗେଟେ (Gaethe), ସେକ୍‌ସପୀୟର (Shakespeare), ଶେଲୀ (Shelley) ପ୍ରଭୃତି ପ୍ରତିଭାଶାଳୀ କବିମାନଙ୍କର କାବ୍ୟ ଓ ସାହିତ୍ୟ ଗ୍ରନ୍ଥରାଜି ।

୨. ସଂସ୍କୃତ– ଭବଭୂତିଙ୍କର ଉତ୍ତର ରାମ-ଚରିତ, ମାଳତି ମାଧବ, କାଳିଦାସଙ୍କର କୁମାର-ସମ୍ଭବ, ରଘୁବଂଶ, ଅଭିଜ୍ଞାନଶାକୁନ୍ତଳମ୍, ବାଲ୍ମୀକି ରାମାୟଣ, ଶ୍ରୀମଦ୍‌ଭାଗବତ ଓ ବେଦାନ୍ତ ଦର୍ଶନ ପ୍ରଭୃତି ।

୩. ବଙ୍ଗଳା– ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ମାଇକେଲ ମଧୁସୂଦନ ଦତ୍ତ, ଭୂଦେବ ମୁଖୋପାଧ୍ୟାୟ, ହେମଚନ୍ଦ୍ର, ନବୀନଚନ୍ଦ୍ର, ବଙ୍କିମଚନ୍ଦ୍ର, ରଙ୍ଗଲାଲ ଓ ରବୀନ୍ଦ୍ରନାଥ ପ୍ରଭୃତିଙ୍କ ରଚନାବଳୀ । କାଳିପ୍ରସନ୍ନ ସିଂହଙ୍କର ମହାଭାରତ ।

୪. ଓଡ଼ିଆ– ସାରଳା ମହାଭାରତ, ଜଗନ୍ନାଥଙ୍କ ଭାଗବତ, ଦୀନକୃଷ୍ଣଙ୍କ ରସକଲ୍ଲୋଳ, ବଳରାମଙ୍କ ରାମାୟଣ ପ୍ରଭୃତି ।

୫. ମହାରାଷ୍ଟ୍ରୀ– ଭକ୍ତ ତୁକାରାମଙ୍କ ଉପଦେଶାବଳୀ ଏବଂ ଆଧୁନିକ କେତେଜଣ ପଣ୍ଡିତଙ୍କ ରଚନାବଳୀ ।

ଏହଛଡ଼ା ବହୁ ଓଡ଼ିଆ, ବଙ୍ଗଳା, ଇଂରାଜୀ ଓ ମରହଟ୍ଟୀ ସମ୍ବାଦପତ୍ର ଓ ସାମୟିକ ପତ୍ରିକାର ସେ ଗ୍ରାହକ ହୋଇଥିଲେ । ବ୍ରାହ୍ମ ସମାଜର ତିନି ଶାଖାରୁ (ଆଦି, ଭାରତବର୍ଷୀୟ ଓ ସାଧାରଣ) ଯେଉଁ ସକଳ ପୁସ୍ତକ-ପୁସ୍ତିକା-ପତ୍ରିକାଦି ପ୍ରକାଶିତ ହେଉଥିଲା, ତାହା ସବୁ ସେ ପ୍ରାୟ ଆଣୁଥିଲେ ଏବଂ ସେଗୁଡ଼ିକ ତାଙ୍କର ଦୈନିକ ପାଠ୍ୟର ଅନ୍ତର୍ଗତ ଥିଲା ।

ସ୍ତ୍ରୀଶିକ୍ଷା ପ୍ରତି ମଧୁସୂଦନଙ୍କର ବିଶେଷ ଆଗ୍ରହ ଓ ଶ୍ରଦ୍ଧା ଥିଲା । କଟକରେ ସେତେବେଳେ ଗୋଟିଏ ମାତ୍ର ବାଳିକା ବିଦ୍ୟାଳୟ ଥିଲା– ତାହାର ନାମ 'ରେଭେନ୍‌ସା

ବାଳିକା ବିଦ୍ୟାଳୟ।' ଏଠାରେ ମଧ୍ୟ ଛାତ୍ରବୃତ୍ତି ପର୍ଯ୍ୟନ୍ତ ପଢ଼ାଯାଉଥିଲା। ଏଠାରେ ଓଡ଼ିଆ ଓ ବଙ୍ଗଳା ଉଭୟ ଭାଷାର ପୁସ୍ତକ ଛାତ୍ରୀମାନେ ପଢୁଥିଲେ। ମଧୁସୂଦନଙ୍କର ତିନିକନ୍ୟା– ବାସନ୍ତୀ, ଅବନ୍ତୀ ଓ ଶାନ୍ତି ଏହି ବିଦ୍ୟାଳୟରେ ପଢୁଥିଲେ। ବାସନ୍ତୀ, ରେବା ଓ ଅବନ୍ତୀ ଏଠାରୁ ଛାତ୍ରବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସରକାରୀ ବୃତ୍ତି ଲାଭ କରିଥିଲେ। ରେବା ମଧୁସୂଦନଙ୍କ ଅନୁଜ ଜଗନ୍ନାଥଙ୍କର ଜ୍ୟେଷ୍ଠାକନ୍ୟା। କିନ୍ତୁ କଟକରେ ସେତେବେଳେ ଛାତ୍ରୀମାନଙ୍କ ନିମନ୍ତେ ଉଚ୍ଚଶିକ୍ଷାର ବ୍ୟବସ୍ଥା ନଥିବାରୁ ମଧୁସୂଦନ ଏମାନଙ୍କୁ ନିଜ ଘରେ ଉପଯୁକ୍ତ ଶିକ୍ଷା ଦେବାର ଦାୟିତ୍ୱ ଗ୍ରହଣ କରିଥିଲେ। ଏମାନେ ବଙ୍ଗଭାଷା ଭଲଭାବରେ ଶିକ୍ଷାକରିଥିଲେ। ମଧୁସୂଦନ ଭଲ ଭଲ ବଙ୍ଗଳା ବହି ଆଣି କନ୍ୟାମାନଙ୍କୁ ପଢ଼ିବାକୁ ଦେଉଥିଲେ ଏବଂ ଏପରିକି ଏ ବହିମାନଙ୍କରୁ କେତେକ ଅଂଶ ନିର୍ଦ୍ଦେଶକରି ସେମାନଙ୍କୁ ତାହା ମୁଖସ୍ଥ କରିବାକୁ ଆଦେଶ ଦେଉଥିଲେ।

ମଧୁସୂଦନଙ୍କର ସଂସ୍କୃତସାହିତ୍ୟ ପ୍ରତି ପ୍ରବଳ ଅନୁରାଗ ଥିଲା। ତାଙ୍କର ସମଗ୍ର ଜୀବନଟି ଯେପରି ସୁମାର୍ଜିତ ଓ ସୁସଂସ୍କୃତ ଥିଲା, ସଂସ୍କୃତ ଭାଷାରେ ମଧ୍ୟ ସେପରି ଅସାଧାରଣ ପାଣ୍ଡିତ୍ୟ ଥିଲା। ତେଣୁ କନ୍ୟାମାନଙ୍କୁ ସଂସ୍କୃତ ଶିକ୍ଷା ଦେବାରେ ସେ ବିଶେଷ ଯତ୍ନବାନ୍ ଥିଲେ। ସେ ସଂସ୍କୃତ-ପ୍ରେମୀ ଥିବାରୁ ତାଙ୍କ ନିକଟକୁ ଅନେକ ପଣ୍ଡିତ ସଂସ୍କୃତସାହିତ୍ୟ ଚର୍ଚ୍ଚା କରିବାକୁ ଆସୁଥିଲେ। ଏମାନଙ୍କ ସଙ୍ଗସୁଖ ଓ ଏମାନଙ୍କ ସହିତ ସଂସ୍କୃତ-ଚର୍ଚ୍ଚା ମଧୁସୂଦନଙ୍କ ଜୀବନର ପରମ ଆହ୍ଲାଦର ସାମଗ୍ରୀ ଥିଲା। କାଳିଗଳିରେ ତାଙ୍କ ବାସଭବନ ନିକଟରେ ରହୁଥିବା ପଣ୍ଡିତ ପ୍ରଭାକର ମିଶ୍ରଙ୍କ ସହିତ ମଧୁସୂଦନ ଯେତେବେଳେ ମହାକବି କାଳିଦାସ ଓ ଭବଭୂତିଙ୍କ କାବ୍ୟ ନାଟକାଦି ଆଲୋଚନା କରୁଥିଲେ; ସେତେବେଳେ ତାଙ୍କର ରସସଂବେଦନା ଓ ତନ୍ମୟତା ଦେଖି ପୁତ୍ରକନ୍ୟାମାନେ ବିସ୍ମୟରେ ଅବାକ୍ ହୋଇଯାଉଥିଲେ ଏବଂ ଏଥିରୁ ସଂସ୍କୃତପ୍ରତି ସେମାନଙ୍କର ମଧ୍ୟ ଅନୁରାଗ ଜନ୍ମୁଥିଲା। ଅବନ୍ତୀ ଦେବୀ ଲେଖିଅଛନ୍ତି, "ଏହି ଆଲୋଚନା ସମୟରେ ଶୁଣି ଶୁଣି ତାଙ୍କର ଅନେକ ଶ୍ଳୋକ ମୁଖସ୍ଥ ହୋଇଯାଇଥିଲା। ଚାଣକ୍ୟ ଶ୍ଳୋକ ଏବଂ ମୋହମୁଦ୍‌ଗରର ଅନେକ ଶ୍ଳୋକ ସେ ସୁନ୍ଦର ଭାବରେ ଆବୃତ୍ତି କରିପାରୁଥିଲେ। 'ଯା ଗୋବିନ୍ଦ ରସ-ପ୍ରମୋଦ-ମଧୁରା ସା ମାଧୁରୀ ମାଧୁରୀ'– ଏ ଶ୍ଳୋକଟି କେବଳ ମଧୁସୂଦନ କାହିଁକି, ତାଙ୍କ ପରିବାରର ପୁତ୍ର କନ୍ୟା ସମସ୍ତଙ୍କ ପ୍ରାଣରେ ସତେ ଯେପରି ଆନନ୍ଦର ଅମୀୟଧାରା ଢାଳିଦେଇଯାଉଥିଲା।

ନଅ ଦଶ ବର୍ଷ ବୟସରେ ଅବନ୍ତୀ ଦେବୀ ପ୍ରଭୃତି ଘରେ ଘରେ ବିଦ୍ୟାସାଗରଙ୍କ ଉପକ୍ରମଣିକା ବ୍ୟାକରଣ ପଢ଼ି ସଂସ୍କୃତରେ ବେଶ୍ ପ୍ରାଥମିକ ଜ୍ଞାନ ଅର୍ଜନ କରିପାରିଥିଲେ। ସେତେବେଳେ ହାଇସ୍କୁଲରେ ଯେଉଁ ସଂସ୍କୃତ ପାଠ୍ୟ ବହି ପଢ଼ାଯାଉଥିଲା, ମଧୁସୂଦନଙ୍କ କନ୍ୟାମାନେ ସେସବୁ ବହି ଆଣି ପିତାଙ୍କ ସାହାଯ୍ୟରେ

ଘରେ ପଢୁଥିଲେ। ମଧୁସୂଦନଙ୍କର ସଂସ୍କୃତ ଉଚ୍ଚାରଣ ନିର୍ଦ୍ଦୋଷ ଥିଲା। ସେ କନ୍ୟାମାନଙ୍କୁ 'ରଘୁବଂଶ', 'କୁମାର-ସମ୍ଭବ' ଓ 'ଉତ୍ତର ରାମଚରିତ' ପ୍ରଭୃତି ପଢ଼ାଉଥିଲେ। ସଂସ୍କୃତ ପଢ଼ାଇବାରେ ମଧ୍ୟ ମଧୁସୂଦନଙ୍କର ବିଶେଷତ୍ୱ ଥିଲା। ସେ 'ଘୋଷା' ନୀତିକୁ କଦାପି ସମର୍ଥନ କରୁନଥିଲେ। କି ଉପାୟରେ ପିଲାଙ୍କର ସଂସ୍କୃତ ପ୍ରତି ଆଗ୍ରହ ଉତ୍ତରୋତ୍ତର ବୃଦ୍ଧି ପାଇବ, ତାହା ତାଙ୍କୁ ବେଶ୍ ଜଣାଥିଲା। ଛନ୍ଦାନୁଯାୟୀ ଗୁରୁ-ଲଘୁ ନିୟମରେ ସଂସ୍କୃତ ଶ୍ଳୋକମାନ ଉଚ୍ଚକଣ୍ଠରେ ଆବୃତ୍ତିକରି ସେ ସେମାନଙ୍କର ମନପ୍ରାଣକୁ ସମ୍ମୋହିତ କରିଦେଉଥିଲେ। କାବ୍ୟପାଠ ସମୟରେ ତାହାର ବ୍ୟାଖ୍ୟା ଓ ସମାଲୋଚନା ସଙ୍ଗେ ସମ୍ପୃକ୍ତ କବିମାନଙ୍କର ଜୀବନ-ଚରିତ ସହିତ ସେ ସେମାନଙ୍କୁ ପରିଚିତ କରାଇଦେଉଥିଲେ ଏବଂ ପ୍ରାଚୀନ କବିମାନଙ୍କ ସମ୍ବନ୍ଧେ ପ୍ରଚଳିତ ନାନା ଜନଶ୍ରୁତି ଓ କିମ୍ବଦନ୍ତୀମାନ ସେମାନଙ୍କ ଆଗରେ ବର୍ଣ୍ଣନାକରି ସେମାନଙ୍କୁ ମୁଗ୍ଧକରି ରଖୁଥିଲେ। ମଧୁସୂଦନଙ୍କର ଏହି ଆଦର୍ଶ-ପରମ୍ପରା ଆଜି ଯଦି ଏବର ଶିକ୍ଷିତ ପିତାମାତାମାନେ ଅବ୍ୟାହତ ରଖିଥା'ନ୍ତେ, ତେବେ ତାଙ୍କର ଝିଅମାନେ ପୁଅମାନଙ୍କ ସହିତ ସମାନସ୍କନ୍ଧ ହୋଇ ସ୍କୁଲ କଲେଜରେ ସେହି ଏକରକମର ପାଠ୍ୟପୁସ୍ତକ ପରୀକ୍ଷା ନିମନ୍ତେ ଗଳାଧଃକରଣ କରି ଖଣ୍ଡିଏ ଚାକିରି ନିମନ୍ତେ ସାର୍ଟିଫିକେଟ ହାସଲ କରିବା ଦିଗରେ ସକଳ ସମୟ ଓ ଶକ୍ତିର ଅପଚୟ କରୁନଥା'ନ୍ତେ। ସଂସ୍କୃତ-ସାହିତ୍ୟରେ କି ମହୀୟାନ ଭାବ-ସମ୍ପଦ ଅଛି, ତାହା ଆମର କନ୍ୟାଗଣ କାହିଁକି, ପୁତ୍ର-ପୌତ୍ରମାନେ ବି ଜାଣିଲେ ନାହିଁ। ଆଧୁନିକତାର ବ୍ୟାମୋହ ଓ ଗଡ୍ଡାଳିକା ପ୍ରବାହରେ ଭାସିଯାଇ ଆମ ପିଲେ ତ ଆଜି ସଂସ୍କୃତର 'ସ' ଅକ୍ଷର ଭଲରୂପେ ଜାଣିଲେ ନାହିଁ; ବରଂ ଯେଉଁମାନେ ସଂସ୍କୃତ ଜାଣନ୍ତି, ବୁଝନ୍ତି, ପଢ଼ନ୍ତି ଓ ପ୍ରାଣଦେଇ ପଢ଼ାନ୍ତି ସେମାନଙ୍କୁ ଥଟ୍ଟାପରିହାସ ଓ ବ୍ୟଙ୍ଗ କରନ୍ତି। ଧନ୍ୟରେ ଶିକ୍ଷା-ପଦ୍ଧତି ! ଧନ୍ୟ ଆମର ଆଧୁନିକତା ଏବଂ ସଂସ୍କୃତି-ପ୍ରେମିକତା। ମଧୁସୂଦନ ମଧ୍ୟ ସେ ସମୟକୁ ଚାହିଁ ଅତ୍ୟନ୍ତ ଆଧୁନିକ ଥିଲେ। ଇଂରେଜୀ ଭାଷା ଓ ସାହିତ୍ୟରେ ତାଙ୍କର ଅସାମାନ୍ୟ ବ୍ୟୁତ୍ପତ୍ତି ଥିଲା। ତଥାପି ଭାରତର ପୂର୍ବ ଗୌରବମୟ ପରମ୍ପରାପ୍ରତି ତାଙ୍କର ଅନାଦର ତ ଆଦୌ ନଥିଲା; ବରଂ ଥିଲା ପ୍ରଗାଢ଼ ଶ୍ରଦ୍ଧା ଓ ମମତା। ସଂସ୍କୃତ ସାହିତ୍ୟ ଓ ସଂସ୍କୃତ ଶିକ୍ଷାପ୍ରତି ମଧୁସୂଦନଙ୍କର ଯେଉଁ ନିବିଡ଼ ଅନୁରାଗ, ତାହା ଆମ ଦେଶରେ ପୁନର୍ଜୀବିତ ହୋଇଉଠିଲେ, ଏ ଯାନ୍ତ୍ରିକ ଓ ବିଜ୍ଞାନ ଯୁଗରେ ଛାତ୍ରଛାତ୍ରୀମାନଙ୍କ ଶକ୍ତିର କୌଣସି ଅପଚୟ ଘଟନ୍ତାନାହିଁ। ବିଜ୍ଞାନ ଓ ଯାନ୍ତ୍ରିକ ଶିକ୍ଷା ସହିତ ସଂସ୍କୃତ ଶିକ୍ଷାର ସମନ୍ୱୟ କିପରି ସଂଗଠିତ କରାଯାଇପାରେ, ଏ ବିଷୟରେ ଚିନ୍ତାକରିବାର ସମୟ ବର୍ତ୍ତମାନ ଉପସ୍ଥିତ। ଅଧ୍ୟାତ୍ମ-ସାଧନା ଓ ବିଜ୍ଞାନ-ସାଧନା ପରସ୍ପର ପ୍ରତିକୂଳ ନୁହନ୍ତି, ପରିପୂରକ; ପରିପନ୍ଥୀ ନୁହନ୍ତି, ଅନୁପନ୍ଥୀ।

ବର୍ତ୍ତମାନ ଯୁଗରେ ଶିକ୍ଷିତ ପିତାମାତା ଓ ଅଭିଭାବକମାନେ ପୁତ୍ରକନ୍ୟାମାନଙ୍କୁ ସ୍କୁଲ କଲେଜକୁ ଛାଡ଼ିଦେଇ ନିଶ୍ଚିନ୍ତ। ଦରକାର ପଡ଼ିଲେ, ପରୀକ୍ଷା ସମୟକୁ କିମ୍ବା

ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ଥିଲେ, ବର୍ଷର ଆରମ୍ଭରୁ ଜଣେ 'ଅଭିଜ୍ଞ' ଶିକ୍ଷକ ଟିଉସନମାଷ୍ଟରରୂପେ ନିଯୁକ୍ତ କରିଦେଲେ ଦାୟିତ୍ୱରୁ ନିଷ୍କୃତି ! ପିଲେ ବାହାରେ କାହାସଙ୍ଗେ ମିଳାମିଶା କରନ୍ତି, କେଉଁ ସ୍ଥାନଅସ୍ଥାନରେ ଆଡ୍ଡା ଜମାନ୍ତି, କାହା ସହିତ ରାତିରେ ଖସିଯାଇ ସିନେମା ଦେଖନ୍ତି ଓ ଶିକ୍ଷକମାନଙ୍କ ସହିତ କିପରି ବ୍ୟବହାର କରନ୍ତି ସେ ବିଷୟ ପ୍ରତି ଆଜିକାଲି କେତେ ଜଣ ଅଭିଭାବକଙ୍କର ଦୃଷ୍ଟି ଥାଏ ? କିନ୍ତୁ ମଧୁସୂଦନଙ୍କର ପୁତ୍ରକନ୍ୟାମାନଙ୍କର ବର୍ତ୍ତମାନ ଓ ଭବିଷ୍ୟତ ପ୍ରତି କିପରି ସଜାଗ ଦୃଷ୍ଟି ଥିଲା ତାହା ଭୁକ୍ତଭୋଗିନୀ କନ୍ୟା ଅବନ୍ତୀ ଦେବୀଙ୍କ ନିମ୍ନୋଦ୍ଧୃତ ବିବରଣୀରୁ ସ୍ପଷ୍ଟ ପ୍ରତିଭାତ ହୁଏ ।

"ମଧୁସୂଦନଙ୍କ ଜୀବନ ଯେପରି ଗୋଟିଏ ଦିଗରୁ ଅମୃତମୟ, ଅନ୍ୟ ଦିଗରୁ ସେପରି ତେଜୋମୟ ଥିଲା । ଏହି ପ୍ରେମିକ ଜୀବନରେ ଯେପରି ପ୍ରେମାମୃତର ରସ ପ୍ରବାହିତ ହେଉଥିଲା, ସେହିପରି ସତ୍ୟନିଷ୍ଠ, ନ୍ୟାୟପରାୟଣ, ତେଜସ୍ୱୀ ଜୀବନର ତେଜର ପ୍ରଭାବ ନିକଟସ୍ଥ ସମସ୍ତେ ଅନୁଭବ କରୁଥିଲେ । ପୁତ୍ରକନ୍ୟାମାନଙ୍କର ଜୀବନ ଯେପରି ଏହି ଅମୃତମୟ ଓ ତେଜୋମୟ ପଥରେ ଚାଳିତ ହୁଏ, ଏହାହିଁ ତାଙ୍କ ଜୀବନର ଆକାଙ୍କ୍ଷା ଥିଲା । ସେହି ଆକାଙ୍କ୍ଷାକୁ ସନ୍ତାନମାନଙ୍କ ଜୀବନରେ ରୂପାୟିତ କରିବାକୁ କେତେରୂପେ କେତେ ଚେଷ୍ଟା ସେ କରିଯାଇଅଛନ୍ତି ।"

'କ୍ଷଣମିହସଜ୍ଜନସଙ୍ଗତିରେକା ଭବତି ଭବାର୍ଣ୍ଣବ ତରଣେ ନୌକା'— ଶଙ୍କରାଚାର୍ଯ୍ୟଙ୍କର ଏହି ସନ୍ନୀତିରେ ମଧୁସୂଦନଙ୍କର ଗଭୀର ପ୍ରତ୍ୟୟ ଥିଲା । ଏହାହିଁ ବାଳକବାଳିକାମାନଙ୍କର ଚରିତ୍ରଗଠନର ପ୍ରଧାନ ଅବଲମ୍ବନ ବୋଲି ସେ ଭାବୁଥିଲେ । ତେଣୁ ପୁତ୍ରକନ୍ୟାମାନେ ଯେପରି ସତ୍‌ସଙ୍ଗ ଲାଭକରନ୍ତି ସେ ଦିଗରେ ସେ ବିଶେଷ ଯତ୍ନବାନ୍ ଥିଲେ । 'ଛାନ୍ଦମାଳା', ପ୍ରଥମ ଖଣ୍ଡରେ ସନ୍ନିବିଷ୍ଟ 'ସଙ୍ଗ' କବିତାରେ ସେ ବାଳକବାଳିକାମାନଙ୍କୁ ନୀତି-ଉପଦେଶ ଦେଇ ଲେଖିଥିଲେ—

"ସାଧୁ ସୁଜନ ସଙ୍ଗତରେ, ଧନ୍ୟ ଯେ ନିତ୍ୟ ବାସକରେ ।  
ସଜ୍ଜନ ସଙ୍ଗେ ସଦା ରହି, ପବିତ୍ର କର ଏହି ମହୀ ।  
ଦୁର୍ଜ୍ଜନ ସଙ୍ଗେ କଲେ ବାସ, ନିଶ୍ଚେ ଘଟିବ ସର୍ବନାଶ ।  
ସର୍ପ ସମାନ ଭୟଙ୍କର, ଦୁର୍ଜ୍ଜନ ଜନେ ପରିହର ।"

ଅସାଧୁ-ସଙ୍ଗହିଁ ଚରିତ୍ରର ଅଧଃପତନର ପ୍ରଧାନ ହେତୁ । ତେଣୁ ମଧୁସୂଦନ ତାଙ୍କ ପୁତ୍ରକନ୍ୟାଙ୍କୁ ବାହାରର ଯେକୌଣସି ଲୋକଙ୍କ ସହିତ ଅବାଧରେ ମିଳାମିଶା କରିବାର ସୁବିଧା ଦେଉନଥିଲେ । ଘରଭିତରେ ସେମାନଙ୍କର ଖେଳାବୁଲାର ବ୍ୟବସ୍ଥା । ବାହାରକୁ ଗଲେ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଘରକୁ ଫେରିଆସିବାକୁ ହେବ । ଏ ବିଷୟରେ ତାଙ୍କର କଡ଼ା ନଜର । ସବୁ ଦୋଷର କ୍ଷମା ଅଛି; କିନ୍ତୁ ତାଙ୍କ ଦୃଷ୍ଟିରେ କୁସଙ୍ଗ ଏତେ ଗର୍ହିତ ଯେ, ଏ ଦୋଷ ଅକ୍ଷମଣୀୟ । ସନ୍ତାନ-ସନ୍ତତିଙ୍କର ଚରିତ୍ରଗଠନ ପ୍ରତି ସେ ଏତେ ସତର୍କ ଥିଲେ

ଯେ, କୌଣସି କୁରୁଚିପୂର୍ଣ୍ଣ ନାଟକ, ଯାତ୍ରା ଏବଂ ବର୍ତ୍ତମାନ ଯୁଗରେ ଯାହାକୁ 'ସାଂସ୍କୃତିକ ଉତ୍ସବ' ନାମରେ ନାମିତ କରାଯାଏ, ତତ୍ତୁଲ୍ୟ କୌଣସି ଅଗ୍ରହଣୀୟ ଆମୋଦ ଉତ୍ସବାଦିରେ ଯୋଗଦେବାକୁ ସେ ସେମାନଙ୍କୁ ନିଷେଧ କରୁଥିଲେ । ଥରେ କଟକକୁ ଗୋଟିଏ ମହାରାଷ୍ଟ୍ରୀୟଦଳ ନାଟକ ଅଭିନୟ କରିବାକୁ ଆସିଥିଲେ । ନାଟ୍ୟଦଳର ପରିଚାଳକ ମଧୁସୂଦନଙ୍କୁ ଏ ନାଟକାଭିନୟ ଦେଖିବାକୁ ବିଶେଷଭାବରେ ଅନୁରୋଧ କରିଥିବାରୁ, ସାଧାରଣତଃ ନାଟତାମସା ପ୍ରତି ବୀତରାଗ ମଧୁସୂଦନ ଅଗତ୍ୟା ଏ ଅଭିନୟ ଦେଖିବାକୁ ଯାଇଥିଲେ । ସାଙ୍ଗରେ କନିଷ୍ଠା କନ୍ୟା, ଦୌହିତ୍ରୀ ଓ ଗୋଟିଏ ବାଳକ ପୁତ୍ର । ଅଳ୍ପ କିଛି ସମୟ ଅଭିନୟ ଦେଖିଲା ପରେ, କ'ଣ ହେଲା କେଜାଣି, ମଧୁସୂଦନ ଅତ୍ୟନ୍ତ ବିରକ୍ତ ହୋଇ ପିଲାମାନଙ୍କୁ ସାଙ୍ଗରେ ଧରି ପ୍ରେକ୍ଷାଳୟରୁ ଚାଲିଯିବାକୁ ପ୍ରସ୍ତୁତ ହେଲେ । ପାଖରେ ବସିଥିବା କେହି କେହି ଭଦ୍ରବ୍ୟକ୍ତି ତାଙ୍କୁ ଆଉ କିଛି ସମୟ ବସି ଅଭିନୟ ଦେଖିବାକୁ ଅନୁରୋଧ କଲେ; କିନ୍ତୁ ମଧୁସୂଦନ କାହାରି ଅନୁରୋଧ ପ୍ରତି ଭ୍ରୂକ୍ଷେପ ନକରି ଗମ୍ଭୀର ଭାବରେ ପ୍ରେକ୍ଷାଳୟ ବର୍ଜନକରି ଘରକୁ ଫେରିଗଲେ । ଏହି ନାଟକରେ କେବଳ ପୁରୁଷମାନେ ଅଭିନୟ କରୁଥିଲେ– ଅଭିନେତ୍ରୀ ନ ଥିଲେ କିମ୍ବା ନାରୀଭୂମିକାରେ କୌଣସି ପୁରୁଷ ଅଭିନୟ କରୁନଥିଲେ । ତଥାପି ଅଭିନେତାମାନଙ୍କର ସଂଳାପ, ଅଙ୍ଗଭଙ୍ଗୀ ଓ ନାଟକୀୟ କଳାରେ କୌଣସି ରୁଚିବିଗର୍ହିତ ଇଙ୍ଗିତ ଲକ୍ଷ୍ୟ କରି, ଏହା କାଳେ ଅଳ୍ପବୟସ୍କ ବାଳକ ବାଳିକାମାନଙ୍କ ଚରିତ୍ର ଉପରେ ଅନିଷ୍ଟକର ପ୍ରଭାବ ପକାଇପାରେ, ଏହି ଆଶଙ୍କାରେ ସେଦିନ ସେ ଲୌକିକ ସୌଜନ୍ୟପ୍ରତି ଦୃକ୍‌ପାତ ନକରି ପ୍ରେକ୍ଷାଳୟରୁ ଅପ୍ରତ୍ୟାଶିତ ଭାବରେ ନିଷ୍କ୍ରାନ୍ତ ହୋଇଥିଲେ । ଅବନ୍ତୀ ଦେବୀ ଲେଖିଅଛନ୍ତି– ଅଭିନୟ ଦେଖିବାକୁ ଯାଇଥିବା ବାଳକବାଳିକାମାନେ ସେତେବେଳେ ଅଳ୍ପବୟସ୍କ ହେଲେହେଁ ଏହି ଦୃଶ୍ୟ ସେମାନଙ୍କ ଅନ୍ତରରେ ଚିରଜାଗ୍ରତ ଅଛି । କିନ୍ତୁ ଏଇ ଅଳ୍ପଦିନ ତଳେ ଜଣେ ଦାୟିତ୍ୱସମ୍ପନ୍ନ ନେତୃସ୍ଥାନୀୟ କେନ୍ଦ୍ରୀୟ ବ୍ୟକ୍ତି ଗୋଟିଏ ସାଧାରଣ ସଭାରେ କହିଥିବା ପ୍ରକାଶ– ସିନେମାଶିଳ୍ପରେ ଶ୍ଳୀଳତା ଓ ଅଶ୍ଳୀଳତାର ପ୍ରଶ୍ନ ନେଇ ଏତେ ମୁଣ୍ଡ ଖର୍ଚ୍ଚ କରିବା ବିଶେଷ ବୁଦ୍ଧିମତ୍ତାର ପରିଚାୟକ ନୁହେଁ । ଏ ଦିଗରେ କୌଣସି ଅବାଞ୍ଛନୀୟ ଆନ୍ଦୋଳନ ଓ ଉତ୍ତେଜନା ସୃଷ୍ଟି ନକରି ଉଦାରଭାବ ପୋଷଣ କରିବା ଉଚିତ । ଚଳିଚ୍ଚିତ୍ର-ଯାଞ୍ଚ-ସମିତି ପକ୍ଷରୁ ସେ ଏପରି କହିଥିବା ପ୍ରକାଶ ।

## (ଘ) କେତେକ ପାରିବାରିକ ଚିଠିପତ୍ର

ମଧୁସୂଦନଙ୍କର ଘର ପ୍ରକୃତ ବୈକୁଣ୍ଠ ସମାନ ଥିଲା । ଗୋଟିଏ ବୃହତ୍ ଏକାନ୍ନବର୍ତ୍ତୀ ପରିବାର ମଧ୍ୟରେ ଏତେ ସ୍ନେହ, ସୌହାର୍ଦ୍ଦ୍ୟ, ପ୍ରୀତି ଓ ମୈତ୍ରୀ ଏ ଯୁଗରେ ବଡ଼ କ୍ୱଚିତ୍

ଦେଖିବାକୁ ମିଳେ । ମଧୁସୂଦନ ଗୃହକର୍ତ୍ତାରୂପେ ସାନବଡ଼ ସମସ୍ତଙ୍କୁ ସ୍ନେହର ସୁକୁମାର ବନ୍ଧନରେ ବାନ୍ଧିରଖିଥିଲେ । ପରିବାର ମଧ୍ୟରେ ଏତେ ଲୋକ; ତେଣୁ ପରସ୍ପର ମଧ୍ୟରେ ଭୁଲ ବୁଝାମଣା ସୃଷ୍ଟି ହେବା ଅସ୍ୱାଭାବିକ ନୁହେଁ । ଏହା ଫଳରେ ଗୃହକର୍ତ୍ତା ମଧୁସୂଦନଙ୍କୁ ବେଳେବେଳେ ଦୁଃଖ ଓ ଅପମାନର କଠୋର ଆଘାତ ସହିବାକୁ ପଡ଼ିଛି । ବେଦନାବ୍ୟଥିତ ପ୍ରାଣ ତାଙ୍କର ଦୁଃଖ ଓ ନୈରାଶ୍ୟରେ ଆକୁଳ ହୋଇଉଠିଛି । ତଥାପି ସେ କାହାପ୍ରତି ବିଦ୍ୱେଷ କିମ୍ବା ଆକ୍ରୋଶ ପ୍ରକାଶ କରିନାହାନ୍ତି । କ୍ଷମା-ସୁନ୍ଦର ହୃଦୟ ତାଙ୍କର ସମସ୍ତଙ୍କୁ କ୍ଷମା-ଜଳରେ ବିଧୌତ କରିଦେଇଛି । ଅପମାନକାରୀ ବୟସରେ କନିଷ୍ଠ ହେଲେ ମଧ୍ୟ ତାକୁ ସ୍ନେହରେ ଆଲିଙ୍ଗନ କରି ସାଶ୍ରୁନେତ୍ରରେ ତା'ଠାରୁ କ୍ଷମାଭିକ୍ଷା କରିଅଛନ୍ତି । ପରିବାର ମଧ୍ୟରେ ଯେତେ ଜଟିଳ ସମସ୍ୟାର ଉଦ୍ଭବ ହେଲେ ମଧ୍ୟ ତାଙ୍କର ଏହି କ୍ଷମାଶୀଳତା ଯୋଗୁଁ ସବୁ ଅପ୍ରୀତିକର ସମସ୍ୟାର ନିର୍ବିବାଦ ସମାଧାନ ଅକ୍ଲେଶରେ ହୋଇପାରିଛି ।

''ଯାର ଖରତର ଶରେ ଜରଜର
ତାହାରି କଲ୍ୟାଣ ଅନ୍ତରର ଧ୍ୟାନ–
ନରତ୍ୱ ଦେବତ୍ୱ ଏକସଙ୍ଗେ ତା'ର ।''

ଅବନ୍ତୀ ଦେବୀଙ୍କ ଶ୍ୱଶୁର ପଣ୍ଡିତ ଶିବନାଥ ଶାସ୍ତ୍ରୀଙ୍କ ରଚିତ ଏବଂ ତାଙ୍କ ବଧୂ ଅବନ୍ତୀଙ୍କର ବାଲ୍ୟକାଳରୁ ସ୍ମୃତିକୋଷରେ ସଞ୍ଚିତ ଉପରୋକ୍ତ ପଙ୍‌କ୍ତି ମଧୁସୂଦନଙ୍କ ପ୍ରତି ସଂପୂର୍ଣ୍ଣ ପ୍ରଯୋଜ୍ୟ ।

ମଧୁସୂଦନ ବିଦ୍ୟାଳୟ ପରିଦର୍ଶନ କାର୍ଯ୍ୟରେ ସୁଦୂର ଗଡ଼ଜାତ କିମ୍ବା ଅନ୍ୟାନ୍ୟ ସ୍ଥାନକୁ ଗଲେ ସେଠାର ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଅନ୍ୟାନ୍ୟ ଶିକ୍ଷଣୀୟ ଘଟଣାମାନ ବର୍ଣ୍ଣନା କରି ମଧ୍ୟେ ମଧ୍ୟେ ପୁତ୍ରକନ୍ୟାମାନଙ୍କୁ ସ୍ନେହପୂର୍ଣ୍ଣ ପତ୍ର ଲେଖି, ସେମାନଙ୍କର କଳ୍ପନାଶକ୍ତିକୁ ଉଦ୍‌ବୁଦ୍ଧ କରିବା ସଙ୍ଗେସଙ୍ଗେ ସେମାନଙ୍କର ସୌନ୍ଦର୍ଯ୍ୟବୋଧ ଉଦ୍ଦୀପିତ କରୁଥିଲେ । ଥରେ ସେ ବୌଦ ଗଡ଼ଜାତ ରାଜ୍ୟରୁ କଟକରେ ଥିବା ତାଙ୍କ ପୁତ୍ର କନ୍ୟା ଓ ଭ୍ରାତୁଷ୍ପୁତ୍ରୀଙ୍କ ନିକଟକୁ କବିତାରେ ଯେଉଁ ପତ୍ରଟି ଲେଖିଥିଲେ, ତାହା ନିମ୍ନରେ ଉଦ୍ଧୃତ ହେଲା–

''ସରସ୍ୱତୀ, କୃଷ୍ଣା, ଶାନ୍ତି, ପ୍ରଶାନ୍ତି, ସାନ୍ତ୍ୱନା,
ସୁଖେ ରହ, ଈଶ-ପଦେ କରେ ଏ ପ୍ରାର୍ଥନା ।
x x x
ପଥେ ଦେଖୁଅଛି, କେତେ ବିଚିତ୍ର ସୁନ୍ଦର
ଗିରି ନଦନଦୀ ତରୁ ଲତା ମନୋହର;
ଆମ୍ଭେ ତ ପ୍ରଫୁଲ୍ଲମନେ ଏ ପାର୍ବତ୍ୟ ଦେଶେ,
ଫେରୁଅଛୁଁ ପ୍ରତିଦିନ ସ୍ମରି ପରମେଶେ ।

ଯେ, କୌଣସି କୁରୁଚିପୂର୍ଣ୍ଣ ନାଟକ, ଯାତ୍ରା ଏବଂ ବର୍ତ୍ତମାନ ଯୁଗରେ ଯାହାକୁ 'ସାଂସ୍କୃତିକ ଉତ୍ସବ' ନାମରେ ନାମିତ କରାଯାଏ, ତତ୍ତୁଲ୍ୟ କୌଣସି ଅସ୍ୱୀଅହଣୀୟ ଆମୋଦ ଉତ୍ସବାଦିରେ ଯୋଗଦେବାକୁ ସେ ସେମାନଙ୍କୁ ନିଷେଧ କରୁଥିଲେ । ଥରେ କଟକକୁ ଗୋଟିଏ ମହାରାଷ୍ଟ୍ରୀୟଦଳ ନାଟକ ଅଭିନୟ କରିବାକୁ ଆସିଥିଲେ । ନାଟ୍ୟଦଳର ପରିଚାଳକ ମଧୁସୂଦନଙ୍କୁ ଏ ନାଟକାଭିନୟ ଦେଖିବାକୁ ବିଶେଷଭାବରେ ଅନୁରୋଧ କରିଥିବାରୁ, ସାଧାରଣତଃ ନାଟତାମସା ପ୍ରତି ବୀତରାଗ ମଧୁସୂଦନ ଅଗତ୍ୟା ଏ ଅଭିନୟ ଦେଖିବାକୁ ଯାଇଥିଲେ । ସାଙ୍ଗରେ କନିଷ୍ଠା କନ୍ୟା, ଦୌହିତ୍ରୀ ଓ ଗୋଟିଏ ବାଳକ ପୁତ୍ର । ଅଳ୍ପ କିଛି ସମୟ ଅଭିନୟ ଦେଖିଲା ପରେ, କ'ଣ ହେଲା କେଜାଣି, ମଧୁସୂଦନ ଅତ୍ୟନ୍ତ ବିରକ୍ତ ହୋଇ ପିଲାମାନଙ୍କୁ ସାଙ୍ଗରେ ଧରି ପ୍ରେକ୍ଷାଳୟରୁ ଚାଲିଯିବାକୁ ପ୍ରସ୍ତୁତ ହେଲେ । ପାଖରେ ବସିଥିବା କେହି କେହି ଭଦ୍ରବ୍ୟକ୍ତି ତାଙ୍କୁ ଆଉ କିଛି ସମୟ ବସି ଅଭିନୟ ଦେଖିବାକୁ ଅନୁରୋଧ କଲେ; କିନ୍ତୁ ମଧୁସୂଦନ କାହାରି ଅନୁରୋଧ ପ୍ରତି ଭ୍ରୂକ୍ଷେପ ନକରି ଗମ୍ଭୀର ଭାବରେ ପ୍ରେକ୍ଷାଳୟ ବର୍ଜନକରି ଘରକୁ ଫେରିଗଲେ । ଏହି ନାଟକରେ କେବଳ ପୁରୁଷମାନେ ଅଭିନୟ କରୁଥିଲେ– ଅଭିନେତ୍ରୀ ନ ଥିଲେ କିମ୍ବା ନାରୀଭୂମିକାରେ କୌଣସି ପୁରୁଷ ଅଭିନୟ କରୁନଥିଲେ । ତଥାପି ଅଭିନେତାମାନଙ୍କର ସଂଳାପ, ଅଙ୍ଗଭଙ୍ଗୀ ଓ ନାଟକୀୟ କଳାରେ କୌଣସି ରୁଚିବିଗର୍ହିତ ଇଙ୍ଗିତ ଲକ୍ଷ୍ୟ କରି, ଏହା କାଳେ ଅଳ୍ପବୟସ୍କ ବାଳକ ବାଳିକାମାନଙ୍କ ଚରିତ୍ର ଉପରେ ଅନିଷ୍ଟକର ପ୍ରଭାବ ପକାଇପାରେ, ଏହି ଆଶଙ୍କାରେ ସେଦିନ ସେ ଲୌକିକ ସୌଜନ୍ୟପ୍ରତି ଦୃକ୍‌ପାତ ନକରି ପ୍ରେକ୍ଷାଳୟରୁ ଅପ୍ରତ୍ୟାଶିତ ଭାବରେ ନିଷ୍କ୍ରାନ୍ତ ହୋଇଥିଲେ । ଅବନ୍ତୀ ଦେବୀ ଲେଖିଅଛନ୍ତି– ଅଭିନୟ ଦେଖିବାକୁ ଯାଇଥିବା ବାଳକବାଳିକାମାନେ ସେତେବେଳେ ଅଳ୍ପବୟସ୍କ ହେଲେହେଁ ଏହି ଦୃଶ୍ୟ ସେମାନଙ୍କ ଅନ୍ତରରେ ଚିରଜାଗ୍ରତ ଅଛି । କିନ୍ତୁ ଏଇ ଅଳ୍ପଦିନ ତଳେ ଜଣେ ଦାୟିତ୍ୱସମ୍ପନ୍ନ ନେତୃସ୍ଥାନୀୟ କେନ୍ଦ୍ରୀୟ ବ୍ୟକ୍ତି ଗୋଟିଏ ସାଧାରଣ ସଭାରେ କହିଥିବା ପ୍ରକାଶ– ସିନେମାଶିଳ୍ପରେ ଶ୍ଳୀଳତା ଓ ଅଶ୍ଳୀଳତାର ପ୍ରଶ୍ନ ନେଇ ଏତେ ମୁଣ୍ଡ ଖର୍ଚ୍ଚ କରିବା ବିଶେଷ ବୁଦ୍ଧିମତ୍ତାର ପରିଚାୟକ ନୁହେଁ । ଏ ଦିଗରେ କୌଣସି ଅବାଞ୍ଛନୀୟ ଆନ୍ଦୋଳନ ଓ ଉତ୍ତେଜନା ସୃଷ୍ଟି ନକରି ଉଦାରଭାବ ପୋଷଣ କରିବା ଉଚିତ । ଚଳିଚ୍ଚିତ୍ର-ଯାଞ୍ଚ-ସମିତି ପକ୍ଷରୁ ସେ ଏପରି କହିଥିବା ପ୍ରକାଶ ।

## (ଘ) କେତେକ ପାରିବାରିକ ଚିଠିପତ୍ର

ମଧୁସୂଦନଙ୍କର ଘର ପ୍ରକୃତ ବୈକୁଣ୍ଠ ସମାନ ଥିଲା । ଗୋଟିଏ ବୃହତ୍ ଏକାନ୍ନବର୍ତ୍ତୀ ପରିବାର ମଧ୍ୟରେ ଏତେ ସ୍ନେହ, ସୌହାର୍ଦ୍ଦ୍ୟ, ପ୍ରୀତି ଓ ମୈତ୍ରୀ ଏ ଯୁଗରେ ବଡ଼ କ୍ୱଚିତ୍

ଦେଖିବାକୁ ମିଳେ । ମଧୁସୂଦନ ଗୃହକର୍ତ୍ତାରୂପେ ସାନବଡ଼ ସମସ୍ତଙ୍କୁ ସ୍ନେହର ସୁକୁମାର ବନ୍ଧନରେ ବାନ୍ଧିରଖିଥିଲେ । ପରିବାର ମଧ୍ୟରେ ଏତେ ଲୋକ; ତେଣୁ ପରସ୍ପର ମଧ୍ୟରେ ଭୁଲ ବୁଝାମଣା ସୃଷ୍ଟି ହେବା ଅସ୍ୱାଭାବିକ ନୁହେଁ । ଏହା ଫଳରେ ଗୃହକର୍ତ୍ତା ମଧୁସୂଦନଙ୍କୁ ବେଳେବେଳେ ଦୁଃଖ ଓ ଅପମାନର କଠୋର ଆଘାତ ସହିବାକୁ ପଡ଼ିଛି । ବେଦନାବ୍ୟଥିତ ପ୍ରାଣ ତାଙ୍କର ଦୁଃଖ ଓ୍ ନୈରାଶ୍ୟରେ ଆକୁଳ ହୋଇଉଠିଛି । ତଥାପି ସେ କାହାପ୍ରତି ବିଦ୍ୱେଷ କିମ୍ବା ଆକ୍ରୋଶ ପ୍ରକାଶ କରିନାହାନ୍ତି । କ୍ଷମା-ସୁନ୍ଦର ହୃଦୟ ତାଙ୍କର ସମସ୍ତଙ୍କୁ କ୍ଷମା-ଜଳରେ ବିଧୌତ କରିଦେଇଛି । ଅପମାନକାରୀ ବୟସରେ କନିଷ୍ଠ ହେଲେ ମଧ ତାକୁ ସ୍ନେହରେ ଆଲିଙ୍ଗନ କରି ସାଶ୍ରୁନେତ୍ରରେ ତା'ଠାରୁ କ୍ଷମାଭିକ୍ଷା କରିଅଛନ୍ତି । ପରିବାର ମଧ୍ୟରେ ଯେତେ ଜଟିଳ ସମସ୍ୟାର ଉଦ୍ଭବ ହେଲେ ମଧ ତାଙ୍କର ଏହି କ୍ଷମାଶୀଳତା ଯୋଗୁଁ ସବୁ ଅପ୍ରୀତିକର ସମସ୍ୟାର ନିର୍ବିବାଦ ସମାଧାନ ଅକ୍ଳେଶରେ ହୋଇପାରିଛି ।

"ଯାର ଖରତର ଶରେ ଜରଜର
ତାହାରି କଲ୍ୟାଣ ଅନ୍ତରର ଧ୍ୟାନ—
ନରତ୍ୱ ଦେବତ୍ୱ ଏକସଙ୍ଗେ ତା'ର ।"

ଅବନ୍ତୀ ଦେବୀଙ୍କ ଶ୍ୱଶୁର ପଣ୍ଡିତ ଶିବନାଥ ଶାସ୍ତ୍ରୀଙ୍କ ରଚିତ ଏବଂ ତାଙ୍କ ବଧୂ ଅବନ୍ତୀଙ୍କର ବାଲ୍ୟକାଳରୁ ସ୍ମୃତିକୋଷରେ ସଞ୍ଚିତ ଉପରୋକ୍ତ ପଙ୍‌କ୍ତି ମଧୁସୂଦନଙ୍କ ପ୍ରତି ସଂପୂର୍ଣ୍ଣ ପ୍ରଯୋଜ୍ୟ ।

ମଧୁସୂଦନ ବିଦ୍ୟାଳୟ ପରିଦର୍ଶନ କାର୍ଯ୍ୟରେ ସୁଦୂର ଗଡ଼ଜାତ କିମ୍ବା ଅନ୍ୟାନ୍ୟ ସ୍ଥାନକୁ ଗଲେ ସେଠାର ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଅନ୍ୟାନ୍ୟ ଶିକ୍ଷଣୀୟ ଘଟଣାମାନ ବର୍ଣ୍ଣନା କରି ମଧ୍ୟେ ମଧ୍ୟେ ପୁତ୍ରକନ୍ୟାମାନଙ୍କୁ ସ୍ନେହପୂର୍ଣ୍ଣ ପତ୍ର ଲେଖି, ସେମାନଙ୍କର କଳ୍ପନାଶକ୍ତିକୁ ଉଦ୍‌ବୁଦ୍ଧ କରିବା ସଙ୍ଗେସଙ୍ଗେ ସେମାନଙ୍କର ସୌନ୍ଦର୍ଯ୍ୟବୋଧ ଉଦ୍ଦୀପିତ କରୁଥିଲେ । ଥରେ ସେ ବୌଦ ଗଡ଼ଜାତ ରାଜ୍ୟରୁ କଟକରେ ଥିବା ତାଙ୍କ ପୁତ୍ର କନ୍ୟା ଓ ଭ୍ରାତୁଷ୍ପୁତ୍ରୀଙ୍କ ନିକଟକୁ କବିତାରେ ଯେଉଁ ପତ୍ରଟି ଲେଖିଥିଲେ, ତାହା ନିମ୍ନରେ ଉଦ୍ଧୃତ ହେଲା—

"ସରସ୍ୱତୀ, କୃଷ୍ଣା, ଶାନ୍ତି, ପ୍ରଶାନ୍ତି, ସାନ୍ତ୍ୱନା,
ସୁଖେ ରହ, ଈଶ-ପଦେ କରେ ଏ ପ୍ରାର୍ଥନା ।
X X X
ପଥେ ଦେଖୁଅଛି, କେତେ ବିଚିତ୍ର ସୁନ୍ଦର
ଗିରି ନଦନଦୀ ତରୁ ଲତା ମନୋହର;
ଆମ୍ଭେ ତ ପ୍ରଫୁଲ୍ଲମନେ ଏ ପାର୍ବତ୍ୟ ଦେଶେ,
ଫେରୁଅଛୁଁ ପ୍ରତିଦିନ ସ୍ମରି ପରମେଶେ ।

ଆଶାଙ୍କରେ ତୁମେ ସବୁ ସ୍ମରୁଛ ତାହାଙ୍କୁ
ପ୍ରତିଦିନ ସାୟଂକାଳେ....
ଭୁଲନା ତାହାଙ୍କୁ କେବେ ଭୁଲନା, ଭୁଲନା
ସରସ୍ୱତୀ, କୃଷ୍ଣା, ଶାନ୍ତି, ପ୍ରଶାନ୍ତ, ସାନ୍ତ୍ୱନା ।''

ଦ୍ୱିତୀୟା କନ୍ୟା କୃଷ୍ଣାର ଅପରନାମ ଅବନ୍ତୀ ।

ଥରେ ମଧୁସୂଦନ ଜ୍ୟେଷ୍ଠ ଜାମାତା ବିଜୟଚନ୍ଦ୍ର ମଜୁମଦାରଙ୍କ ସାଙ୍ଗରେ ନେଇ ଉତ୍ତର-ପଶ୍ଚିମ ଭାରତ ଭ୍ରମଣ କରିବାକୁ ଯାଇଥିଲେ । ପ୍ରୟାଗଠାରୁ ସେ ପତ୍ନୀ ପଦ୍ମାବାଈଙ୍କଠାକୁ ଯେଉଁ ପତ୍ର ଲେଖିଥିଲେ, ସେଥିରେ ତାଙ୍କର 'ଅଯୋଧ୍ୟା ପ୍ରତ୍ୟାଗମନ' କବିତାର କେତେକ ପଙ୍କ୍ତି ଉଦ୍ଧୃତ ହୋଇଥିଲା । ଏ କବିତାଟି ମୌଳିକ ନୁହେଁ, କାଳିଦାସଙ୍କ ସଂସ୍କୃତ 'ରଘୁବଂଶ'ରୁ ଅନୂଦିତ । ପତ୍ରରେ ଉଦ୍ଧୃତ ହୋଇଥିବା କବିତାଂଶଟି ଏହି–

''ଜାହ୍ନବୀ ଯମୁନାଯୋଗ ଦେଖ ଗୋ ସୁନ୍ଦରୀ !
ଶୁଭ୍ର ନୀଳଜଳ ଦିଶେ ରୁଚିର କିପରି;
ଇନ୍ଦ୍ରନୀଳ ପରେ ମୋତି ପୁଣି ଇନ୍ଦ୍ରନୀଳ,
ଗୁନ୍ଥାହେଲା ମାଳା ପ୍ରାୟେ ଦିଶଇ ସଲିଳ ।

x x x

ଅବା ଧଳା ଭସ୍ମବୋଳା ଶଙ୍କର ଶରୀର,
ଅସିତ ଉରଗେ ଯଥା ରାଜଇ ରୁଚିର,
କି ଅବା ଛାୟାରେ ମିଶି ଚିତ୍ର ଜ୍ୟୋସ୍ନାପରି,
ଦିଶଇ ପ୍ରେୟସୀ, ଗଙ୍ଗା-ଯମୁନା ଲହରୀ ।''

ନାତି-ନାତୁଣୀଙ୍କ ପ୍ରତି ମଧୁସୂଦନଙ୍କ ସସ୍ନେହ ବ୍ୟବହାର, କୌତୁକପ୍ରିୟତା ଓ ରସିକତା ମଧ ଲକ୍ଷ୍ୟ ଓ ସ୍ମରଣ କରିବାର ବିଷୟ । ଜ୍ୟେଷ୍ଠାକନ୍ୟା ବାସନ୍ତୀଙ୍କର ତୃତୀୟ ସନ୍ତାନ ସୁନୀତିର ନାମକରଣ ଉପଲକ୍ଷ୍ୟେ ମଧୁସୂଦନ ସମ୍ବଲପୁରରେ ଅବସ୍ଥାନ କରୁଥିବା ଜ୍ୟେଷ୍ଠ ଜାମାତା ବିଜୟଚନ୍ଦ୍ର ମଜୁମଦାରଙ୍କ ନିକଟକୁ ଯେଉଁ ଆଶିଷପୂର୍ଣ୍ଣ ପତ୍ର ଲେଖିଥିଲେ, ତାହା ନିମ୍ନରେ ପ୍ରଦତ୍ତ ହେଲା ।

କଟକ
୧୦ । ୧୧ । ୧୮୯୪

ପ୍ରାଣପ୍ରତିମେଷୁ,

ବାବା, ତୁମର ପତ୍ର ପାଇଛି । ଆଗାମୀ ରବିବାର ଖୁକୀର ନାମକରଣ ହେଉଛି ଜାଣି ସୁଖୀ ହେଲି । ନାମକରଣ ଉପଲକ୍ଷରେ ଏହି ଗୀତଟି ଲେଖୁଛି ।

ଦେଖିନାହିଁ ଚର୍ମନେତ୍ରେ, ଦେଖିଛି ପ୍ରେମନୟନେ,
ତବ କରୁଣାର ଦାନ, ମାଗୋ, ତବ କନ୍ୟାଧନେ ।

ଦରସ୍ଫୁଟ ଭାଷା ତା'ର, ଶୁଣିନି କର୍ଣ୍ଣ ମୋହର,
(ତେବେ) କି ଶବ୍ଦେ ମା, ବାଜିଉଠେ ପ୍ରାଣତନ୍ତ୍ରୀ ତା ଚିନ୍ତନେ ।

x x x

ମାଗୁଅଛି କରଯୋଡ଼ି ଆଶଙ୍କା ବ୍ୟାକୁଳ ମନେ,
ଶିଶୁକୁ ରଖ ତୁମ୍ଭର ପ୍ରେମକ୍ରୋଡ଼େ ଅନିବାର,
ହର ଦୁଃଖ ପିତାମାତାଙ୍କର ଭିକ୍ଷା ଏହି ଶ୍ରୀଚରଣେ,
ଏ ଶିଶୁ ଯେ ପରିବାରେ ଆସିଛି ଆଶିଷାକାରେ,
ଜାଗ୍ରତ ରଖ ମା ତହିଁ ପୁଣ୍ୟ 'ସୁନୀତି' ଯତନେ ।

ମଧୁସୂଦନଙ୍କ ଆଶୀର୍ବାଦରୁ ଏହି କନ୍ୟା ତାଙ୍କ ପିତାମାତାଙ୍କର ଏକମାତ୍ର ଜୀବିତସନ୍ତାନ ଏବଂ ସୁଲେଖିକାରୂପେ ପ୍ରତିଷ୍ଠା ଲାଭ କରିଅଛନ୍ତି ।

ଜ୍ୟେଷ୍ଠପୁତ୍ର ଡାକ୍ତର ଜୟନ୍ତ ରାଓଙ୍କର ପ୍ରଥମ ପୁତ୍ର ସନ୍ତାନଟି ଛଅମାସ ବୟସରେ ରକ୍ତାମାଶୟ ରୋଗରେ ଆକ୍ରାନ୍ତ ହୋଇ କଟକରେ ମୃତ୍ୟୁମୁଖରେ ପଡ଼ିଲା । ତାକୁ 'ନାନା' ବୋଲି ଡାକୁଥିଲେ । ଏହି ଶିଶୁପୁତ୍ରର ମୃତ୍ୟୁ ପରେ କନ୍ୟା ଅବନ୍ତୀ ଶୋକାହତ ପିତାଙ୍କୁ ଆଶ୍ୱାସନା ଦେବାପାଇଁ ଖଣ୍ଡିଏ ପତ୍ର ଲେଖିଥିଲେ । ସେହି ପତ୍ରର ଉତ୍ତରରେ ମଧୁସୂଦନ ତାଙ୍କ ନିକଟକୁ ଲେଖିଥିଲେ –

କଟକ
୩୦।୬।୧୯୧୦

ମା ମୋର,

ତୋର ପତ୍ର ପାଇଛି । ଚିଠିଟି ପଢୁପଢୁ ଚକ୍ଷୁ ଅଶ୍ରୁରେ ଭରିଉଠିଲା । ଏଇ କେତେଦିନ ହେଲା ସେହି ଦେବଶିଶୁର ମୂର୍ତ୍ତି ଏବଂ ମୁଖ ସର୍ବଦା ମୋ ଚକ୍ଷୁ ସମ୍ମୁଖରେ ଯେପରି ନାଚିଉଠୁଛି । ତା'ର ନୀଳୋଜ୍ଜ୍ୱଳ ଚକ୍ଷୁ ଦୁଇଟି ଯେପରି ନିର୍ମଳ-ଶାନ୍ତି ବିକିରଣ କରୁଛି । ଆଉ ଏ ଚର୍ମଚକ୍ଷୁରେ ମୁଁ ତାକୁ ଦେଖିପାରିବି ନାହିଁ । କିନ୍ତୁ ପ୍ରଭୁ କରନ୍ତୁ, ଯେପରି ତାହାର ଶୁଭ୍ର ପବିତ୍ର ଆନନଶ୍ରୀ ମୋର ସ୍ମୃତି-କୋଷରେ ସୁରକ୍ଷିତ ରହି ମୋତେ ଏହି 'ଶୁଦ୍ଧମପାପବିଦ୍ଧ', 'ସତ୍ୟଂ ଶିବଂ ସୁନ୍ଦରଂ' ପରମବ୍ରହ୍ମଙ୍କ ପ୍ରତି ଅନୁକ୍ଷଣ ଆକର୍ଷଣ କରେ ।

x x x

ଶ୍ରୀ ମଧୁସୂଦନ

—

# ଚତୁର୍ଦ୍ଦଶ ଅଧ୍ୟାୟ

# ଜୀବନର ନାନା କଥା

## (କ) ନମ୍ରତା ଓ ନିରହଙ୍କାରତା

ଏହି ଜୀବନଚରିତ ଲେଖକର ପିତା ସ୍ୱର୍ଗତ ପଣ୍ଡିତ ଆର୍ତ୍ତତ୍ରାଣ ଦାଶ ମଧୁବାବୁଙ୍କ ପୁତ୍ରକନ୍ୟାମାନଙ୍କର ଗୃହଶିକ୍ଷକରୂପେ ନିଯୁକ୍ତ ହୋଇ ତାଙ୍କ କଟକ ବାସଭବନରେ ଅଳ୍ପ କେତେ ମାସ ଥିଲେ । ମଧୁବାବୁ ତାଙ୍କର ପାଣ୍ଡିତ୍ୟର ପରିଚୟ ପାଇ ତାଙ୍କୁ ଗୋଟିଏ ସରଳ ଓଡ଼ିଆ ଅଭିଧାନ ଲେଖିବାରେ ନିୟୋଜିତ କରିଥିଲେ । ଅଭିଧାନର ନାମ 'ସୁଖବୋଧ ଅଭିଧାନ' । ଆଜିକାଲି ବହିବଜାରରେ ଏହି ବହି ବୋଧହୁଏ ଦୁଷ୍ପ୍ରାପ୍ୟ । ମୋର ସ୍ୱର୍ଗତ ପିତୃଦେବ ମୋତେ ମଧୁବାବୁଙ୍କ ସମ୍ବନ୍ଧରେ ଅନେକ କଥା କହୁଥିଲେ । ଏହି 'ସୁଖବୋଧ ଅଭିଧାନ' ସମ୍ବନ୍ଧରେ ସେ ମୋତେ ଓ ଅନ୍ୟମାନଙ୍କୁ ଏକାଧିକବାର କହିଅଛନ୍ତି । ମଧୁବାବୁ ଏହି ଅଭିଧାନ ସଙ୍କଳନରେ ତାଙ୍କୁ ବହୁତ ସମୟ ଖଟାଇ ପାରିଶ୍ରମିକ ସ୍ୱରୂପ ମାତ୍ର ପଚାଶଟି ଟଙ୍କା ଦେଇଥିଲେ । ମଧୁବାବୁଙ୍କଠାରେ ସେ ଅନ୍ୟ ସମସ୍ତ ସୁଗୁଣ ଦେଖିଥିଲେ, କିନ୍ତୁ ଟଙ୍କାପଇସା ବିଷୟରେ ସେ ସାଧାରଣ ଲୋକଙ୍କ ପରି କାର୍ପଣ୍ୟ-ବିମୁକ୍ତ ନଥିଲେ ।

କିନ୍ତୁ ଉପସ୍ଥିତ ଲେଖକ ପିତାଙ୍କଠାରୁ ଆଉ ଗୋଟିଏ ସ୍ମରଣୀୟ ଘଟଣା ଏକାଧିକ ବାର ଶୁଣିବାକୁ ପାଇଛି । ସେ ଘଟଣାଟି ଏପର୍ଯ୍ୟନ୍ତ ସ୍ମୃତିପଟରେ ଏପରି ଜାଜ୍ଜଲ୍ୟମାନ ହୋଇ ରହିଛି ଯେ, ତାହା ଉଲ୍ଲେଖ କରିବାର ଲୋଭ ସମ୍ବରଣ କରିହେଉନାହିଁ ।

ମୋର ପିତା ପଣ୍ଡିତ ଆର୍ତ୍ତତ୍ରାଣ ତିନିମାସ ଟ୍ରେନିଂ ପାଇବା ନିମନ୍ତେ ଶିକ୍ଷା ବିଭାଗର ନିର୍ଦ୍ଦେଶାନୁସାରେ କଟକ ଟ୍ରେନିଂ ସ୍କୁଲକୁ ଯାଇଥିଲେ । ମଧୁସୂଦନ ସେତେବେଳେ ଏହି ସ୍କୁଲର ଅଧ୍ୟକ୍ଷ । ଆର୍ତ୍ତତ୍ରାଣ ପୁରୀ ଜିଲ୍ଲାର ଗୋଟିଏ ମଧ୍ୟଭର୍ଣ୍ଣାକୁଲର ସ୍କୁଲର ହେଡ୍‌ପଣ୍ଡିତ । ତାଙ୍କ ସହିତ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଆଉ କେତେ ଜଣ ବର୍ଷୀୟାନ୍ ଶିକ୍ଷକ ମଧ୍ୟ ଏହି ତିନିମାସିଆ ଟ୍ରେନିଂ ପାଇବାପାଇଁ ଏହି ସ୍କୁଲକୁ ଆସିଥିଲେ । ଟ୍ରେନିଂକାଳ ପୂରିଯିବାରୁ ଦିନେ ଆର୍ତ୍ତତ୍ରାଣ ଅନ୍ୟ ଶିକ୍ଷକମାନଙ୍କୁ କହିଲେ, ''ଚାଲ, ମଧୁବାବୁଙ୍କ ସହିତ ଦେଖାକରି ଆସିବା । ଆଉ ତ ଜୀବନରେ ତାଙ୍କ ସହିତ ଦେଖା ହେବ କି ନାହିଁ ସନ୍ଦେହ । ତାଙ୍କଠାରୁ ବିଦାୟବାଣୀ ନେଇ ଯେଝା କର୍ମକ୍ଷେତ୍ରକୁ ଫେରିଯିବା ।'' ଏ ବିଚାର ସମସ୍ତଙ୍କ ମନକୁ ପାଇଲା । କଟକ ଛାଡ଼ିବା ପୂର୍ବଦିନ ସନ୍ଧ୍ୟାରେ ଏମାନେ

ସମସ୍ତେ ଯାଇ ମଧୁସୂଦନଙ୍କ ବସାରେ ଉପସ୍ଥିତ ହେଲେ । ମଧୁବାବୁ ଏମାନଙ୍କୁ ଦେଖି ପଚାରିଲେ, ''ସମସ୍ତେ ଏକଜୁଟ ହୋଇ କାହିଁକି ମୋ ପାଖକୁ ଆସିଲ ? ତୁମ କାମ ତ ସରିଯାଇଛି, ଏଥର ନିଜ ନିଜ ସ୍କୁଲକୁ ଫେରିଯାଅ ।'' ଦଳର ଅଗ୍ରଣୀ ରୂପେ ପଣ୍ଡିତ ଆର୍ତ୍ତତ୍ରାଣ ନମ୍ରଭାବରେ ତାଙ୍କୁ ନିବେଦନ କରି କହିଲେ, ''ଆପଣ ଜଣେ ଋଷିପ୍ରତିମ ବ୍ୟକ୍ତି । ବିଦାୟ ପୂର୍ବରୁ ଆମକୁ କିଛି ଉପଦେଶ ଦିଅନ୍ତୁ ।''

ସ୍ୱର୍ଗତ ପିତୃଦେବ ମୋତେ କହୁଥିଲେ, ''ଏତିକି ତ କହିଦେଇଛି, ଆଉ ଯିବୁ କୁଆଡ଼େ ? ଦେଖିଲି ମଧୁବାବୁଙ୍କ ମୁଖମଣ୍ଡଳ ହଠାତ୍ ଗମ୍ଭୀର ହୋଇଗଲା । ଚକ୍ଷୁ ଦୁଇଟି ପ୍ରାୟ ନିମୀଳିତ । ଶୁଦ୍ଧ ସାତ୍ତ୍ୱିକ ଭାବ ସମଗ୍ର ଶରୀରରେ ସୃଷ୍ଟି କରିଛି ମୃଦୁ ମଧୁ କମ୍ପନ । କେତେକ ମୁହୂର୍ତ୍ତ ପରେ ନୀରବତା ଭଙ୍ଗ କରି ସେ କହିଲେ, ''କ'ଣ କହିଲ, ମୁଁ ଋଷି-ପ୍ରତିମ ? ହାୟ, ହାୟ, ଆଜି ତୁମେ ଆର୍ଯ୍ୟ ଭାରତଭୂମିର ଗୌରବର ଧନ ଋଷିମାନଙ୍କ ପ୍ରତି କି ଅନ୍ୟାୟ ନ କଲ ? ଆଜି ପ୍ରାଚୀନ ଭାରତର ତପୋଭୂମି ତୁମରିଦ୍ୱାରା କି ଅପମାନିତ ନ ହେଲା ? ମୋ ପରି ଜଣେ ତୁଚ୍ଛ ସାଂସାରିକ ବ୍ୟକ୍ତିକୁ ତୁମେ ମୁନି-ଋଷିମାନଙ୍କ ସହିତ ସମାନ କରିଦେଲ ?'' ମଧୁବାବୁ ସେହି ମୁହୂର୍ତ୍ତରେ ଏପରି ଭାବ-ତନ୍ମୟ ହୋଇଯାଇଥିଲେ ଯେ ତାଙ୍କ ମୁହଁରୁ ଆଉ କୌଣସି ଶବ୍ଦ ନିଃସୃତ ହେଲା ନାହିଁ । ସେ କେବଳ ନୀରବ ନିଷ୍ପନ୍ଦ ହୋଇ ବସିରହିଥା'ନ୍ତି । ବିଦାୟ ନେଇ ଆସିଲାବେଳ ଦେଖିଲୁ ତାଙ୍କ ଚକ୍ଷୁରୁ ଦୁଇଧାର ଅଶ୍ରୁ ବହିଯାଉଛି । ଲୋତକ ପୋଛିଦେଇ ପଚାରିଲେ, ''ଚାଲିଯାଉଛ ଯେ ?'' ନମସ୍କାର କରି କହିଲୁ, ''ଆଜ୍ଞା, ଏଇ ପଦକ କଥାରୁ ଆମକୁ ଯଥେଷ୍ଟ ଶିକ୍ଷା ମିଳିଛି । ଆଉ କୌଣସି ଉପଦେଶର ଆବଶ୍ୟକତା ନାହିଁ ।''

ମଧୁବାବୁ ଏହିପରି ଋଷିପ୍ରତିମ ବ୍ୟକ୍ତି ଥିଲେ ।

## (ଖ) ଗୁରୁଭକ୍ତି ଓ ବନ୍ଧୁ-ପ୍ରୀତି

ରାଧାନାଥ ଓ ଫକୀରମୋହନଙ୍କ ପ୍ରତି ମଧୁସୂଦନଙ୍କର ଭକ୍ତି, ସମ୍ମାନ ଓ ଶ୍ରଦ୍ଧା ବାସ୍ତବରେ ଅତି ଗଭୀର ଓ ଅକୃତ୍ରିମ ଥିଲା । ଏହାର ଭୂରିଭୂରି ପ୍ରମାଣ ତାଙ୍କ ଜୀବନ-ଚରିତରୁ ମିଳେ ।

ଫକୀରମୋହନ ଡୋମପଡ଼ାରେ ଦ୍ୱିତୀୟଥର ଦେବାନୀ (୧୮୯୪-୯୬) କରୁଥିବାବେଳେ ତାହାଙ୍କର ଦ୍ୱିତୀୟା ପତ୍ନୀ କୃଷ୍ଣାକୁମାରୀ ଦେବୀଙ୍କର ମୃତ୍ୟୁ ହୋଇଥିଲା । ସେତେବେଳକୁ ତାଙ୍କ ପୁଅର ବୟସ ତେର ଏବଂ କନ୍ୟାଟିର ବୟସ ଏଗାର । ଡୋମପଡ଼ାରେ ଏ ଦୁହିଁଙ୍କର ପଢ଼ାଶୁଣାର କୌଣସି ସୁବିଧା ହେବ ନାହିଁ ଦେଖି ସେ ସେମାନଙ୍କୁ ନେଇ କଟକ ଗଲେ । ଫକୀରମୋହନ ନିଜ ଆତ୍ମଚରିତରେ ଏ ସମ୍ପର୍କରେ ଲେଖିଛନ୍ତି, ''ମୋହର ପରମ ବନ୍ଧୁ ପରମ ଧାର୍ମିକ ମଧୁସୂଦନ ରାଓ ପିଲା

ଯୋଡ଼ିକୁ ଆପଣା ଘରେ ରଖିବାକୁ ଇଚ୍ଛା ପ୍ରକାଶ କଲେ । ସେ ସମୟରେ ମଧୁବାବୁ କଟକ ନର୍ମାଲ ସ୍କୁଲର ସୁପରିଣ୍ଟେଣ୍ଡେଣ୍ଟ୍ । ସେହି ସ୍କୁଲରେ ତାଙ୍କର ବସା । ପିଲାମାନଙ୍କୁ ସମସ୍ତ ପ୍ରକାର ଖରଚ ବାବଦ ମାସିକ ଟ.୩୫ ହିସାବରେ ତିନିମାସର ଖରଚ ସକାଶେ ଏକଶତ ଟଙ୍କା ମଧୁବାବୁଙ୍କ ହାତରେ ଦେଇ, ମୁଁ ଡୋମପଡ଼ା ଚାଲିଗଲି । ପିଲାମାନେ ଏକବର୍ଷ ପର୍ଯ୍ୟନ୍ତ ମଧୁବାବୁଙ୍କ ଘରେ ଥିଲେ । ପରେ ଗୋଟିଏ ସ୍ୱତନ୍ତ୍ର କୋଠା ଭଡ଼ା କରି ସେମାନଙ୍କୁ ସେଠାରେ ରଖାଇଲି ।''

କେବଳ ମଧୁସୂଦନଙ୍କ ସହିତ ନୁହେଁ, ତାଙ୍କ ପରିବାରର ପୁତ୍ରକନ୍ୟା ସମସ୍ତଙ୍କ ସହିତ ଫକୀରମୋହନଙ୍କର ଘନିଷ୍ଠ ସୌହାର୍ଦ୍ଦ୍ୟ ଥିଲା । ନିଜେ ଅବନ୍ତୀ ଦେବୀ ଲେଖିଛନ୍ତି, ''ଫକୀରମୋହନ ସେମାନଙ୍କ ପିତୃଦେବଙ୍କ ବୟୋଜ୍ୟେଷ୍ଠ; ସେମାନେ ବାଲ୍ୟକାଳରୁ ତାହାଙ୍କୁ ଜ୍ୟେଷ୍ଠ ପିତୃବ୍ୟଙ୍କ ପରି ଭକ୍ତି ଶ୍ରଦ୍ଧା କରୁଥିଲେ । ମଧୁସୂଦନଙ୍କର କୌଣସି ନୂତନ ରଚନା ପ୍ରକାଶପାଇଲେ, ଫକୀରମୋହନ ତାହା ଦେଖି ତାଙ୍କ ନିକଟକୁ ଆସି ଆନନ୍ଦରେ ବିହ୍ୱଳ ହୋଇ ତାଙ୍କୁ କେତେ ଯେ ଧନ୍ୟ ଧନ୍ୟ କରୁଥିଲେ, ତାହା ଏବେ ସୁଦ୍ଧା ମୋ ସ୍ମୃତି-ପଟରେ ଦୀପ୍ତିମନ୍ତ ହୋଇ ରହିଛି ।''

ମଧୁସୂଦନଙ୍କ ସଦ୍‌ଗୁଣରାଶିରେ ଫକୀରମୋହନ ଅତ୍ୟନ୍ତ ବିମୋହିତ ହୋଇ ୧୮୯୧-୯୨ରେ ଲିଖିତ ତାଙ୍କର 'ଉତ୍କଳ-ଭ୍ରମଣ'ର ପ୍ରଥମ ସଂସ୍କରଣରେ ଲେଖିଥିଲେ –

''ହେ ମଧୁସୂଦନ, ଋଷି ଚରିତ୍ର ମନୁଷ୍ୟ,
ବଞ୍ଚିଥାଅ ଭାଇ, ନେଇ ମୋହର ଆୟୁଷ ।
ଆଦର୍ଶ ମନୁଷ୍ୟ ଯେବେ ଦେଖିବାକୁ ଚାଓ,
ଧାଇଁ ଯାଇ ଥରେ ଦେଖି ଆସ ମଧୁ ରାଓ ।
ନିର୍ମଳ ପବିତ୍ର ମନ ନିର୍ମଳ ସ୍ୱଭାବ,
ମୂର୍ତ୍ତିମନ୍ତ ହୋଇଅଛି ଯେହ୍ନେ ଧର୍ମଭାବ ।
ସୁଶୀଳତା ପବିତ୍ରତା ଶାନ୍ତି ଏକାଧାରେ,
ଯାଅ ଯାଅ ଦେଖ ମଧୁ ରାଓ ପରିବାରେ ।
ପ୍ରଶାନ୍ତ, ବାସନ୍ତୀ, ଶାନ୍ତି, ଶାରଦା, ମାଧୁରୀ,
ସମସ୍ତେ ଅଛନ୍ତି ମଧୁ ରାଓ ଘରେ ପୂରି ।
ଜୟନ୍ତ ସମାନ ପୁତ୍ର ଶୁଦ୍ଧପୂତମନା,
ଦେଖି ଦେଖି ଦିଏ ସିନା ମନକୁ ସାନ୍ତ୍ୱନା ।
ବହେ ରାଓ ଘରେ ବ୍ରହ୍ମ ସଙ୍ଗୀତ-ଭାରତୀ,
ପବିତ୍ର ହୃଦୟା ଯଥା ରେବା-ସରସ୍ୱତୀ ।

ମାତ୍ରକ କଥାଏ ମନେ ପଡ଼େ ବେଳେବେଳେ,
କେତେଥର ମନେ କଲି ପଚାରିବି ବେଳେ,
ଓଜନରେ ହେବ ମଧୁ ଅଢ଼ାଇ ପସୁରି,
କିପରି ରଖିଛି ଏତେ ଗୁଣ ପେଟେ ପୂରି ?''

ଏହି ଦୀର୍ଘ ଚାଳିଶିବର୍ଷର ନିରବଚ୍ଛିନ୍ନ ସ୍ନେହ-ସୌହାର୍ଦ୍ଦ୍ୟର ସ୍ୱର୍ଣ୍ଣସୂତ୍ର ଛିନ୍ନ କରି ମଧୁସୂଦନ ଯେତେବେଳେ ସ୍ୱର୍ଗପ୍ରୟାଣକଲେ ଶୋକାକୁଳଚିତ୍ତ ଫକୀରମୋହନଙ୍କ ଲେଖନୀରୁ ନିଃସାରିତ ହୋଇଥିଲା ବେଦନାର ଏହି ନିଗୂଢ଼ କାହାଣୀ –

''କେତେ ତପସ୍ୟାର ଫଳେ ଉତ୍କଳ-ଜନନୀ,
ଲଭିଥିଲେ ଏକମାତ୍ର ପୁତ୍ର ଗୁଣମଣି ।
ଉତ୍କଳରେ ଯାହା ନାମ ଖ୍ୟାତ ଗ୍ରାମେ ଗ୍ରାମେ,
ସେ ମଧୁସୂଦନ ବର୍ତ୍ତମାନ ସ୍ୱର୍ଗଧାମେ ।
ଚାଳିଶି ବରଷ କାଳ ତାହାଙ୍କୁ ମୁଁ ଜାଣେ,
କରିଛି କିଅଦ୍ଭୁତ ଗୁଣ ଅନୁଭବ ପ୍ରାଣେ ।

X X X

ମଧୁସ୍ଥାନ ପୂର୍ଣ୍ଣ ହେବ କେବେ ସମ୍ଭାବନା,
କେତେ ଯୁଗ-ଯୁଗାନ୍ତରେ ଈଶ୍ୱରଙ୍କୁ ଜଣା ।
ଦରିଦ୍ର ଉତ୍କଳଭାଷା ମଧୁଠାରେ ଋଣୀ,
ଏକ କଥା, ଥିଲେ ମଧୁ ସର୍ବଗୁଣେ ଗୁଣୀ ।
ମୋହର ହୃଦୟ ବନ୍ଧୁ ଶ୍ରୀ ମଧୁସୂଦନ,
ତାହା ବିନା ମତେ ଏବେ ଅସାର ଜୀବନ ।
ଦୟାମୟ ଜଗଦୀଶ ହେ ଭୂତଭାବନ,
ମଧୁ ପରିବାରେ ଶାନ୍ତି କରନ୍ତୁ ସ୍ଥାପନ ।''

ଫକୀରମୋହନଙ୍କ ସ୍ନେହାନୁଗତ ମଧୁସୂଦନ ମଧ ବ୍ୟାସକବିଙ୍କର ଏକନିଷ୍ଠ ସାରସ୍ୱତ ସାଧନାରେ ବିମୁଗ୍ଧ ଓ ବିସ୍ମୟାପ୍ଳୁତ ହୋଇ ତାଙ୍କ ପ୍ରତି ହୃଦୟର ଅକୃତ୍ରିମ ଶ୍ରଦ୍ଧା ଓ ଭକ୍ତି ନିବେଦନ କରିବାକୁ ଯାଇ ଆବେଗମୟୀ ଭାଷାରେ ଲେଖିଥିଲେ –

''ଜନ୍ମଭୂମି ଉତ୍କଳର ପରମ ଭକତ !
ସୁକ୍ଷଣେ ଜନମ ତବ ଆହେ ପୁଣ୍ୟବ୍ରତ ।

X X X

ପୁଣ୍ୟ ରାମାୟଣ ମହାଭାରତର କଥା,
ଗମ୍ଭୀର ମଧୁର କେତେ ଅମୃତ ବାରତା ।

ସରଳ ତରଳ ତବ ସଙ୍ଗୀତ ତରଙ୍ଗେ,
ହରଷେ ଭସାଅ କବି ନାନା ରସସଙ୍ଗେ ।
ଉତ୍କଳ-ଧରଣୀ-ଜନ-ହୃଦୟ ତରଣୀ
ଧନ୍ୟ ହେଉ ବିଭୁବରେ ତବ ସୁଲେଖନୀ ।''

'କବି ଶ୍ରୀ ଫକୀରମୋହନ ସେନାପତି' ଶୀର୍ଷକ ଏହି କବିତାଟି ୧୯୦୧ରେ ପ୍ରକାଶିତ 'ବସନ୍ତ-ଗାଥା'ରେ ଦେଖିବାକୁ ମିଳେ । ଏହି କବିତା ରଚନା ସମୟକୁ ଫକୀରମୋହନଙ୍କ ଔପନ୍ୟାସିକ ପ୍ରତିଭାର ପରିସ୍ଫୁର୍ତ୍ତି ଘଟିନାହିଁ – ତାଙ୍କର ସାହିତ୍ୟ-ସାଧନା ଚରମୋତ୍କର୍ଷ ଲାଭ କରିନାହିଁ । ଫକୀରମୋହନଙ୍କର ଅବସ୍ଥାନ ସେତେବେଳେ କଟକରେ । ୧୯୦୨ ମସିହାକୁ କେବଳ ମହାଭାରତର ଅଷ୍ଟାଦଶ ପର୍ବର ଅନୁବାଦ ଶେଷ ହୋଇଛି । ସେତେବେଳକୁ ବାଲେଶ୍ୱରର ଶାନ୍ତି-କାନନରେ 'ମାମୁଁ', 'ପ୍ରାୟଶ୍ଚିତ୍ତ' 'ବୌଦ୍ଧାବତାର' କାବ୍ୟ ଏବଂ 'ଆତ୍ମ-ଚରିତ' ରଚିତ ହୋଇନାହିଁ ।

ସ୍ୱର୍ଗତ କବି ରାଧାନାଥଙ୍କ ପ୍ରତି ମଧୁସୂଦନଙ୍କର ସମ୍ମାନ, ଭକ୍ତି, ପ୍ରୀତି ଓ ଶ୍ରଦ୍ଧା କିପରି ଥିଲା ତାହା ବିଶେଷଭାବରେ ବର୍ଣ୍ଣନା କରିବାର ଆବଶ୍ୟକତା ନାହିଁ । ଏ ଦୁହେଁ ଗୁରୁ-ଛାତ୍ର ହୋଇ ମଧ ହରିହର-ଆତ୍ମା ଥିଲେ । ଉଭୟେ ପରସ୍ପରର ପ୍ରତିବେଶୀ, ମଝିରେ ଗୋଟିଏ ମାତ୍ର ପ୍ରାଚୀର ବ୍ୟବଧାନରୂପେ ସଲଜ୍ଜଭଙ୍ଗୀରେ ଦଣ୍ଡାୟମାନ । ଦୁହେଁ ଶିକ୍ଷକ, ଶିକ୍ଷାବିଭାଗର ପଦସ୍ଥବ୍ୟକ୍ତି; ଦୁହେଁ କବି ଓ କବିଯଶଃପ୍ରାର୍ଥୀ । ଦୁହେଁ ମାନବିକତାର ମହତ୍ତ୍ୱରେ ମହୀୟାନ୍ – ଦୁହେଁ ଦେଶହିତୈଷୀ – ନମ୍ର-ନିରହଙ୍କାର ଓ ନୀରବସାଧକ । ଦୁହେଁ ଆତ୍ମବଡ଼ିମା ବିମୁକ୍ତ । ଦୁହିଁଙ୍କଠାରେ ଏହି ଆପ୍ତ ବଚନଟି ସମାନ ଭାବରେ ପ୍ରଯୋଜ୍ୟ – 'ସା ଶିକ୍ଷା ଯା ବିମୁକ୍ତୟେ ।' ୧୯୦୩ରେ ପ୍ରକାଶିତ 'କୁସୁମାଞ୍ଜଳି' କବିତା ପୁସ୍ତକକୁ ମଧୁସୂଦନ ରାଧାନାଥଙ୍କ ନାମରେ ଉତ୍ସର୍ଗ କରି ଲେଖିଅଛନ୍ତି, ''ମୋର ପୂଜ୍ୟପାଦ କୈଶୋରଗୁରୁ, ପରମାତ୍ମୀୟ ଯୌବନସଖା, ଚିରଜୀବନର ପରମହିତୈଷୀ, ପବିତ୍ର-ସାହିତ୍ୟ-ସେବା-ବ୍ରତର ପଥପ୍ରଦର୍ଶକ, ବନ୍ଦନୀୟ କବି ଶ୍ରୀ ରାଧାନାଥ ରାୟ ମହୋଦୟ – ଶ୍ରୀଚରଣକମଳରେ ଏ 'କୁସୁମାଞ୍ଜଳି' ଶ୍ରଦ୍ଧାଭକ୍ତିରେ ଉତ୍ସର୍ଗ କଲି ।'' ରାଧାନାଥଙ୍କ ପ୍ରତି ପ୍ରଯୁକ୍ତ ହୋଇଥିବା ଏହି ବିଶେଷଣଗୁଡ଼ିକ ଅନ୍ୟମାନଙ୍କ ଦୃଷ୍ଟିରେ ଯାହାହେଉ, କିମ୍ବା ଏହାର ଯେକୌଣସି କଦର୍ଥ କରାଯାଉ ନା କାହିଁକି, ଅନୁଭବୀ ମଧୁସୂଦନଙ୍କର ଏହା ପ୍ରାଣର ନିଗୂଢ଼ ମର୍ମବାଣୀ । ଏଥିରେ ଅତିରଂଜନ କିମ୍ବା ଅସତ୍ୟର କିଞ୍ଚିନ୍ମାତ୍ର ଅପଳାପ ନାହିଁ । ଏହା ତାଙ୍କର ଅନ୍ତରର ଅତଳପ୍ରଦେଶରୁ ଉତ୍ସାରିତ ସ୍ୱତଃସ୍ଫୁର୍ତ୍ତ କଥା । ଏଇ ବର୍ଷେ ଦୁଇବର୍ଷ ତଳର କଥା । ବିଶ୍ୱବିଦ୍ୟାଳୟର ଉଚ୍ଚତମ ଉପାଧିଜଡ଼ିତ ଜଣେ ଅଧ୍ୟାପକ ସେଦିନ ଦାମ୍ଭିକତା ପ୍ରକାଶ କରି କହୁଥିଲେ– ମୋ ବହି ଯେପରି ମୂଲ୍ୟବାନ୍ କିମ୍ବା ଉପାଦେୟ ହୋଇନଥିଲେ ମୁଁ

ଅମୁକଙ୍କ ନାମରେ ତାହା ଉତ୍ସର୍ଗ କରିନଥା'ନ୍ତି । ଏହା କହି ତା' ପରେ ଯାହାକୁ ବହିଟି ଉତ୍ସର୍ଗ କରାଯାଇଛି ସେହି ବ୍ୟକ୍ତିଙ୍କର 'ଚତୁର୍ଦ୍ଦଶ ପୁରୁଷର ଶ୍ରାଦ୍ଧ,' କାରଣ ସେ କୁଆଡ଼େ କାହା ଆଗେ ଏହି ବହିର ଦୋଷ ଗାଉଥିଲେ । ଏହି ପଚାଶବର୍ଷ ମଧ୍ୟରେ ଆମେ ଉତ୍ସର୍ଗ ପତ୍ର ନିବେଦନ କରିବାରେ କେତେଦୂର ଅତ୍ୟାଧୁନିକ, ସ୍ୱାଧୀନମନା ଓ ପ୍ରଗତିଶୀଳ ହୋଇଛୁଁ ତାହାର ଜ୍ୱଳନ୍ତ ପ୍ରମାଣ ଉପର୍ଯ୍ୟୁକ୍ତ ଘଟନାଟି । 'କୁସୁମାଞ୍ଜଳି'ର ଉତ୍ସର୍ଗପତ୍ରରେ ରାଧାନାଥଙ୍କର ଗୁଣଗାନ କରି ମଧ୍ୟ ତାଙ୍କ 'ମହାଯାତ୍ରା'ରେ ସେହି ରାଧାନାଥଙ୍କର ଦୋଷ ଦର୍ଶାଇବାରେ ମଧୁସୂଦନ ପଶ୍ଚାତ୍‌ପଦ ହୋଇନାହାନ୍ତି କିମ୍ବା ରାଧାନାଥ ତାହା ଦେଖି ମଧୁସୂଦନଙ୍କର ନିନ୍ଦାବାଦ କରିନାହାନ୍ତି ।

ସେ ଯାହାହେଉ, ରାଧାନାଥ ମଧୁସୂଦନଙ୍କ ଘରକୁ 'ମଧୁ' 'ମଧୁ' ଡାକି ପଶି ଆସିଲା ମାତ୍ରକେ ମଧୁସୂଦନ ଯେଉଁ ଅବସ୍ଥାରେ ଥାଆନ୍ତୁ ପଛକେ, କୋଠରି ଭିତରୁ ଅସ୍ତବ୍ୟସ୍ତ ହୋଇ ବାହାରିପଡ଼ି ରାଧାନାଥଙ୍କ ପାଦତଳେ ନତମସ୍ତକ ହୋଇ ପ୍ରଣାମ କରି ଅତି ଆଦରରେ ନେଇ ତାଙ୍କୁ ଉପଯୁକ୍ତ ଆସନରେ ବସାନ୍ତି । ସେହିପରି ମଧୁସୂଦନ ରାଧାନାଥଙ୍କ ଘରକୁ ଗଲେ ଆଗେ ରାଧାନାଥଙ୍କ ସହଧର୍ମିଣୀ ପରଶମଣି ଦେବୀଙ୍କର ପଦବନ୍ଦନା କରନ୍ତି । ସେ ମଧ୍ୟ ମଧୁସୂଦନ ଓ ତାଙ୍କ ପତ୍ନୀ ପଦ୍ମାବାଈଙ୍କୁ ନିଜର ପୁତ୍ର ଓ ପୁତ୍ରବଧୂ ପରି ସ୍ନେହଶ୍ରଦ୍ଧା କରୁଥିଲେ । ରାଧାନାଥଙ୍କ ପୁତ୍ର ସାହିତ୍ୟିକ ସ୍ୱର୍ଗତ ଶଶିଭୂଷଣ ମଧ୍ୟ ସେହି ସ୍ନେହ-ସୌହାର୍ଦ୍ଦ୍ୟ ମଧୁସୂଦନଙ୍କ ପରିବାର ପ୍ରତି ଆମରଣ ଅକ୍ଷୁଣ୍ଣ ରଖିଥିଲେ ।

ରାଧାନାଥଙ୍କ ମୃତ୍ୟୁ ସମ୍ବାଦ ପୁରୀରେ ପାଇ ମଧୁସୂଦନ କିପରି ଶୋକାକୁଳ ହୋଇପଡ଼ିଥିଲେ ତାହାର ହୃଦୟସ୍ପର୍ଶୀ ଚିତ୍ର କନ୍ୟା ଅବନ୍ତୀ ଦେବୀ ପ୍ରଦାନ କରିଅଛନ୍ତି । ୧୯୦୮ ଏପ୍ରିଲ ୧୬ ତାରିଖରେ କଟକରେ ରାଧାନାଥଙ୍କର ଦେହାନ୍ତ ଘଟେ । ତହିଁ ପରଦିନ, ଅର୍ଥାତ୍ ଏପ୍ରିଲ ୧୭ ଶୁକ୍ରବାର ପୁରୀରେ ଉତ୍କଳ ସମ୍ମିଳନୀର ପଞ୍ଚମ ଅଧିବେଶନ । ମଧୁସୂଦନ ସମ୍ମିଳନୀରେ ଯୋଗଦେବାକୁ ପୁରୀ ଯାଇଥା'ନ୍ତି । ୧୭ ତାରିଖ ସକାଳେ ରାଧାନାଥଙ୍କ ମୃତ୍ୟୁ-ସମ୍ବାଦ ପୁରୀର ଚତୁର୍ଦ୍ଦିଗରେ ମୁହୂର୍ତ୍ତକ ମଧ୍ୟରେ ବ୍ୟାପିଗଲା । ମଧୁସୂଦନ ଏ ସମ୍ବାଦ ପାଇ ଗୋଟିଏ ଘରେ କବାଟ ବନ୍ଦକରି ପଡ଼ିରହିଲେ । ସମ୍ମିଳନୀରେ ଯୋଗଦେବା ତ ଦୂରର କଥା, ସେଦିନ ସେ ଘରୁ ପଦାକୁ ବାହାରିନାହାନ୍ତି । ପରଦିନ ସେ ଶଶିଭୂଷଣ ରାୟଙ୍କୁ ଏହି ପତ୍ର ଲେଖିଥିଲେ —

"ବତ୍ସ !

ମୁଁ ଶୋକ-ସମ୍ବାଦ ପାଇ ବଜ୍ରାହତ ତୁଲ୍ୟ ଏଠାରେ ପଡ଼ିରହିଛି । ସେ ମୋର କ'ଣ ନଥିଲେ ! ହାୟ, ଅନ୍ତିମକାଳରେ ତାଙ୍କର ପାଦପଦ୍ମରେ ମଥା ରଖିପାରିଲି ନାହିଁ ! ଅଧମ ହତଭାଗ୍ୟ ପାପୀ ମୁଁ । ସେ ପାଦସ୍ପର୍ଶ ମୋ ଭାଗ୍ୟରେ ଘଟିଲା ନାହିଁ ।

ମା'ଙ୍କ କଥା ଭାବି ଓ ତୁମ କଥା ଭାବି ଅତ୍ୟନ୍ତ କାତର ହୋଇପଡ଼ିଛି ।

× × × ଏ ବିଷମ କାଳରେ ପରାତ୍ପର ପ୍ରଭୁଙ୍କ ବିନା କିଏ ଆଉ ସାନ୍ତ୍ୱନା ଦେଇପାରିବ ? ସେ ଏହି ସଂକଟକାଳରେ ତୁମ୍ଭମାନଙ୍କର ଶୋକଦଗ୍ଧ ପ୍ରାଣ ଶୀତଳ କରନ୍ତୁ ଏବଂ ତୁମ୍ଭମାନଙ୍କର ଚିରସହାୟ ହୁଅନ୍ତୁ ।

ପରାତ୍ପର ପରମାତ୍ମା ବାବାଙ୍କର ଆତ୍ମାଙ୍କୁ ତାଙ୍କର ସେହି ପରମାଭୟ ଶାନ୍ତିମୟ ପାଦପଦ୍ମର ଛାୟାରେ ନିରନ୍ତର ରକ୍ଷା କରନ୍ତୁ ।

ଓଁ ଶାନ୍ତିଃ ଶାନ୍ତିଃ ହରିଃ ଓଁ ।

ମଧୁସୂଦନ ।''

ମଧୁସୂଦନଙ୍କ ରଚିତ 'ରାଧାନାଥ ବିୟୋଗ' ନାମକ କବିତାରେ ଏହି ମର୍ମନ୍ତୁଦ ବେଦନାର କାରୁଣ୍ୟମୟ ରୂପାୟନ ଦେଖିବାକୁ ମିଳେ ।

''ସହସ୍ର ସ୍ମୃତିର ଅଶ୍ରୁ-ମିଶା ଆତୁରତା
ବହୁ ବରଷର ହର୍ଷ ବିଷାଦ ବାରତା,
ଆଲୋଡ଼ଇ ଏବେ ଏହି ଶୋକାର୍ତ୍ତ ଅନ୍ତର
କି ଲେଖିବି ? ଚଳୁନାହିଁ ଲେଖନୀ ମୋହର ।

X X X

ଜାଣୁ ମାଗୋ ବାଣୀରାଣୀ ଏହି ଭବଧାମେ
ପରିଚିତ ଥିଲେ କବି ରାଧାନାଥ ନାମେ,
ସେହି ନାମେ ବରଷିତ ହେଉ ଅନୁକ୍ଷଣ
ଉତ୍କଳର ଭକ୍ତି-ପ୍ରୀତି-କୁସୁମ-ଚନ୍ଦନ ।
କବି ମାତ୍ର ରାଧାନାଥ ସାଧାରଣଙ୍କର
କିନ୍ତୁ ଦେବୀ ଜାଣୁ ତୁହି କି ଥିଲେ ମୋହର !
କୈଶୋରର ଶିକ୍ଷାଗୁରୁ ସଦା ସୁବତ୍ସଳ,
ଯୌବନର ପ୍ରାଣବନ୍ଧୁ ଏକାନ୍ତ ସରଳ,
ସାହିତ୍ୟ ସାଧନା-କ୍ଷେତ୍ରେ ଶିକ୍ଷାଦାତା ସଖା,
ଯାବତ ନଥିଲା ବାଜି ଆଦର୍ଶର ଧକ୍କା ।
ଜୀବନେ ସଂସାର ଧାମେ ନିଃସ୍ୱାର୍ଥ ତତ୍ପର;
ମହୋତ୍ତମ ହିତକାରୀ ଥିଲେ ସେ ମୋହର;
ପିତା-ମାତା-ଗୁରୁ-ସଖା ଯେହ୍ନେ ଏକାଧାରେ,
ଲଭିଥିଲି ମାଗୋ ତାଙ୍କୁ ପାଇ ତୋ କୃପାରେ ।''

ସାଧାରଣ ଲୋକଙ୍କ ପ୍ରତି ମଧ ମଧୁସୂଦନଙ୍କର ବ୍ୟବହାର ଅତି ମଧୁର ଓ କୋମଳ ଥିଲା । ଦରିଦ୍ରମାନଙ୍କର ଦୁଃଖ ଦେଖିଲେ ତାଙ୍କର ଆତୁର ହିୟା ସମବେଦନାରେ ଥରି ଉଠୁଥିଲା । ଘରର ଚାକରବାକରଙ୍କ ପ୍ରତି ସେ ବଡ଼ ସହାନୁଭୂତିଶୀଳ ଓ ସଦୟ ଥିଲେ । ମିଷ୍ଟବଚନ କହି ସେମାନଙ୍କର ମନ ହରଣ କରୁଥିଲେ । କାହାପ୍ରତି ଅନାଦର କିମ୍ବା ତୁଚ୍ଛତାଚ୍ଛିଲ୍ୟ ହେୟଭାବ ମଧୁସୂଦନଙ୍କର ନଥିଲା ।

ମଧୁସୂଦନ ଯେତେବେଳେ ନର୍ମାଲ ଟ୍ରେନିଂ ସ୍କୁଲର ଅଧକ୍ଷ ଥିଲେ, ସେତେବେଳେ ଫକୀର ବେହେରା ବୋଲି ଗୋଟିଏ ଚାକର ଥିଲା । ଜାତିରେ ସେ ଗଉଡ଼ । ତା'ର ସ୍ତ୍ରୀର ମୃତ୍ୟୁ ହେବାରୁ ଏକମାତ୍ର ଶିଶୁପୁତ୍ରଟିକୁ ଆଣି ସେ ନିଜ ପାଖରେ ରଖିଥିଲା । ସେହି ପିଲାଟି ୧୧।୧୨ ବର୍ଷ ବୟସରେ ହଇଜାରେ ଆକ୍ରାନ୍ତ ହୋଇ ମରିଗଲା । ଏହି ପୁତ୍ର ବିୟୋଗ-ବିଧୁର ଫକୀର ଗଉଡ଼କୁ କୋଳରେ ଜାକିଧରି ମଧୁସୂଦନ କିପରି 'ଭୋ' 'ଭୋ' ହୋଇ କାନ୍ଦିଥିଲେ, ସେ କରୁଣମହିମାମୟ ଦୃଶ୍ୟ ଏବେ ମଧ ତାଙ୍କ ସ୍ମୃତିପଟରେ ଜାଜ୍ୱଲ୍ୟମାନ ହୋଇ ରହିଛି ବୋଲି ଅବନ୍ତୀ ଦେବୀ ଉଲ୍ଲେଖ କରିଅଛନ୍ତି ।

କଟକ କାଠଯୋଡ଼ି ନଦୀର ଦକ୍ଷିଣତୀରରେ ଥିବା ଗୋଟିଏ ଗ୍ରାମର କୃଷକ ପରିବାରର ଯୁବତୀବଧୂ ଶାଶୁଘରର ଗଞ୍ଜଣା ସହି ନପାରି ଦୁଗ୍ଧପୋଷ୍ୟ ଶିଶୁକୁ ଘରେ ଏକା ଛାଡ଼ିଦେଇ କାନ୍ଦି କାନ୍ଦି ନଦୀ ପାରହୋଇ କଟକକୁ ଚାଲିଆସିଲା । ଦୈବାତ୍ ମଧୁସୂଦନଙ୍କର ଜଣେ ବନ୍ଧୁ ସେହି ଯୁବତୀଟିକି ଦେଖି ତାହାକୁ ପଦ୍ମାବାଈଙ୍କ ନିକଟକୁ ଆଣିଲେ । ପତ୍ନୀଙ୍କଠାରୁ ଯୁବତୀର କରୁଣ କାହାଣୀ ଶୁଣି ମଧୁବାବୁ ବଡ଼ ଅସ୍ଥିର ହୋଇପଡ଼ିଲେ । ତାହାଠାରୁ ତା'ର ଶଶୁରର ପରିଚୟ ପାଇ ତାକୁ ସାଙ୍ଗରେ ନେଇ ନଈ ପାର ହୋଇ ତା ଶଶୁରଘରେ ଛାଡ଼ିଦେଇ ଆସିଲେ । ଗୃହତ୍ୟାଗିନୀ ସେହି ଯୁବତୀବଧୂକୁ ସେଦିନ ଦାଣ୍ଡରେ ଭିଖାରିଣୀ ହେବାକୁ ପଡ଼ିଥା'ନ୍ତା, ଯେବେ ମଧୁସୂଦନଙ୍କ ପରି ପ୍ରତିଷ୍ଠାବାନ୍ ଓ ଭକ୍ତିଭାଜନ ବ୍ୟକ୍ତି ତାକୁ ସାଙ୍ଗରେ ନେଇ ଶଶୁରଘରେ ଛାଡ଼ିଦେଇ ଆସିନଥା'ନ୍ତେ । ଗ୍ରାମର କେହି କେହି ପୁରୁଖାଲୋକ ସେ ଯୁବତୀକୁ ପୁଣି ସମାଜରେ ଗ୍ରହଣ କରିବାକୁ ଅନିଚ୍ଛା ପ୍ରକାଶ କରୁଥିଲେ; କିନ୍ତୁ ମଧୁସୂଦନଙ୍କ କଥା ଉପରେ କଥା କହିବାର ସାହସ ସେମାନଙ୍କର ନ ଥିଲା ।

—

# ପଞ୍ଚଦଶ ଅଧ୍ୟାୟ

## ମଧୁସୂଦନ-ଗୋପବନ୍ଧୁ-ରବୀନ୍ଦ୍ରନାଥ

"The late lamented Rao Madhusudan Rao Bahadur, the late Inspector of Schools, Orissa, in his presidential address which was in Oriya, at the last session of the Puri District Educational Conference held at Satyabady said, "Some sacrificing and patriotic young men have set up a school here (at Satybady). I bow down my head before the institution which I consider to be a noble example of self-sacrifice and burning faith and I hope it will stand as a temple of learning for the advancement and edification of our people."

ସ୍ୱଦେଶପ୍ରାଣ ଗୋପବନ୍ଧୁଙ୍କ ପ୍ରେରଣା ଓ ଉଦ୍ୟମରେ ସତ୍ୟବାଦୀର ମଞ୍ଜୁଳ ଛୁରୀଅନାକୁଞ୍ଜରେ ୧୬।୬।୧୯୧୨ରେ ପୁରୀ ଜିଲ୍ଲା ଶିକ୍ଷା ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ ସଭାପତିତ୍ୱ କରିଥିଲେ ଅବସରପ୍ରାପ୍ତ ଭକ୍ତକବି ମଧୁସୂଦନ ରାଓ । ସେହି ବର୍ଷ ଡିସେମ୍ବର ୨୮ ତାରିଖରେ ତାଙ୍କର ଦେହାନ୍ତ ହେଲା । ପୁରୀ ଜିଲ୍ଲା ଶିକ୍ଷା ସମ୍ମିଳନୀ ପରେ ସେ ଆଉ କୌଣସି ସଭାସମିତିରେ ଯୋଗ ଦେଇ ନାହାନ୍ତି ।

ସେହି ସମ୍ମିଳନୀର ଅଭ୍ୟର୍ଥନା ସମିତିର ସଭାପତିରୂପେ ପଣ୍ଡିତ ଗୋପବନ୍ଧୁ ଯେଉଁ ଭାଷଣ ଦେଇଥିଲେ, ତାହା ଆଜିକି 'ଅର୍ଦ୍ଧଶତାବ୍ଦୀ ଅତିକ୍ରାନ୍ତ ହୋଇଥିଲେ ମଧ ବର୍ତ୍ତମାନ ଯୁଗର ଶିକ୍ଷାବିତ୍ ଓ ଚିନ୍ତାଶୀଳ ବ୍ୟକ୍ତିଙ୍କୁ ବହୁକ୍ଷେତ୍ରରେ ଆଲୋକ ଦେବ ।' ଏହି ଭାଷଣରେ ପୁରୀ ଜିଲ୍ଲା ତଥା ସମଗ୍ର ଉତ୍କଳରେ ଶିକ୍ଷାର ବହୁଳପ୍ରସାର ନିମନ୍ତେ ଗୋପବନ୍ଧୁ ଯେଉଁ ଯୁକ୍ତିଯୁକ୍ତ ଓ ଯୁଗୋପଯୋଗୀ ଚିନ୍ତାଧାରାର ଅବତାରଣା କରିଥିଲେ, ଆମରଣ ଶିକ୍ଷାପ୍ରେମୀ ମଧୁସୂଦନ ସେଥିରେ ସମ୍ପୂର୍ଣ୍ଣ ଏକମତ ଥିଲେ । ସେଥିରେ ପୁଣି ଗୋପବନ୍ଧୁ ତାଙ୍କର କର୍ମମୟ ଜୀବନରେ ଯେପରି ଗଭୀର ଦେଶାତ୍ମବୋଧ ଓ ଅବିଚଳିତ ଭଗବଦ୍‌ପ୍ରେମରେ ଅନୁପ୍ରାଣିତ ଥିଲେ, ମଧୁବାବୁଙ୍କ ଜ୍ଞାନ, କର୍ମ ଓ କାବ୍ୟସାଧନାର ପଟ୍ଟଭୂମିରେ ଥିଲା ସେହିପରି ଅଖଣ୍ଡ ବିଭୁପ୍ରେମ, ସୁତୀବ୍ର ନୀତି-ବୋଧ ଓ ଗଭୀର ଆଦର୍ଶନିଷ୍ଠା । ତେଣୁ ସେତେବେଳେ ଗୋପବନ୍ଧୁ ଏହି ଜିଲ୍ଲା ଶିକ୍ଷା-ସମ୍ମିଳନୀରେ ସଭାପତିରୂପେ ଉତ୍କଳରୁ ଆଉ କାହାକୁ ନବାଛି, ବାଛିଥିଲେ ଟାଉନ୍ ଭିକ୍ଟୋରିଆ ହାଇସ୍କୁଲର ପ୍ରତିଷ୍ଠାତା, ଶିକ୍ଷାବିତ୍ ଓ ସୁରୁଚିବାନ୍ ବ୍ୟକ୍ତି ଏବଂ ସେତେବେଳେ

ଭକ୍ତକବିରୂପେ ଉତ୍କଳରେ ସୁପରିଚିତ ମଧୁସୂଦନ ରାଓଙ୍କୁ । ଗୋପବନ୍ଧୁ ସତ୍ୟବାଦୀ ବିଦ୍ୟାଳୟ ପ୍ରତିଷ୍ଠା କରି ଏହାର ପରିଚାଳନା କରୁଥିଲାବେଳେ ଯେଉଁ ଜୀବନାଦର୍ଶ ସେ ସେହି ସ୍କୁଲର ସହକର୍ମୀମାନଙ୍କ ସମ୍ମୁଖରେ ଦୃଢ଼ତାର ସହିତ ଉପସ୍ଥାପନ କରିଥିଲେ ତାହା ହେଉଛି, ''ପରାଧୀନଭାବ ଦାସତ୍ୱ, ସ୍ୱାଧୀନଭାବ ବିଭୁତ୍ୱ । ସ୍ୱାଧୀନତାର ଭାବରେ ସାକ୍ଷାତ୍ ଭଗବାନଙ୍କୁ ଆଗରେ ଦେଖି, ତାଙ୍କର ସତ୍ତା ଅନୁଭବ କରିବାକୁ ହେବ । ସ୍ୱାଧୀନତା ବାହାରେ ନାହିଁ, ଏହା ଆତ୍ମାରେ ପ୍ରତିଷ୍ଠିତ । ଆତ୍ମ-ଶାସନହିଁ ଏହାର ସାଧନା; ତିତିକ୍ଷାହିଁ ଏହାର ମନ୍ତ୍ର ।'' ମଧୁସୂଦନ ମଧ ଏହି ଚିନ୍ତା, ସ୍ୱାଧୀନତାବୋଧ, ଆତ୍ମପ୍ରତିଷ୍ଠା, ତିତିକ୍ଷା ଏବଂ ଆତ୍ମଶାସନ ସାଧନାରେ ପ୍ରଗାଢ଼ ବିଶ୍ୱାସ ସ୍ଥାପନ କରିଥିଲେ । ଟାଉନ୍ ଭିକ୍ଟୋରିଆ ହାଇସ୍କୁଲ ପରିଚାଳନାରେ ଶିକ୍ଷାବିତ୍‌ରୂପେ ତାଙ୍କର ଏହି ସ୍ୱାଧୀନ ମନୋଭାବ ସୁପରିସ୍ଫୁଟ ହୋଇଥିଲା । ସ୍କୁଲ ନିମନ୍ତେ ସରକାରୀ ସାହାଯ୍ୟ ଗ୍ରହଣକରି ସରକାରଙ୍କ ବିଧିବିଧାନ-ନିୟମକାନୁନକୁ ସେ ମୁଣ୍ଡପାତି ଗ୍ରହଣ କରିବାକୁ କୁଣ୍ଠିତ ହେଉଥିଲେ । ସେ ଟାଉନଭିକ୍ଟୋରିଆ ହାଇସ୍କୁଲରେ ପ୍ରତି ଶନିବାରେ ସେଠାର ଛାତ୍ରମାନଙ୍କୁ ଧର୍ମ ଓ ନୀତି-ଉପଦେଶ ଦେବାକୁ ଯାଇ ଉଦ୍‌ବୋଧନ ଦେଉଥିଲେ – ''ନିଖିଳବିଶ୍ୱର ଏକମାତ୍ର କାରଣ ମଙ୍ଗଳମୟ ପରମେଶ୍ୱରଙ୍କର ପବିତ୍ର ବିଧି ଏବଂ ଆଦେଶ ଜୀବନରେ ଉପଲବ୍ଧି କରି ତାହା ଅନୁଷ୍ଠାନ କରିବା ଧର୍ମ । ହେ ମନୁଷ୍ୟ, ସର୍ବଦା ଧର୍ମାଚରଣ କର । ଧର୍ମ ସମସ୍ତଙ୍କ ପକ୍ଷରେ ସର୍ବଶ୍ରେଷ୍ଠ ଅବଲମ୍ବନ ଏବଂ ଅମୃତମୟ ମଧୁସ୍ୱରୂପ – କଦାପି ସତ୍ୟରୁ ବିଚ୍ଛିନ୍ନ ହେବ ନାହିଁ, ଧର୍ମରୁ ବିଚ୍ଛିନ୍ନ ହେବ ନାହିଁ, ମଙ୍ଗଳରୁ ବିଚ୍ଛିନ୍ନ ହେବ ନାହିଁ ।'' ଗୋପବନ୍ଧୁ ସେହିପରି ଦେଶବାସୀ, ବିଶେଷଭାବରେ ସତ୍ୟବାଦୀ ବିଦ୍ୟାଳୟର ଛାତ୍ରମାନଙ୍କ ପ୍ରାଣରେ ଧର୍ମବୋଧ ଓ ଦେଶାତ୍ମଭାବ ଉଦ୍ରେକ କରିବା ନିମନ୍ତେ ବାରମ୍ବାର କହୁଥିଲେ, ''ଆପଣା କର୍ତ୍ତବ୍ୟ ସାଧନ କରି ଫଳାଫଳ ବିଧାତାଙ୍କ ଉପରେ ନ୍ୟସ୍ତ କରିଦେବା ଭାରତର ଚିରନ୍ତନ ଧର୍ମ । ଏହି ଧର୍ମରେ ସୁଦୃଢ଼ ଏବଂ ବଳୀୟାନ୍ ନହେବାଯାଏ ଭାରତର ଆତ୍ମଶକ୍ତି ପ୍ରକାଶ ପାଇବ ନାହିଁ ।'' ଛାତ୍ରମାନଙ୍କର ଚରିତ୍ର-ଗଠନ ଉପରେ ମଧୁସୂଦନ ଶିକ୍ଷାବିତ୍ ଭାବରେ ଯେପରି ତୀକ୍ଷ୍ଣ ଦୃଷ୍ଟି ଦେଉଥିଲେ, ସତ୍ୟବାଦୀର ଶିକ୍ଷକଗୋଷ୍ଠୀ ତଥା ଗୋପବନ୍ଧୁ ମଧ ସେହିପରି ସତ୍ୟବାଦୀ ବିଦ୍ୟାଳୟର କୁଳ-ସମ୍ମିଳନୀରେ ଛାତ୍ରମାନଙ୍କୁ 'ଚରିତ୍ରଂ ହି ପରଂବଳଂ' ଏ ସମ୍ବନ୍ଧରେ ଉଦ୍‌ବୋଧନ ଦେବାକୁ ଯାଇ ଥରେ ନୁହେଁ ବାରମ୍ବାର କହୁଥିଲେ, ''ତୁମ୍ଭେମାନେ ଆର୍ଯ୍ୟଭୂମିର ସନ୍ତାନ । ଏହି ଋଷିପୂତ ଭୂମିରେ ତୁମ୍ଭର ଜନ୍ମ । ଋଷିରକ୍ତ ତୁମ୍ଭ ଧମନୀରେ ବହୁଅଛି । ଏ ତୁମ୍ଭ ଅତୀତର ମହୀୟସୀ ସ୍ମୃତି । ଏ ପୁରାଣମହନୀୟ ଅତୀତର ଉପଯୁକ୍ତ ହେବା ତୁମ୍ଭର ଲକ୍ଷ୍ୟ । ପୁଣି ଏହି ଅତୀତ ବଳରେ, ଏହି ମହତ୍ ଜୀବନର ପୁଣ୍ୟ ପ୍ରସାରଣରେ ତୁମ୍ଭେ ଜାତିର ଭବିଷ୍ୟତ ଦେଖୁଅଛ । ତୁମ୍ଭେ ପୂର୍ବପୁରୁଷର ଉପଯୁକ୍ତ ଦାୟାଦ ହେବ ଏବଂ ପୁତ୍ର ପୌତ୍ରାଦି ତୁମ୍ଭଙ୍କୁ ଉପଯୁକ୍ତ ପୂର୍ବପୁରୁଷ

ଭାବଧାରାର ଗମ୍ଭୀର ପ୍ରତିଧ୍ୱନି ଦେଖିବାକୁ ମିଳେ ମଧୁସୂଦନଙ୍କ ଦେଶାତ୍ମବୋଧଦ୍ୟୋତକ 'ଭାରତ-ଭାବନା' କବିତାରେ; କବି ଯେଉଁଠାରେ ବ୍ରହ୍ମବାଦୀ ଆର୍ଯ୍ୟଋଷିଗଣଙ୍କର ଅପୂର୍ବ ବ୍ରହ୍ମ-ତେଜ ସ୍ମରଣ କରି ଲେଖିଅଛନ୍ତି –

''କାହିଁ ସେହି ଦିନ, ଯେବେ ପବିତ୍ର ଆଶ୍ରମେ
ସମାସୀନ ବ୍ରହ୍ମବାଦୀ ଆର୍ଯ୍ୟ ଋଷିଗଣ –
ବଶୀନ୍ଦ୍ର ବଶିଷ୍ଠ, ଅତ୍ରି ଅଟଳ ସଂଯମେ,
ଅଗ୍ନିସଙ୍କାଶ ଅଙ୍ଗିରା, ବ୍ୟାସ ତପୋଧନ,
ରାଜର୍ଷି ଜନକ ନିତ୍ୟ ଶାନ୍ତି-ପରାୟଣ,
ଧାୟିଲେ ସୃଷ୍ଟିର ତତ୍ତ୍ୱ ମଜ୍ଜି ତପସ୍ୟାରେ,
ଆନନ୍ଦେ ବିସ୍ମୟେ, ଆହା କଲେ ଦରଶନ,
ବ୍ୟାପି ଅକୂଳ ଅନନ୍ତ ଘୋର ଅନ୍ଧକାରେ,
ବିରାଜିତ ବ୍ରହ୍ମଜ୍ୟୋତି ନିସ୍ତରଙ୍ଗ କାଳପାରାବାରେ ।''

ଚରିତ୍ର-ଗଠନ ସମସ୍ୟାକୁ ନାନାଦିଗରୁ ବିଶ୍ଳେଷଣ କରି ଥରେ ସତ୍ୟବାଦୀ ବନ-ବିଦ୍ୟାଳୟର କୁଳପତି ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇଥିଲେ, ''ବିଧାତାଙ୍କ କରୁଣାରେ ଆମ୍ଭେମାନେ ବୁଦ୍ଧି ଓ ବିଚାର ପାଇଅଛୁଁ । ସେହି ଦୟାରେ ଜଗତ ଅଛି, ଚଳୁଅଛି । ବିଧାତା ସମସ୍ତଙ୍କୁ ଦୟା କରନ୍ତି, ସ୍ନେହ କରନ୍ତି । ଯେଉଁଠାରେ ଦୟା, ସ୍ନେହ, ସତ୍ୟ, ପ୍ରୀତି ଆମ୍ଭେ ଦେଖୁ ତାହା ସେହି ବିଧାତାଙ୍କଠାରୁ ଆସିଅଛି । ପିତା ପୁତ୍ରକୁ ସ୍ନେହ କଲାବେଳେ ମଧ୍ୟ ଆମ୍ଭେମାନେ ସେହି ବିଧାତାଙ୍କର ସ୍ନେହର କଣିକାଏ ସେଠାରେ ପାଉଁ । ସେଥିପାଇଁ ଆମ୍ଭେ ବିଧାତାଙ୍କୁ କହୁଁ, 'ବିଶ୍ୱପିତା', 'ବିଶ୍ୱନିୟନ୍ତା', 'ବିଶ୍ୱବନ୍ଧୁ' ଓ 'ବିଶ୍ୱରାଟ' । ସେହି ଅନନ୍ତ କରୁଣାମୟ ପ୍ରୀତିମୟ ବିଧାତାହିଁ ତେଣୁ ଆମ୍ଭର ଆଦର୍ଶ । ବିଧାତାଙ୍କର ପ୍ରେମ ଦେଖି ମୁଗ୍ଧ ହୁଅ ଏବଂ ଜୀବନରେ ସେହି ପ୍ରେମର ଯଥାସାଧ୍ୟ ଅନୁକରଣ କର । ମହାପୁରୁଷମାନେ ତାହାହିଁ କରନ୍ତି । ତୁମ୍ଭେମାନେ ମହାପୁରୁଷମାନଙ୍କ ଜୀବନରୁ ଏହାହିଁ ଶିଖିବ । ସେମାନେ ଅନନ୍ତପ୍ରେମରେ ଜୀବନ ଫିଟାଇ ରଖିଥିଲେ । ତୁମ୍ଭମାନଙ୍କୁ ମଧ୍ୟ ଶିକ୍ଷା ଦିଆଯାଏ, ''ତୁମେ ଅନ୍ୟଠାରୁ ଯେପରି ବ୍ୟବହାର ପାଇବାକୁ ଇଚ୍ଛା କର, ଅନ୍ୟ ପ୍ରତି ସେହିପରି ବ୍ୟବହାର କର'', ବରଂ ଆହୁରି ଟିକିଏ ଭଲକରି କହିଲେ କୁହାଯିବ—ବିଧାତାଙ୍କଠାରୁ ଯାହା ତୁମେ ପାଉଅଛ, ଜଗତ୍ ପାଉଅଛି ତୁମ୍ଭ ଜୀବନରେ ସେହି ଭାବ ବ୍ୟକ୍ତ କରି ପରପାଇଁ ଜୀବନ ଧାରଣ କର । ପର ଦୁଃଖ ଅନୁଭବ କର । ତୁମ୍ଭର ଆତ୍ମା ପ୍ରସାରିତ ହେଉ – ଜଗତ୍‌ରେ ବିସ୍ତୀର୍ଣ୍ଣ ହେଉ । ଆଧୁନିକ ସାହିତ୍ୟ-ସମାଲୋଚକମାନେ ଏହା ପଢ଼ି ଖୋଜି ନ ବସିଲେ ରକ୍ଷା ଯେ, ଏହି ଭାବ ନିମନ୍ତେ ମଧୁସୂଦନ, ଗୋପବନ୍ଧୁ କିମ୍ବା ସତ୍ୟବାଦୀ-ସାହିତ୍ୟଠାରେ ଋଣୀ ନା ମଧୁସୂଦନଙ୍କ ଭଗବତ୍‌ପ୍ରାଣତାଦ୍ୱାରା ଗୋପବନ୍ଧୁ ପ୍ରଭାବିତ ।

ଯେଉଁ ଗୋପବନ୍ଧୁ ଥରେ ତରୁଣପ୍ରାଣର ଉଦ୍ଦୀପ୍ତ ଉନ୍ମାଦନାରେ ଆମକୁ ପୁଣ୍ୟ ପ୍ରେରଣା ଦେବାକୁ ଯାଇ ଲେଖିଥିଲେ –

''ଧର୍ମ ଅନୁକୂଳ ସେବ ମୋ କାମନାଚୟ,
ସାଧନେ ଶକତି ଦଅ ପ୍ରଭୁ ଦୟାମୟ ।''

କିମ୍ବା

'ଶିବରାତ୍ରି' କବିତାରେ –

''ଶୁଚିମନ୍ତ ହୋଇ ନିତି ଜ୍ଞାନଦୀପ ଜାଳି
ଶୁଦ୍ଧ ଭକ୍ତିରସ ଦିଅ ସେ ଶ୍ରୀପଦେ ଢାଳି ।
ଉଜାଗର ରହି କର ତାଙ୍କ ପ୍ରିୟ କର୍ମ
ପାଇବାକୁ ବାଞ୍ଛା ଯେବେ ଶିବରାତ୍ରି ଧର୍ମ ।
ସମସ୍ତ ଜୀବନ କର ଏକ ଶିବରାତ୍ରି,
ଅନ୍ଧାରେ ନହୁଡ଼ ପଥ, ହେ ସରଗ-ଯାତ୍ରୀ ।''

ସେହି ଧର୍ମପ୍ରାଣ ଗୋପବନ୍ଧୁ ଯେ ଭବିଷ୍ୟତରେ ତାଙ୍କପରି ଜଣେ ସମାନଧର୍ମା, ଅପାପବିଦ୍ଧ ଏବଂ ସତ୍ୟ-ଶିବ-ସୁନ୍ଦରର ଉପାସକ, ସତ୍ ମନୁଷ୍ୟ, ସୁପରିଚିତ କବି ଏବଂ ଉଦାରଚିତ୍ତ ଶିକ୍ଷାବିତ୍‌ଙ୍କୁ ଅଲକ୍ଷିତ ଭାବରେ ସତ୍ୟବାଦୀରେ ଅନୁଷ୍ଠିତ ହେଉଥିବା ଜିଲ୍ଲା ସମ୍ମିଳନୀରେ ପୌରୋହିତ୍ୟ କରିବାକୁ ନିମନ୍ତ୍ରଣ କରିବେ, ଏଥିରେ ବିସ୍ମିତ ହେବାର କିଛି ନାହିଁ ।

ଏହି ସମ୍ମିଳନୀର ଅଭ୍ୟର୍ଥନା ସମିତିର ସଭାପତିରୂପେ ତାଙ୍କ ଭାଷଣର ଉପସଂହାରରେ ସେଦିନ ଗୋପବନ୍ଧୁ ଭାବାନୁପ୍ରାଣିତ ହୋଇ କହିଥିଲେ, ''ଉତ୍କଳ ଜାତିର ଏହି ଅବଶ୍ୟମ୍ଭାବୀ ଭବିଷ୍ୟତରେ ବିଶ୍ୱାସ ରଖି ଏବଂ ସେହି ସର୍ବଶକ୍ତିମାନ୍ ମଙ୍ଗଳନିଧାନ ବିଧାତାଙ୍କ ଆଶୀର୍ବାଦ ଉପରେ ନିର୍ଭର କରି, ଆସ ଜାତୀୟ ଆନ୍ଦୋଳନରେ ଆପଣାକୁ ନିୟୋଜିତ କରି ଧନ୍ୟ ହେବା, ପବିତ୍ର ହେବା । ପବିତ୍ର ସାଧୁକାର୍ଯ୍ୟରେ ସନ୍ଦେହ ବା ଶଙ୍କା ନାହିଁ । ଭଗବାନ୍ ଆମ୍ଭମାନଙ୍କୁ ଉତ୍ସାହ ଓ ଆଶ୍ୱାସନା ଦେଇ କହୁଅଛନ୍ତି– ''ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ, ତ୍ରାୟତେ ମହତୋ ଭୟାତ୍ ।''

ସଭାପତି-ଅଭିଭାଷଣରେ ସେଦିନ ମଧୁସୂଦନ କହିଥିଲେ, ''ବର୍ତ୍ତମାନ ଯୁଗର ଉତ୍କଳ ଅପେକ୍ଷା ଅଧଃପତିତ ପ୍ରଦେଶ ଭୂ-ଭାରତରେ ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । ଏ ଲଜ୍ଜାବନତ ଦୈନ୍ୟ ଦୁର୍ଗତିର ଦୁଃସହ ବେଦନା ତୀବ୍ରରୂପେ ଅନୁଭବ କରିବା ଅର୍ଥାତ୍ ଆପଣାର ବ୍ୟାଧିକୁ ପ୍ରକୃତରୂପେ ଚିହ୍ନି ବ୍ୟାକୁଳ ହୃଦୟରେ ତା'ର ପ୍ରତିକାର ଲୋଡ଼ିବା ଆମ୍ଭମାନଙ୍କର ସର୍ବପ୍ରଧାନ କର୍ତ୍ତବ୍ୟ ।''

ମଧୁସୂଦନଙ୍କ ସହିତ ଅକୃତ୍ରିମ ଦେଶାତ୍ମବୋଧର ସମକୋଟୀରେ ଅବସ୍ଥିତ ଗୋପବନ୍ଧୁ ଏହି ସମ୍ମିଳନୀ ପରେ ଉତ୍କଳୀୟମାନଙ୍କର ବ୍ୟାଧିର ପ୍ରତିକାର ନିମନ୍ତେ ବ୍ୟାକୁଳ ପ୍ରାଣରେ ଆତ୍ମନିୟୋଗ କଲେ; କିନ୍ତୁ ହାୟ, ମଧୁସୂଦନଙ୍କର ସହଯୋଗ ଏ

କ୍ଷେତ୍ରରେ ଲାଭ କରିବାକୁ ଆଉ କାଳ ସହିଲା ନାହିଁ। ସେହିପରି ମୃତ୍ୟୁର ଅଳ୍ପଦିନ ପୂର୍ବେ ବ୍ୟାସକବି ଫକୀରମୋହନ ଗୋପବନ୍ଧୁଙ୍କଦ୍ୱାରା ନିମନ୍ତ୍ରିତ ହୋଇ ସତ୍ୟବାଦୀ ବିଦ୍ୟାଳୟରେ ତିନି ଚାରିଦିନ ରହିଥିଲେ। ଏଠାରୁ ବିଦାୟ ନେବାଦିନ ବାଷ୍ପାକୁଳ କଣ୍ଠରେ ଗୋପବନ୍ଧୁଙ୍କୁ କହିଥିଲେ, "ମୁଁ ପୁଣି ଥରେ ପିଲାହୋଇ ଏ ବିଦ୍ୟାଳୟରେ ପଢ଼ନ୍ତି କି ?"

ପୁରୀ ଜିଲ୍ଲାର ଶିକ୍ଷା-ସମ୍ମିଳନୀ ଉପଲକ୍ଷେ ମଧୁସୂଦନ ଯେଉଁ ଉଦ୍‌ବୋଧନ ସଙ୍ଗୀତଟି ରଚନା କରିଥିଲେ ସେଥିରୁ ତାଙ୍କର ଦେଶହିତୈଷଣା ଓ ଓଡ଼ିଶାରେ ଶିକ୍ଷାର ପ୍ରସାର ନିମନ୍ତେ ତାଙ୍କ ପ୍ରାଣର ବ୍ୟାକୁଳତାର ସ୍ପଷ୍ଟ ପରିଚୟ ମିଳେ।

"ଜାଗୁଛ କି ଉତ୍କଳ-ସନ୍ତାନେ, ଜଡ଼ତା-ନିଦ୍ରାର ଅବସାନେ।
X X X X
ଦୂରେ ଫିଙ୍ଗି କ୍ଷୁଦ୍ର ସ୍ୱାର୍ଥର ବନ୍ଧନ, ପୁଣ୍ୟ ପୁରୁଷାର୍ଥେ ନିବେଶିଣ ମନ,
ନିବେଦିବ କି ହେ ମାନବ ଜୀବନ, ଉତ୍କଳର ମଙ୍ଗଳ ସାଧନେ ?
X X X X
ଉଭାହୁଅ ତେବେ ଅଟଳ ସଂକଳ୍ପେ, ପରିହରି ବୃଥା ବିଳାସର ତଳ୍ପେ,
ତେଜିଣ ଅସାର ବାବଦୂକ-ଗଳ୍ପେ, ଜାଗ ଜାଗ ବିଧିର ଆହ୍ୱାନେ।"

ପଲ୍ଲୀକବି ନନ୍ଦକିଶୋର ବଳ ୧୩୨୦ ସାଲ ପୌଷ ଓ ମାଘ 'ଉତ୍କଳ ସାହିତ୍ୟ'ର 'ମଧୁସୂଦନ' ସଂଖ୍ୟାରେ ଲେଖିଥିଲେ, "ଗୋପବନ୍ଧୁ ଦାସ ପ୍ରମୁଖ ଯୁବକମଣ୍ଡଳୀ ଉତ୍କଳରେ ନବଯୁଗ ଓ ନବଜୀବନର ସୂତ୍ରପାତ ଓ ସୂଚନା କରିଅଛନ୍ତି ... ମଧୁସୂଦନଙ୍କର ସୁରୁଚିସମ୍ପନ୍ନ ଗଦ୍ୟପଦ୍ୟମୟ ସାହିତ୍ୟ ଓ ତାଙ୍କର ଦୀର୍ଘକାଳବ୍ୟାପୀ ଶିକ୍ଷକ-ଜୀବନ କି ଏହି ଯୁବକମଣ୍ଡଳୀ ମଧରେ ନବ୍‌ଜୀବନ୍ ଓ ନବଯୁଗର ସୂଚନାରେ କିଛି କାର୍ଯ୍ୟ କରିନାହିଁ ?" ନନ୍ଦକିଶୋର ତାଙ୍କ ଜୀବଦ୍ଦଶାରେ ଏ ପ୍ରଶ୍ନର ଉତ୍ତର ପାଇଥିଲେ କି ନାହିଁ କେଜାଣି; କିନ୍ତୁ ସତ୍ୟବାଦୀ ବିଦ୍ୟାଳୟର ଜଣେ ପ୍ରତ୍ୟକ୍ଷ ଅନୁଭବୀ ଛାତ୍ରରୂପେ ଉପସ୍ଥିତ ଲେଖକ ଏ ପ୍ରଶ୍ନର ଉତ୍ତରରେ କହେ – କେବଳ ମଧୁସୂଦନ କାହିଁକି, ଯେକୌଣସି ଦେଶହିତୈଷୀ ମନସ୍ୱୀ, ଜ୍ଞାନ ଓ କର୍ମସାଧକ ମହାପୁରୁଷର ଜୀବନାଦର୍ଶର ଅନୁପ୍ରବେଶ ପାଇଁ ଗୋପବନ୍ଧୁ ଓ ତାଙ୍କର ସହକର୍ମୀମାନଙ୍କର ପ୍ରାଣ-ମନ୍ଦିର ସର୍ବଦା ଉନ୍ମୁକ୍ତ ଥିଲା। ତଥାପି ସେମାନଙ୍କ କର୍ମପ୍ରବାହରେ ସ୍ୱତନ୍ତ୍ରତା ଫୁଟିଉଠୁଥିଲା। ଚିନ୍ତାରେ ସ୍ୱାଧୀନତାର ସ୍ୱାକ୍ଷର ଥିଲା। ଅବଶ୍ୟ ଏବେ ସେ କଥା ମାନିଲେ ଦିଅଁ, ନ ମାନିଲେ ପଥର।

ମଧୁସୂଦନଙ୍କ ସହିତ ଗୋପବନ୍ଧୁଙ୍କର ଘନିଷ୍ଠ ସମ୍ପର୍କର ଆଉ ଗୋଟିଏ ଦୃଷ୍ଟାନ୍ତ – ନୂଆଗଡ଼ର ରାଜା ଗୋପବନ୍ଧୁଙ୍କୁ ତାହାଙ୍କର ଦୁଇ ଭଣଜାଙ୍କ ଗୃହଶିକ୍ଷକରୂପେ ନିଯୁକ୍ତ କରିଥିବାରୁ ଗୋପବନ୍ଧୁ କଟକ କାଳିଗଳିକୁ ଆସି ମଧୁସୂଦନଙ୍କ ଘର ନିକଟରେ କେତେ

ଦିନ ବାସକରିଥିଲେ । ଏହିଠାରେ କବିଗୁରୁ ରାଧାନାଥ ଓ ଭକ୍ତକବି ମଧୁସୂଦନଙ୍କ ସହିତ ସାହିତ୍ୟ ଆଲୋଚନା କରିବା ନିମନ୍ତେ ଗୋପବନ୍ଧୁଙ୍କୁ ଯଥେଷ୍ଟ ଅବସର ମିଳିଥିଲା ।

ମଧୁସୂଦନଙ୍କ ସହିତ ଋଷିକବି ରବୀନ୍ଦ୍ରନାଥଙ୍କର ପରିଚୟ ଘଟେ ସର୍ବପ୍ରଥମେ କଟକରେ ୧୮୯୩ ଖ୍ରୀଷ୍ଟାବ୍ଦରେ । ଓଡ଼ିଶାରେ ରବୀନ୍ଦ୍ରନାଥଙ୍କର ଜମିଦାରୀ ଥିଲା । ୧୮୯୩ରେ ରବୀନ୍ଦ୍ରନାଥ ତାଙ୍କ ଜମିଦାରୀ ତଦାରଖ କରିବାକୁ ଓଡ଼ିଶା ଆସିଥିଲେ । କଟକରେ ସେତେବେଳେ ଜିଲ୍ଲା ଜଜ୍ ଥିଲେ ଶ୍ରୀଯୁକ୍ତ ବି. ଏଲ୍. ଗୁପ୍ତ । ରବୀନ୍ଦ୍ରନାଥ ତାଙ୍କରି ବାସଭବନରେ ଆତିଥ୍ୟ ଗ୍ରହଣ କରିଥିଲେ । ଗୁପ୍ତ ମହାଶୟ ବ୍ରାହ୍ମ ଥିଲେ । ତାଙ୍କର ସ୍ତ୍ରୀ ସୌଦାମିନୀ ସୁପଣ୍ଡିତା ଥିଲେ । ରବୀନ୍ଦ୍ରନାଥଙ୍କ ସହିତ ପରିଚିତ ହେବା ଏବଂ ତାଙ୍କ କଣ୍ଠରୁ ତାଙ୍କର ସଙ୍ଗୀତ ଶୁଣିବା ନିମନ୍ତେ ସୌଦାମିନୀ କଟକ ସହରର କେତେଜଣ ବ୍ରାହ୍ମଙ୍କୁ ନିମନ୍ତ୍ରଣ କରିଥିଲେ । ମଧୁସୂଦନ ଏହି ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ । ଏହିଠାରେ ପ୍ରଥମେ ରବୀନ୍ଦ୍ରନାଥଙ୍କ ସହିତ ମଧୁସୂଦନଙ୍କର ପରିଚୟ, ଆଳାପାଦି ହୁଏ । ସେହି ସମୟରେ କଟକ ଓଡ଼ିଆବଜାରରେ ଥିବା ବ୍ରାହ୍ମମନ୍ଦିରରେ ଗୋଟିଏ ରବିବାରୀୟ ଉପାସନାରେ ରବୀନ୍ଦ୍ରନାଥ ସଙ୍ଗୀତ ଗାନ କରିବାକୁ ସ୍ୱୀକୃତ ହୋଇଥିଲେ ।

ଏହି ସମୟରୁ ରବୀନ୍ଦ୍ରନାଥଙ୍କ ସହିତ ମଧୁସୂଦନଙ୍କର ସମ୍ପର୍କ ଘନିଷ୍ଠ ହେବାକୁ ଲାଗିଲା । ଦୁଇଜଣଯାକ କବି, ଦୁଇଜଣଙ୍କର ମାନସିକ ସଂଗଠନ, ବିଶ୍ୱାନୁଭୂତି ଓ ଅଧ୍ୟାତ୍ମଚେତନା ଉପନିଷଦର ପଟ୍ଟଭୂମି ଉପରେ ପ୍ରତିଷ୍ଠିତ । ଦୁହିଁଙ୍କ ଜୀବନର ମର୍ମବାଣୀ —

"ଈଶାବାସ୍ୟ ମିଦଂ ସର୍ବଂ ଯତ୍‌କିଞ୍ଚ ଜଗତ୍ୟାଂ ଜଗତ୍
ତେନ ତ୍ୟକ୍ତେନ ଭୁଞ୍ଜୀଥା ମା ଗୃଧଃ କସ୍ୟସ୍ୱିଦ୍ଧନଂ ।"

—ଦୁହେଁ ଅନନ୍ତ ଭୂମାର ଉପାସକ – ଦୁହିଁଙ୍କର ନୀତି 'ଭୂମୈବ ସୁଖଂ ନାଳ୍ପେ ସୁଖମସ୍ତି' । ଦୁହିଁଙ୍କର ପ୍ରାଣର ମନ୍ତ୍ର 'ସର୍ବଂ ଖଲ୍ୱିଦଂ ବ୍ରହ୍ମ' । ଦୁହେଁ ଆନନ୍ଦବାଦୀ ଏବଂ 'ରସ ବୈଃ ସଃ'ର ରସଘନ ଅମୃତମୟ ଚରଣତଳେ ସମର୍ପିତ ଚିତ୍ତ । ତେଣୁ ଏ ମଣିକାଞ୍ଚନର ସଂଯୋଗ ସ୍ୱାଭାବିକ ଓ ଅବଶ୍ୟମ୍ଭାବୀ ।

ମଧୁସୂଦନ କଲିକତାକୁ ଆସିଲେ ସିଧାସଳଖ ଚାଲିଯା'ନ୍ତି ରବୀନ୍ଦ୍ରନାଥଙ୍କ ବାସଭବନକୁ । ଉଭୟେ ସମାନଧର୍ମୀ । ଦୁହିଁଙ୍କ ମଧ୍ୟରେ ଚାଲେ ପ୍ରାଣଖୋଲା ଆଳାପ – ସାହିତ୍ୟ ସମ୍ବନ୍ଧରେ ନାନା ଆଲୋଚନା-ବିଲୋଚନା, ତର୍କ-ବିତର୍କ । ଆଲୋଚନାରୁ ବିକଶିଉଠେ ପରସ୍ପର ମଧ୍ୟରେ ଘନିଷ୍ଠ ଆତ୍ମୀୟତା । ୧୯୧୧ ଖ୍ରୀଷ୍ଟାବ୍ଦରେ ରବୀନ୍ଦ୍ରନାଥଙ୍କ ନିମନ୍ତ୍ରଣକ୍ରମେ ମଧୁସୂଦନ ଶାନ୍ତିନିକେତନକୁ ଯାଇଥିଲେ । ସେଠାରୁ ଫେରିଆସି ସେ ପୁତ୍ରକନ୍ୟାମାନଙ୍କ ଆଗରେ ରବୀନ୍ଦ୍ରନାଥଙ୍କ ଅତିଥିସତ୍କାର ସମ୍ବନ୍ଧରେ ଯାହାସବୁ ବର୍ଣ୍ଣନା କରିଥିଲେ ତା ଶୁଣି ସେମାନେ ଅତ୍ୟନ୍ତ ଆପ୍ୟାୟିତ ହୋଇଥିଲେ । ଏ ବିଷୟ ଉଲ୍ଲେଖ କରି ସେ ତାଙ୍କର ଦୈନିକ ଲିପିରେ ଲେଖିଥିଲେ —

"Had a talk with our host about Bengali grammar and some literary and religious matters. Listened to some hymns of Rabi Babu's song by Dinendra Babu. Rabi Babu, is no mere poet and writer only. He has become a true saint (Rishi). His humility and faith, his singlehearted devotion to the work of ବ୍ରହ୍ମଚର୍ଯ୍ୟାଶ୍ରମ, his simple beautiful life impressed me as few lives have done. 9-3-1911."

ଏହା ପୂର୍ବରୁ ୧୯୨୮ ବଙ୍ଗାବ୍ଦରେ 'ନବ୍ୟ-ଭାରତ' ପତ୍ରିକାର ମାଁଶିର ସଂଖ୍ୟାରେ ମଧୁସୂଦନଙ୍କର 'ଋଷିଚିତ୍ର' କବିତାଟି ପ୍ରକାଶିତ ହୋଇଥିଲା । ତତ୍ପରେ ରବୀନ୍ଦ୍ରନାଥ ଏହି ସାଲର ପୌଷ ସଂଖ୍ୟାର 'ସାଧନ' ପତ୍ରିକାରେ ସାମୟିକ ସାହିତ୍ୟ ସମାଲୋଚନା ବିଭାଗରେ ଏହି କବିତାଟିର ଯେଉଁ ସମାଲୋଚନା କରିଥିଲେ ତାହା ନିମ୍ନରେ ପ୍ରଦତ୍ତ ହେଲା–

'ଋଷିଚିତ୍ର' ଗୋଟିଏ କବିତା । ଲେଖକ ଶ୍ରୀଯୁକ୍ତ ମଧୁସୂଦନ ରାଓ । ନାମ ଶୁଣି କବି ମହାରାଷ୍ଟ୍ରୀୟ ବୋଲି ବୋଧହେଉଛି; କିନ୍ତୁ ବଙ୍ଗଭାଷାରେ ଏପରି କବିତ୍ୱ-ପ୍ରୟାସ ଅନ୍ୟ କୌଣସି ଅ-ବଙ୍ଗାଳୀଦ୍ୱାରା ସାଧିତ ହୋଇନାହିଁ । କବିଙ୍କ ରଚନା ମଧ୍ୟରେ ପ୍ରାଚୀନ ଭାରତର ଗୋଟିଏ ଶିଶିରସ୍ନାତ ପବିତ୍ର ଉଷାଲୋକ ଅତି ନିର୍ମଳ, ଉଜ୍ଜ୍ୱଳ ଏବଂ ମହତ୍ ଭାବରେ ଦୀପ୍ତି ପାଇଅଛି । ଏହି କବିତା ମଧ୍ୟରେ ଆମ୍ଭେମାନେ ଗୋଟିଏ ନୂତନ ରସାସ୍ୱାଦନ କରି ପରିତୃପ୍ତ ହୋଇଅଛୁ । ପ୍ରାଚୀନ ଭାରତ ସମ୍ବନ୍ଧରେ ବଙ୍ଗଳାର ଅଧିକାଂଶ ଲେଖକ ଯାହା ଲେଖନ୍ତି, ତା ମଧ୍ୟରେ ପ୍ରାଚୀନତ୍ୱର ପ୍ରକୃତ ରସାସ୍ୱାଦନ ମିଳେନାହିଁ; କିନ୍ତୁ 'ଋଷିଚିତ୍ର' କବିତା ମଧ୍ୟରେ ଗୋଟିଏ ପ୍ରାଚୀନ ଧ୍ରୁବପଦର ସ୍ୱର ଝଙ୍କୃତ ହେଉଅଛି । ଏହି ସମାଲୋଚନା ପ୍ରକାଶ ପାଇବା ପରେ ଉଭୟଙ୍କ ମଧ୍ୟରେ ଚିଠିପତ୍ରର ଆଦାନ ପ୍ରଦାନ ହୋଇଥିଲା ।

ଆଉ କେତେକ ବଙ୍ଗୀୟଙ୍କ ସହିତ ଭକ୍ତକବି ମଧୁସୂଦନଙ୍କର ଘନିଷ୍ଠ ସମ୍ବନ୍ଧ ଥିଲା । ମଧୁସୂଦନଙ୍କ ପୁତ୍ରକନ୍ୟାମାନେ ସମସ୍ତେ ବଙ୍ଗ ପ୍ରଦେଶରେ ବିବାହ କରିଥିଲେ । ଶୁଣାଯାଏ ସେ ଘରେ ପୁତ୍ରକନ୍ୟାମାନଙ୍କ ସହିତ ବଙ୍ଗଭାଷାରେ ପ୍ରାୟ କଥାବାର୍ତ୍ତା ହେଉଥିଲେ । ଆତ୍ମୀୟ ସ୍ୱଜନମାନଙ୍କ ନିକଟକୁ ବଙ୍ଗଳାରେ ଚିଠିପତ୍ର ଲେଖୁଥିଲେ । ରାଧାନାଥଙ୍କ ପରି ବଙ୍ଗଳାରେ ମଧ୍ୟ କବିତା ରଚନା କରୁଥିଲେ । ଏସବୁ ବିଶ୍ୱପ୍ରାଣ ମଧୁସୂଦନଙ୍କ ଭାବଗତ ଜାତୀୟ-ସଂହତିର ଆଦର୍ଶର ପ୍ରତୀକ ହୋଇପାରେ । ତଥାପି ଆମ୍ଭମାନଙ୍କୁ ଆଶ୍ଚର୍ଯ୍ୟ ବୋଧହୁଏ, ଏତେ ବଙ୍ଗୀୟ ପ୍ରୀତିର ସମାବେଶ ଥାଇ ରାଧୁ ଓ ମଧୁ ଓଡ଼ିଆ ସାହିତ୍ୟ ଭଣ୍ଡାରରେ ଏତେ ଅକ୍ଷୟ ସମ୍ପଦ ରଖିଗଲେ କିପରି ? ଓଡ଼ିଶାର ଗୌରବମୟ ଅତୀତ ସେମାନଙ୍କ ପ୍ରାଣକୁ ଏପରି ଗଭୀରଭାବରେ କିପରି ଆଲୋଡ଼ିତ କରୁଥିଲା ? 'ଓଡ଼ିଆ' 'ଓଡ଼ିଆ' ବୋଲି ସେମାନଙ୍କର ପ୍ରାଣ ଅହରହ ବେଦନା ବ୍ୟଥିତହୋଇ କାନ୍ଦୁଥିଲା କିପରି ?

ପଣ୍ଡିତ ହରାନନ୍ଦ ଭଟ୍ଟାଚାର୍ଯ୍ୟ ନାମକ ଜଣେ ସତ୍ୟନିଷ୍ଠ ଓ ତେଜସ୍ୱୀ ବଙ୍ଗୀୟ ବ୍ୟକ୍ତି ଜଗନ୍ନାଥ ଦର୍ଶନ କରିବାକୁ ପୁରୀ ଆସିଥିଲେ । ସେଠାରେ ମଧୁସୂଦନଙ୍କ ସହିତ ତାଙ୍କର ପରିଚୟ ହୁଏ । ଓଡ଼ିଶାରେ ତାଙ୍କର ଏପରି ପ୍ରଭାବ ଓ ସୁଖ୍ୟାତି ଦେଖି ସେ ଏପରି ବିସ୍ମିତ ହୋଇଥିଲେ ଯେ ଓଡ଼ିଶାରୁ ଫେରିଯାଇ ସେ ମଧୁସୂଦନଙ୍କ କନ୍ୟା ଅବନ୍ତୀଙ୍କୁ ଡାକି କହିଥିଲେ, ''ବଙ୍ଗଦେଶ ଜଣେ ବିଦ୍ୟାସାଗରଙ୍କୁ ପାଇ ଧନ୍ୟହୋଇଥିଲା । ମୁଁ ଏଥର ଓଡ଼ିଶାରେ ଜଣେ ବିଦ୍ୟାସାଗରଙ୍କୁ ଦେଖିଆସିଛି । ମୁଁ ତୁମ ପିତାଙ୍କୁ 'ଦ୍ୱିତୀୟ ବିଦ୍ୟାସାଗର' ଆଖ୍ୟା ଦେଉଛି ।''

ବଙ୍ଗଦେଶର ରାମତନୁ ଲାହିଡ଼ୀଙ୍କ ଧର୍ମପ୍ରାଣତା, ସାଧୁତା ଏବଂ ବିଦ୍‌ବତ୍ତା ସର୍ବଜନ ବିଦିତ । ସେ ସମୟର ବଙ୍ଗଳାର ପ୍ରସିଦ୍ଧ କବି ଓ ନାଟ୍ୟକାର ଦ୍ୱିଜେନ୍ଦ୍ର ଲାଲ ରାୟ ଥରେ କଟକକୁ ଆସି ମଧୁସୂଦନଙ୍କର ଆତିଥ୍ୟ ଗ୍ରହଣ କରିଥିଲେ । ଦ୍ୱିଜେନ୍ଦ୍ରଲାଲ ତାଙ୍କର ଚାରିତ୍ରିକ ମହତ୍ତ୍ୱରେ ମୁଗ୍ଧ ହୋଇ ସର୍ବଦା ମୁକ୍ତକଣ୍ଠରେ କହୁଥିଲେ, ''ମଧୁସୂଦନ ରାଓ ବ୍ରାହ୍ମ-ସମାଜର ଦ୍ୱିତୀୟ ରାମତନୁ ଲାହିଡ଼ୀ ।''

ବଙ୍ଗର ଜଣେ ପ୍ରଖ୍ୟାତନାମା ବ୍ୟକ୍ତି – ଆନନ୍ଦ ମୋହନ ବସୁ ମଧୁସୂଦନଙ୍କୁ 'ବ୍ରାହ୍ମସମାଜର ଅନ୍ୟତମ ଭିତ୍ତିସ୍ତମ୍ଭ' ଆଖ୍ୟାଦେଇଥିଲେ । (He is one of the pillars of the Brahmo Samaj)

ମାନ୍ଦ୍ରାଜରେ ହେଉଥିବା ଏକେଶ୍ୱରବାଦୀ ସମ୍ମେଳନର ସଭାପତିରୂପେ ତାଙ୍କୁ ନିର୍ବାଚନ କରାଯାଇଥିଲା; କିନ୍ତୁ ଅସୁସ୍ଥତାବଶତଃ ସେ ସେହି ସଭାରେ ଯୋଗଦେଇ ପାରିନଥିଲେ । ବାରାଣସୀରେ ଯେତେବେଳେ ନିଖିଳ ଭାରତ କଂଗ୍ରେସ ଅଧିବେଶନ ସହିତ ଭାରତୀୟ-ଧର୍ମ-ମହାସମ୍ମେଳନ ଅନୁଷ୍ଠିତ ହେବାର ପ୍ରସ୍ତାବ ହୁଏ, ସେତେବେଳେ ମଧୁସୂଦନଙ୍କୁ ତାହାର ସଭାପତି ହେବାକୁ ଅନୁରୋଧ କରାଯାଇଥିଲା । ସେ ମଧ ତାଙ୍କର ଅଭିଭାଷଣ ଲେଖିବାକୁ ଆରମ୍ଭ କରିଥିଲେ, କିନ୍ତୁ ବ୍ୟାଧିରୂପକ ଦୁର୍ଦ୍ଦୈବ ତା' କରାଇ ଦେଲାନାହିଁ । ଉତ୍କଳ ଓ ବଙ୍ଗକୁ ଅତିକ୍ରମ କରି ମଧୁସୂଦନଙ୍କ ଖ୍ୟାତି ସର୍ବଭାରତୀୟ ସ୍ତରରେ ସର୍ବତୋଭାବରେ ଉପନୀତ ହୋଇପାରିଲା ନାହିଁ । ୧୯୧୨ରେ ଯେତେବେଳେ ବାଙ୍କିପୁରରେ ଏହି ସମ୍ମେଳନର ଅଧିବେଶନ ହୁଏ, ସେତେବେଳେ ସଭାପତିରୂପେ ଏଥିରେ ଯୋଗଦେବାକୁ ତାଙ୍କୁ ବିଶେଷ ଅନୁରୋଧ କରାଯାଇଥିଲା; କିନ୍ତୁ ସେତେବେଳକୁ ଦିବ୍ୟଧାମରୁ ତାଙ୍କୁ ଆହ୍ୱାନ ଆସିଗଲାଣି । ମହାପଥରଯାତ୍ରୀ ହେବାକୁ ସେତେବେଳେ ଭକ୍ତକବିଙ୍କର ଆଉ ଯୋଡ଼ିଏ ଦିନ ବାକି । ଅବନ୍ତୀ ଦେବୀ କ୍ଷୋଭ ପ୍ରକାଶକରି ଲେଖିଅଛନ୍ତି, ''ବିଭିନ୍ନ ପ୍ରଦେଶବାସୀଙ୍କ କର୍ଣ୍ଣରେ ଓଡ଼ିଶାର ଭକ୍ତକବିଙ୍କର ଅନ୍ତରର ବାଣୀ ଧ୍ୱନିତ ହେବାର ସୁଯୋଗ ଲାଭକଲାନାହିଁ– ଏ ଦୁଃଖ ଭୁଲିବାର ନୁହେଁ ।''

—

# ଷୋଡ଼ଶ ଅଧ୍ୟାୟ

## ମହାଯାତ୍ରାପଥେ ମଧୁସୂଦନ

ପ୍ରାୟ ପଞ୍ଚତିରିଶ ବର୍ଷ ବୟସରୁ ମଧୁସୂଦନ ଅମ୍ଳଶୂଳ ରୋଗରେ ଆକ୍ରାନ୍ତ ହୋଇଥିଲେ । ତଥାପି ରୋଗବ୍ୟାଧି ସହିତ କଠୋର ସଂଗ୍ରାମ କରି ସେ କର୍ତ୍ତବ୍ୟକ୍ଷେତ୍ରରେ ନିଶ୍ଚିନ୍ତ ମନରେ ନିଜକୁ ନିୟୋଜିତ କରିରଖିଥିଲେ । ମୃତ୍ୟୁର ଦଶବାରବର୍ଷ ପୂର୍ବରୁ ଏହି ଶୂଳରୋଗ ତାଙ୍କୁ ଅତି ଦୁର୍ବଳ ଓ ଶକ୍ତିହୀନ କରିପକାଇଥିଲା । ୧୯୦୮ରେ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣକରି ଏହି ରୋଗାକ୍ରାନ୍ତ ଶରୀର ନେଇ ସେ ଟାଉନ୍ ଭିକ୍ଟୋରିୟା ହାଇସ୍କୁଲର ଉନ୍ନତି ବିଧାନରେ ମନପ୍ରାଣ ଢାଳିଦେଇ ଅକ୍ଲାନ୍ତ ପରିଶ୍ରମ କରୁଥିଲେ । ଏହି ପରିଶ୍ରମ ଫଳରେ ଦେହ ତାଙ୍କର ବେଶି ଖରାପ ହୋଇପଡ଼ିଲା । ବଳ ଭାଙ୍ଗିଗଲା । ଶୀତ ଦିନରେ ଏହି ରୋଗର ଶକ୍ତି ପ୍ରବଳ ହୁଏ । ୧୯୧୨ ଡିସେମ୍ବର ୧୫ ତାରିଖ ରାତିରେ ହଠାତ୍ ସେ ପାକସ୍ଥଳୀରେ ଅସହ୍ୟ ବେଦନା ଅନୁଭବ କଲେ । ସେହି ବେଦନାହିଁ ମଧୁସୂଦନଙ୍କର ଶେଷ ବେଦନା । ଏ ଯନ୍ତ୍ରଣା ଦେଖି ପରିବାରର ଲୋକେ ଆତଙ୍କିତ ହୋଇଉଠିଲେ । ସମସ୍ତଙ୍କ ମନରେ ଅସ୍ଫୁଟ ଆଶଙ୍କା – ଏଥିରୁ କ'ଣ ଆଉ ଏଥର ନିସ୍ତାର ନାହିଁ ? ହେ ବିଶ୍ୱରାଟ, ତୁମରି ଇଚ୍ଛା !

ଶୂଳରୋଗ ବଢ଼ିବା ସଙ୍ଗେସଙ୍ଗେ ତାଙ୍କର ପ୍ରବଳ ବାନ୍ତି ଘନଘନ ହେଉଥାଏ । ପେଟରେ ତ କିଛି ଖାଦ୍ୟ ରହୁନାହିଁ, ରୋଗରୁ ମୁକ୍ତିଲାଭ କରିବେ କିପରି ? ଜ୍ୟେଷ୍ଠପୁତ୍ର ଜୟନ୍ତ ରାଓଙ୍କ ମନରେ ପ୍ରବଳ ଦୁଶ୍ଚିନ୍ତା । କଟକର ବଡ଼ ବଡ଼ ଡାକ୍ତର ଚିକିତ୍ସାରେ ଲାଗିପଡ଼ିଲେ । ଆତ୍ମୀୟସ୍ୱଜନମାନଙ୍କୁ ସମ୍ବାଦ ଦିଆଗଲା । ସମସ୍ତେ ଖବର ପାଇଲା ମାତ୍ରକେ କଟକ ଆସିଗଲେ । ଅବନ୍ତୀ ଦେବୀ ଅବିଳମ୍ବେ କଲିକତାରୁ ଆସି ପିତାଙ୍କ ରୋଗଶଯ୍ୟା ପାଖରେ ଉପସ୍ଥିତ ହେଲେ । ପିତା କନ୍ୟାର ଲଲାଟ ଚୁମ୍ବନକରି ଶୂନ୍ୟଦୃଷ୍ଟିରେ ଉର୍ଦ୍ଧ୍ୱକୁ ଚାହିଁରହିଲେ । ଜୟନ୍ତ କହିଲେ, "ଏଠାରେ ବେଶି ଲୋକ ରହି ଗହଳି କରନାହିଁ । ରୋଗ ବଢ଼ିଯାଇପାରେ ।" ଅବନ୍ତୀ ଓ ଅନ୍ୟାନ୍ୟମାନେ ନିଃଶବ୍ଦରେ ରୋଗଶଯ୍ୟା ନିକଟରୁ ଧୀରେ ଧୀରେ ନିଷ୍କ୍ରାନ୍ତ ହୋଇଗଲେ ।

୧୯ ତାରିଖରେ ରୋଗୀର ଅବସ୍ଥା ସାଙ୍ଘାତିକ ହୋଇପଡ଼ିଲା । ତାଙ୍କ ରୋଗଶଯ୍ୟା ପାଖକୁ ଯେ ଗଲା, ତା'ର ଧାରଣାହେଲା ମୃତ୍ୟୁ ସନ୍ନିକଟ । ଦିନେ ଔଷଧ ଖାଉ ଖାଉ ବଙ୍ଗଳାରେ କହିଲେ, "ଦେଖୁନ୍, ଆର କି ଧରେ ରାଖା ଭାଲ ଦେଖାୟ ?"

୧୯ ତାରିଖ ରାତିରେ ଦ୍ୱିତୀୟ ଜାମାତା ପ୍ରଫୁଲ୍ଲଚନ୍ଦ୍ରଙ୍କ ହାତ ପାପୁଲିରେ 'ଡିସେମ୍ବର ୨୮' ଏଇ କେତୋଟି ଅକ୍ଷର ଲେଖିଦେଲେ । ସେଠାରେ ଦ୍ୱିତୀୟ ପୁତ୍ର ପ୍ରଶାନ୍ତ ଉପସ୍ଥିତ ଥିଲେ । ତାହାଙ୍କୁ କହିଲେ, ''ଆଉ ନଅଦିନ ମାତ୍ର ।'' ଆଉଦିନେ ପେଟରେ ଭୟଙ୍କର ଯନ୍ତ୍ରଣା ଅନୁଭବ କରିବାରୁ ଜ୍ୟେଷ୍ଠପୁତ୍ର ଜୟନ୍ତ କହିଲେ, ''ଟିକିଏ ପରେ ଏନିମା ଦେବି, ଭଲଲାଗିବ ।'' ମଧୁସୂଦନ ଆଖି ମୁଦି କିଛି ସମୟ ନୀରବ ରହିଲା ପରେ କହିଲେ, ''ଏନିମା ଜାନିନା, ଜାନି ସେଇ ଚିନିମା ।'' (ଚିନ୍ମୟୀ ମା) ସେତେବେଳେ ମଧୁସୂଦନଙ୍କ ମନ ଊର୍ଦ୍ଧ୍ୱମୁଖୀ – ନଶ୍ୱର ସଂସାରରୁ ସେ ବହୁଦୂରରେ – ସତେ ଯେପରି ସେହି ଜଗଜ୍ଜନନୀ ଅନ୍ତରବାସିନୀ ଚିନ୍ମୟୀ ମା'ଙ୍କ ଧ୍ୟାନ ଛଡ଼ା ସେତେବେଳେ ତାଙ୍କର ଅନ୍ୟ ଚିନ୍ତା ନାହିଁ ।

ଡିସେମ୍ବର ୨୨ । ଏଦିନ ରୋଗର ଯନ୍ତ୍ରଣା ଟିକିଏ କମିଥିବାର ଡାକ୍ତରମାନେ ଦେଖିଲେ । ନାଡ଼ୀର ଅବସ୍ଥା ମଧ୍ୟ ଅପେକ୍ଷାକୃତ ଭଲ । ସମସ୍ତଙ୍କ ମନରେ ଆନନ୍ଦ ଓ ଆଶ୍ୱାସନା ଜାଗିଉଠିଲା । ଡାକ୍ତର ରୋଗୀର ନାଡ଼ୀ ଦେଖି କହିଲେ, "I see you have much improved." ମଧୁସୂଦନ ସତେ ଯେପରି ଆସନ୍ନ ମୃତ୍ୟୁକୁ ଉପହାସ କରି ହସିହସି କହିଲେ, "The frog says, frogling, the world is changing every moment." ''ବେଙ୍ଗ କହେ ବେଙ୍ଗୁଲୀ ଲୋ ପୃଥିବୀ କ୍ଷଣ କ୍ଷଣକେ ଆନ ।''

କିନ୍ତୁ ୨୭ ତାରିଖ ସକାଳେ ନାଡ଼ୀର ଅବସ୍ଥା ପୁଣି କ୍ଷୀଣ ହୋଇଆସୁଥିବାର ଦେଖି ପରିବାରବର୍ଗ ଶୋକାକୁଳ ହୋଇଉଠିଲେ । ମଧୁସୂଦନ ସେମାନଙ୍କୁ ସାନ୍ତ୍ୱନା ଦେଇ କହିଲେ, ''ଯିବାକୁ ମୋର ଡେରି ଅଛି । ତୁମେ ସବୁ କାହିଁକି ଏପରି ବ୍ୟାକୁଳ ହେଉଛ ? ଯାଅ ଖିଆପିଆ କର ।'' ନାଡ଼ୀର ସେହି କ୍ଷୀଣମନ୍ଥର ଅବସ୍ଥାରେ ମଧୁସୂଦନ ଦେଢ଼ଦିନ କଟାଇଲେ ।

୨୮ ତାରିଖ ସକାଳୁ ଊର୍ଦ୍ଧ୍ୱଶ୍ୱାସ ଆରମ୍ଭହେଲା । ପୂର୍ବଦିନ ପ୍ରାତଃକାଳ ପର୍ଯ୍ୟନ୍ତ ତାଙ୍କର ଜ୍ଞାନ ଥିଲା, ସ୍ପଷ୍ଟଭାବରେ କଥାବାର୍ତ୍ତା କରୁଥିଲେ; କିନ୍ତୁ ଚାହୁଁ ଚାହୁଁ ପାଟି ଖନି ମାରିଗଲା ଏବଂ କଥାବାର୍ତ୍ତା ସବୁ ବନ୍ଦହୋଇଗଲା । ଡିସେମ୍ବର ୨୮ ତାରିଖ ସକାଳ ୯ଟା ପରେ ମଧୁସୂଦନ ଶାନ୍ତଭାବରେ ଚିରକାଳ ନିମନ୍ତେ ଏହି ମର୍ତ୍ତ୍ୟମଣ୍ଡଳରୁ ବିଦାୟ ନେଲେ ।

ସକାଳେ ସୂର୍ଯ୍ୟାଲୋକ ଦେଖିବା ନିମନ୍ତେ ଝରକା ଖୋଲିଦେଲା ପରେ ଘର ଭିତରକୁ ସୂର୍ଯ୍ୟକିରଣ ପଶିଆସିବାର ଦେଖିଲେ ତାଙ୍କ ମୁଖମଣ୍ଡଳରେ ପ୍ରସନ୍ନତା ବିକଶି ଉଠୁଥିଲା । ଦିନେ ଏ ସମୟରେ ସେ ପୁତ୍ର ସୁକାନ୍ତକୁ କହିଥିଲେ, "More light more air. May German father Goethe come."

ମଧୁସୂଦନ ରୋଗଶଯ୍ୟାରେ ପଡ଼ିଥିଲାବେଳେ କେବଳ କଟକ ସହର କାହିଁକି, ସମଗ୍ର ଉତ୍କଳରୁ ମାନ୍ୟଗଣ୍ୟ ବ୍ୟକ୍ତି, କବି ଓ ସାହିତ୍ୟିକମାନେ ତାଙ୍କୁ ଦେଖିବା ନିମନ୍ତେ

ପ୍ରତ୍ୟହ ଆସୁଥିଲେ । କେହି କେହି ତାଙ୍କ ରୋଗଶଯ୍ୟା ପାଖରେ ବସି ନିଃସହାୟ ବାଳକପରି ନୀରବରେ ଅଶ୍ରୁମୋଚନ କରୁଥିଲେ । କୁଳବୃଦ୍ଧ ମଧୁସୂଦନ ଦାସ ତାଙ୍କ ରୋଗଶଯ୍ୟା ପାଖରେ ବସି ଆକୁଳ ପ୍ରାଣରେ ମଧୁସୂଦନଙ୍କପାଇଁ ପ୍ରାର୍ଥନା କରିଥିଲେ । ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ବ୍ରହ୍ମ ସଙ୍ଗୀତ ଓ ପ୍ରାର୍ଥନାରେ ଯୋଗଦେଇଥିଲେ ।

ଅବନ୍ତୀ ଦେବୀଙ୍କ ଶ୍ୱଶୁର ବ୍ରାହ୍ମଧର୍ମାବଲମ୍ବୀ ପଣ୍ଡିତ ଶିବନାଥ ଶାସ୍ତ୍ରୀ ଏହି ସମୟରେ ଜଳବାୟୁ ପରିବର୍ତ୍ତନ ଉଦ୍ଦେଶ୍ୟରେ କଲିକତାରୁ ଆସି କଟକରେ ଅବସ୍ଥାନ କରୁଥିଲେ । ଅନ୍ତିମ ମୁହୂର୍ତ୍ତ ନିକଟେଇ ଆସିବାର ଦେଖି ମଧୁସୂଦନ ତାଙ୍କୁ କହିଥିଲେ, ''ସକଳ ସାଧୁ ଭକ୍ତ ଆପଣଙ୍କ ଅନ୍ତରରେ ବାସକରନ୍ତୁ ।'' ତା'ପରେ କହିଲେ, ''ଅବନ୍ତୀ ଆପଣଙ୍କ ଚରଣତଳେ ରହିଲା ।''

ଏହି ଅନ୍ତିମ ମୁହୂର୍ତ୍ତର ପ୍ରତ୍ୟକ୍ଷଦର୍ଶିନୀ କନ୍ୟା ଅବନ୍ତୀ ଦେବୀ ଏ ସମୟରେ ତାଙ୍କ ଜନନୀଙ୍କ କରୁଣ ଅବସ୍ଥାର ଚିତ୍ର ଦେବାକୁ ଯାଇ ଲେଖିଛନ୍ତି, ''ମଧୁସୂଦନଙ୍କ 'ନୀରବ ଭାଷିଣୀ' ସହଧର୍ମିଣୀ, ଆମ୍ଭମାନଙ୍କର ଜନନୀ ଦେବୀ ମୃତ୍ୟୁଶଯ୍ୟା ପାଖରେ ଶାନ୍ତଭାବରେ ବସି ଅବିରଳ ଅଶ୍ରୁପାତ କରୁଥିଲେ । ଏହି ନିଦାରୁଣ ଶୋକରେ ସେ ବିହ୍ୱଳ ହୋଇନାହାନ୍ତି । ତାହାଙ୍କୁ ଦେଖିଲେ ମନେହେଉଥିଲା, ଯେପରି ଗୋଟିଏ ମୂର୍ତ୍ତିମତୀ ଶୋକପ୍ରତିମା ।''

ମଧୁସୂଦନଙ୍କ ମୃତ୍ୟୁଦିବସ ସମ୍ବନ୍ଧରେ ଗୋଟିଏ ଅଦ୍ଭୁତ ଘଟନା ଶୁଣିବାକୁ ମିଳେ । ମୃତ୍ୟୁର ଦୁଇବର୍ଷ ପୂର୍ବରୁ ସେହି ଦୁର୍ଭାଗ୍ୟ ଓ ଦୁଃଖମୟ ଡିସେମ୍ବର ୨୮ ତାରିଖ ରାତିରେ ସେ ଗୋଟିଏ ବିଚିତ୍ର ସ୍ୱପ୍ନ ଦେଖିଲେ । ତାଙ୍କ ଜୀବନରେ ଏହା ପ୍ରାୟ ତୃତୀୟ ସ୍ୱପ୍ନ । ସେଦିନ ତାଙ୍କର ବନ୍ଧୁ ପ୍ୟାରୀମୋହନଙ୍କର ଶ୍ରାଦ୍ଧ ଦିବସ । ସେଦିନ ରାତିରେ ସେ ସ୍ୱପ୍ନରେ ଦେଖିଲେ, ଶୂନ୍ୟ ଆକାଶମଣ୍ଡଳରେ ତାଙ୍କର ବନ୍ଧୁ ପ୍ୟାରୀମୋହନ ଓ କୈଶୋର ଗୁରୁ ରାଧାନାଥ ଗୋଟିଏ ଶିଶୁକୁ ସାଙ୍ଗରେ ଧରି ତାଙ୍କଆଡ଼କୁ କ'ଣ ସଙ୍କେତ କରୁଅଛନ୍ତି । ପ୍ୟାରୀମୋହନ ପଚାରିଲେ, ''ମଧୁ, ଆଜି ଡିସେମ୍ବର ୨୮ ତାରିଖ, ମନେଅଛି ତ ?'' ତା'ପରେ ଶିଶୁଟିକୁ ଦେଖାଇ କହିଲେ, ''ଏହାକୁ ଚିହ୍ନିପାରୁଛ ?'' ମଧୁସୂଦନ ସେହି ଶିଶୁଟିକି କିଛି ସମୟ ଭଲକରି ଚାହିଁ ଚିହ୍ନିପାରିଲେ—ସେ ତାଙ୍କର ସ୍ୱର୍ଗବାସୀ ଶିଶୁ ପୌତ୍ର । ମଧୁସୂଦନ ଏ ସ୍ୱପ୍ନକୁ ଅବିଶ୍ୱାସ କରିନଥିଲେ । ସେ ଏହି ସ୍ୱପ୍ନରୁ ବୁଝିନେଲେ, ରାଧାନାଥ ଓ ପ୍ୟାରୀମୋହନ ଡିସେମ୍ବର ୨୮ ତାରିଖରେ ସେମାନଙ୍କ ପାଖକୁ ଯିବାକୁ ତାଙ୍କୁ ନିର୍ଦ୍ଦେଶ ଦେଉଛନ୍ତି । ସତକୁ ସତ ସେହି ୨୮ ଡିସେମ୍ବରରେହିଁ ତାଙ୍କର ପରଲୋକ ଘଟିଥିଲା ।

—

# ସପ୍ତଦଶ ଅଧ୍ୟାୟ

## ସ୍ମୃତି-ତର୍ପଣ

ମଧୁସୂଦନଙ୍କର ମଧୁନିଃସ୍ୟନ୍ଦିନୀ ବୀଣା ଚିରକାଳ ସକାଶେ ନୀରବ ହେଲା । ଉତ୍କଳର ସହସ୍ର ସହସ୍ର ମଧୁପ୍ରାଣ ଲୋକଙ୍କର ପ୍ରାଣ-ତନ୍ତ୍ରୀ ଛିନ୍ନଭିନ୍ନ ହୋଇଗଲା । ମଧୁସୂଦନ ମୃତ୍ୟୁ ପୂର୍ବରୁ ଦେଶବାସୀଙ୍କୁ କୌଣସି ଶେଷ ସନ୍ଦେଶ ଦେଇଯାଇନାହାନ୍ତି ସତ୍ୟ, ତଥାପି ମନେହୁଏ ଦିନେ ଯାହାଙ୍କର ଭକ୍ତିପୂତ କଣ୍ଠରୁ ନିଃସୃତ ହୋଇଥିଲା ''ତୋର ମଙ୍ଗଳ-ବିଧାନ, କରିଅଛି ମରଣକୁ ଅମୃତ ସୋପାନ'' ସେହି ଭକ୍ତ ମଧୁସୂଦନଙ୍କର କ'ଣ ମୃତ୍ୟୁକୁ ଭୟ ଥିବ ? ଦିବ୍ୟାଲୋକ ଓ ଅମୃତପଥର ସନ୍ଧାନୀ ମଧୁସୂଦନଙ୍କ ଅବ୍ୟକ୍ତ ବାଣୀର ପୁଞ୍ଜି ହୁଏତ ଶେଷ ମୁହୂର୍ତ୍ତରେ ହୃଦୟକୁ ଆକୁଳିତ କରି ଗୁଞ୍ଜରିଉଠିଥିବ ରବୀନ୍ଦ୍ରନାଥଙ୍କପରି ଏହି ମର୍ମରେ–

''ତବୁଓ ମରିତେ ହବେ ଏ ଓ ସତ୍ୟ ଜାନି ।
ମୋର ବାଣୀ ।
ଏକ ଦିନ ଏ ବତାସେ ଫୁଟିବେ ନା,
ମୋର ଆଁଖି ଏ ଆଲୋକେ ଲୁଟିବେ ନା,
ମୋର ହିୟା ଛୁଟିବେ ନା,
ଅରୁଣେର ଉଦ୍ଦୀପ୍ତ ଆହ୍ୱାନେ,
ମୋର କାନେ କାନେ
ରଜନୀ କ'ବେ ନା ତାର ରହସ୍ୟ ବାରତା,
ଶେଷ କରେ ଯେତେ ହବେ ଶେଷ ଦୃଷ୍ଟି,
ମୋର ଶେଷ କଥା ।''

ମଧୁସୂଦନଙ୍କୁ ତାଙ୍କ ଦେଶବାସୀ କେତେ ଶ୍ରଦ୍ଧା, ଭକ୍ତି ଓ ଆଦର କରୁଥିଲେ ତାହାର ପ୍ରମାଣ ମିଳେ ତାଙ୍କର ଶବ-ଶୋଭାଯାତ୍ରା ଓ ଶବସତ୍କାର ଦୃଶ୍ୟରୁ । ବିଦ୍ୟୁତ୍‌ବେଗରେ ଏ ଦାରୁଣ ଦୁଃସମ୍ବାଦ କଟକ ସହରର ଚତୁର୍ଦ୍ଦିଗରେ ବ୍ୟାପିଗଲା । ଲୋକେ ବଜ୍ରାହତ ପରି ସ୍ତମ୍ଭୀଭୂତ ହୋଇପଡ଼ିଲେ । ଶେଷଦର୍ଶନ ଲାଭକରିବାକୁ ବହୁସଂଖ୍ୟାରେ କଟକବାସୀ ଆସି ତାଙ୍କ ବାସଭବନରେ ଉପସ୍ଥିତ ହେଲେ । ମଧୁସୂଦନଙ୍କ ନିଜ ରୋପିତ ଉଦ୍ୟାନର ବୃକ୍ଷଲତାରେ ବହୁ ପୁଷ୍ପ-ସମ୍ଭାର ଥିଲା । ରାଶି ରାଶି ପୁଷ୍ପ ସେ ଉଦ୍ୟାନରୁ ଅଣାଯାଇ ସେଥିରେ ମଧୁସୂଦନଙ୍କ ଶବ ଆଚ୍ଛାଦିତ କରାଗଲା । ପଦ୍ମଫୁଲ ଥିଲା ମଧୁସୂଦନଙ୍କର ବଡ଼ ପ୍ରିୟ ।

ଏହି ପଦ୍ମକୁ ଲକ୍ଷ୍ୟ କରି କବି ଯୌବନରେ ଥରେ ଆବେଗମୟୀ ଭାଷାରେ ଲେଖିଥିଲେ –

"ସର୍ବଶୋଭାର ସଦ୍ମ, ରେ ପଦ୍ମ ତୋର
ସଙ୍ଗେ ନିଗୂଢ଼ ଯୋଗ ଅଛଇ ମୋର ।
ଜୀବନ ମରଣରେ ତୋ ସଙ୍ଗେ ମିଶି
ଥାଉ ମୋ ମନପଦ୍ମ ଦିବସ ନିଶି ।
କଲୁଷ ପଙ୍କେ ମୁହିଁ କେଡ଼େ ମଳିନ
କେମନ୍ତେ ସରି ତୋର ହେବି ନଳିନ ।
ପଙ୍କଜ ଅଟୁ ତୁହି, ତେଣୁ ଭରସା
ତୋ ପରି ଶୁଭ୍ର ହେବି ଲଭି ସୁଦଶା ।"

ରାଧାନାଥଙ୍କ ପୁତ୍ର ପ୍ରକୃତି-ଉପାସକ ଶଶିଭୂଷଣ ସେ କଥା ଜାଣିଥିଲେ । ସେ ସଙ୍ଗେସଙ୍ଗେ ଲୋକପଠାଇ ବହୁତ ପଦ୍ମଫୁଲ ଅଣାଇଲେ । ପଦ୍ମଫୁଲରେ ମଧୁସୂଦନଙ୍କ ମରଦେହ ସୁସଜ୍ଜିତ ହେଲା । ଶବକୁ ଗୃହରୁ ବାହାରକରିବା ପୂର୍ବରୁ ବ୍ରାହ୍ମରୀତିରେ ଉପାସନା କରାଗଲା । 'ଯାଓରେ ଅନନ୍ତ ଧାମେ ମୋହମାୟା ପାସରି' ଏହି ସଙ୍ଗୀତଟି ଗାନ କରାଗଲା ପରେ ଅବନ୍ତୀ ଦେବୀଙ୍କ ଶ୍ୱଶୁର ନିମ୍ନଲିଖିତ ଶ୍ଳୋକଟି ଆବୃତ୍ତି କରି ଉପାସନା ଆରମ୍ଭ କଲେ ।

"ଯଶ୍ଚାୟମସ୍ମିନ୍ ଆକାଶେ ତେଜୋମୟୋଽମୃତମୟଃ
ପୁରୁଷଃ ସର୍ବାନୁଭଃ ।"

X X X

"ତମେବ ବିଦିତ୍ୱା ଅତିମୃତ୍ୟୁମେତି
ନାନ୍ୟଃ ପନ୍ଥା ବିଦ୍ୟତେ ଅୟନାୟ ।"

ଉପାସନା ଶେଷହେବାରୁ ଶାସ୍ତ୍ରୀ ମହାଶୟ ଗମ୍ଭୀର କଣ୍ଠରେ କହିଲେ, "ଆମ୍ଭେମାନେ ବର୍ତ୍ତମାନ ଏହି କ୍ଷଣଭଙ୍ଗୁର ଦେହ ନେଇ ଚାଲିଲୁ ।" ତତ୍ପରେ ଏକ ବିରାଟ ଶୋକଯାତ୍ରା ମଧୁସୂଦନଙ୍କ ନଶ୍ୱର ଶରୀରକୁ ବହନକରି ଗମ୍ଭୀର ପରିବେଶ ମଧ୍ୟରେ କାଠଯୋଡ଼ି କୂଳ ସତୀଚଉରା ଅଭିମୁଖେ ଅଗ୍ରସରହେଲା । ଜାତି-ଧର୍ମ ନିର୍ବିଶେଷରେ ଅସଂଖ୍ୟ ଲୋକ ଏହି ଶୋକ-ଯାତ୍ରା ସହିତ ଚାଲିଥା'ନ୍ତି । ରାଧାନାଥଙ୍କ ସମାଧି ପାଖରେ ତାଙ୍କର ଚିତାଗ୍ନି ଜଳିଉଠିଲା । ପରେ ଏହି ସମାଧି ନିକଟରେ ତାଙ୍କର ସମାଧି ନିର୍ମିତ ହେଲା । 'ମରଣେ ଲଭିଲେ ଏକତ୍ର ସମାଧି ।' ଜୀବନରେ ବନ୍ଧୁ, ଜୀବନର ପରପାରେ ମଧ୍ୟ ସେ ସାନ୍ନିଧ ଅକ୍ଷୁଣ୍ଣ ରଖାଗଲା ।

୧୯୧୩ ଜାନୁଆରୀ ୫ ତାରିଖରେ ମଧୁସୂଦନଙ୍କ କାଳିଗଳି ବାସଭବନର ଦକ୍ଷିଣ ଦିଗରେ ଥିବା ସୁପ୍ରଶସ୍ତ ପ୍ରାଙ୍ଗଣରେ ତାଙ୍କର ପ୍ରଥମ ସାମ୍ବତ୍ସରିକ ଶ୍ରାଦ୍ଧ-ସଭା ଅନୁଷ୍ଠିତ

ହୋଇଥିଲା । ପ୍ରଥମେ ମଧୁସୂଦନଙ୍କ ରଚିତ ଏହି ସଙ୍ଗୀତଟି ବୋଲାହୋଇଥିଲା – 'ନୟନ-ଅତୀତ ସେହି ପରଲୋକ ମହାଳୟେ, ଆସ ଯିବା ସଶରୀରେ ତେଜି ସକଳ ସଂଶୟେ ।' ଏହି ସଭାରେ ମଧୁସୂଦନଙ୍କ ସ୍ମୃତି-ତର୍ପଣ କରିବାକୁ ଯାଇ ପଣ୍ଡିତ ଶିବନାଥ ଶାସ୍ତ୍ରୀ କହିଥିଲେ, ''ମଧୁସୂଦନଙ୍କୁ ଲାଇଟ-ହାଉସ୍ ଅର୍ଥାତ୍ ବତିଘର ସହିତ ତୁଳନା କରାଯାଇପାରେ । ବିପଦସଙ୍କୁଳ ସମୁଦ୍ରପଥରେ ଜାହାଜ-ଷ୍ଟିମର୍‌ର ପଥ ନିର୍ଦ୍ଦେଶ ନିମନ୍ତେ ଯେପରି ବତିଘର ଥାଏ, ସେହିପରି ଏହି ପାପ-ପ୍ରଲୋଭନପୂର୍ଣ୍ଣ ଜୀବନ-ସମୁଦ୍ରରେ ସାଧାରଣ ମନୁଷ୍ୟର୍ ଜୀବନ-ତରୀକୁ ପ୍ରକୃତ ପଥରେ ଚାଲିବାକୁ ସାହାଯ୍ୟ କରିବା ନିମନ୍ତେ ମଧୁସୂଦନଙ୍କ ପରି ମହାପୁରୁଷମାନଙ୍କର ଜୀବନ ଏହି ବତିଘରର କାର୍ଯ୍ୟ କରେ ।''

ତତ୍ପରେ ଉତ୍କଳ-ସାହିତ୍ୟର ସୁଦକ୍ଷ ସମ୍ପାଦକ ବିଶ୍ୱନାଥ କର ଓଡ଼ିଆ ଭାଷାରେ ଉପାସନା ବୋଲିବା ପରେ ଜ୍ୟେଷ୍ଠପୁତ୍ର ଜୟନ୍ତ ରାଓ, ଜ୍ୟେଷ୍ଠ ଜାମାତା ବିଜୟଚନ୍ଦ୍ର ମଜୁମଦାରଙ୍କ ରଚିତ 'ଶ୍ରାଦ୍ଧବାସରେ' ପ୍ରବନ୍ଧଟି ପାଠକରିଥିଲେ ଏବଂ ତୃତୀୟ ପୁତ୍ର ସୁକାନ୍ତ 'ପିତୃସ୍ମୃତି' ପାଠକରିଥିଲେ । ଏହି ପ୍ରବନ୍ଧଗୁଡ଼ିକ ଉତ୍କଳ-ସାହିତ୍ୟର ମଧୁସୂଦନ-ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଏହି 'ମଧୁସୂଦନ-ସଂଖ୍ୟା' ଉତ୍କଳ-ସାହିତ୍ୟରେ 'ତିରୋଧାନ' ଶୀର୍ଷକ ପ୍ରବନ୍ଧରେ ସମ୍ପାଦକ ବିଶ୍ୱନାଥ କର ହୃଦୟର ଗଭୀର ବେଦନା ବ୍ୟକ୍ତକରି ଲେଖିଥିଲେ, ''ମଧୁସୂଦନ ଆମ୍ଭମାନଙ୍କର ଜ୍ଞାନଗୁରୁ, କର୍ମଗୁରୁ, ଧର୍ମଗୁରୁ, ସାହିତ୍ୟଗୁରୁ, ସକଳ ବିଷୟରେ ସେ ଆମ୍ଭମାନଙ୍କର ଗୁରୁ ଓ ଜୀବନପଥର ପରମ ସହାୟ । ଏ ଜୀବନ ତାହାଙ୍କ ନିକଟରେ ଯେ ଅପରିଶୋଧ-ଋଣରେ ଆବଦ୍ଧ, ତାହା ପ୍ରକାଶ କରିବାର ଶକ୍ତି ମୋର ନାହିଁ । ଏ ଜୀବନ ତାଙ୍କର ଅପାର୍ଥିବ ସ୍ନେହରେ ଚିରଦିନ ସକାଶେ କ୍ରୀତ । ଦେଶକାଳର ବ୍ୟବଧାନ ଏ ସମ୍ବନ୍ଧ ମଧ୍ୟରେ ନାହିଁ । ମାନବୀୟ ଭାବ, ରକ୍ତମାଂସର ସମ୍ପର୍କ ଏଥିରେ ନାହିଁ । ମଧୁସୂଦନ ଏ ଜୀବନର ଗତି ଫେରାଇଦେଇ ଅନନ୍ତକାଳ ନିମନ୍ତେ ଏ ହୃଦୟର ଗୁରୁପଦରେ, ପୂଜନୀୟ ଦେବତା ପଦରେ ପ୍ରତିଷ୍ଠିତ ହୋଇଅଛନ୍ତି ।''

'ଉତ୍କଳ-ସାହିତ୍ୟ'ର ସେହି ସଂଖ୍ୟାର ସମ୍ପାଦକୀୟରେ ବିଶ୍ୱନାଥ ପ୍ରାଣର ଶୋକାକୁଳ ଉଚ୍ଛ୍ୱାସରେ ମଧୁସୂଦନଙ୍କ ସମ୍ବନ୍ଧରେ ଯେଉଁ ଦୀର୍ଘ ବକ୍ତବ୍ୟ ପ୍ରଶ୍ନାକାରରେ ପ୍ରକାଶ କରିଅଛନ୍ତି ତାହା ଭାବର ଓଜସ୍ୱିତା, ଅପ୍ରତିହତ ସ୍ୱଚ୍ଛନ୍ଦ ପ୍ରବାହ ଏବଂ ଭାଷାର ଅପରୂପ ଲାବଣ୍ୟ ଦୃଷ୍ଟିରୁ ଓଡ଼ିଆ ଗଦ୍ୟ-ସାହିତ୍ୟରେ ଅକ୍ଷୟ ବିଭବ । ଉତ୍କଳର ଗଗନର ଉଜ୍ଜ୍ୱଳ ଜ୍ୟୋତିଷ୍କ ଆଜି ଅସ୍ତମିତ । ଜ୍ଞାନୀ, କର୍ମୀ, ଭକ୍ତ, ପ୍ରେମିକ, ସାଧକ ମଧୁସୂଦନ ଆଜି ଆମ୍ଭମାନଙ୍କୁ ଛାଡ଼ି କେଉଁ ଅଦୃଶ୍ୟ ରାଜ୍ୟକୁ ଚାଲିଗଲେ । x x x

ସଂସାରର କଳୁଷିତ ବାୟୁକୁ ସ୍ୱୀୟ ପୁଣ୍ୟ ଚରିତ୍ରର ପ୍ରଭାବରେ କିଏ ଆଉ ସେପରି ନିର୍ମଳ କରିଦେବ ? ହା, ଉତ୍କଳର ପ୍ରିୟସନ୍ତାନ-ପ୍ରିୟକାରୀ-ପ୍ରିୟଭାଷୀ

ପ୍ରିୟଦର୍ଶନ ମଧୁସୂଦନ ! ଆଜି ତୁମ୍ଭ ଅଭାବରେ ଉତ୍କଳର କି ଦଶା ଘଟିଲା, ତାହା କିଏ ବୁଝିବ ? କିଏ ବା ଏ ଦଶା ମେଣ୍ଟାଇବ ? ହା ହତଭାଗ୍ୟ ଉତ୍କଳ ! ତୁ ଆଜି ଥରେ ସମଗ୍ର ହୃଦୟଦ୍ୱାର ଖୋଲିଦେ । ସମଗ୍ର ଶକ୍ତି ପ୍ରୟୋଗକରି ଥରେ ଆର୍ତ୍ତଧ୍ୱନି ଉଚ୍ଚାରଣ କର । ସେ ଧ୍ୱନି ଦଶଦିଗ ବିକମ୍ପିତ କରି ବିଶ୍ୱପତିଙ୍କ କୃପାସିଂହାସନ ସ୍ପର୍ଶକରୁ । କେଜାଣି ବା ତାଙ୍କରି କୃପାରେ ଏକ ମଧୁସୂଦନ ଶତଶତ ମଧୁସୂଦନ – ସହସ୍ର ସହସ୍ର ମଧୁସୂଦନ ରୂପରେ ତୋର ସଂସାରକୁ ପୂର୍ଣ୍ଣ କରିବେ – ତୋର ଦୁଃଖ-ଦୈନ୍ୟ ଦୂର ହେବ ! ହା, ଭଗବାନ୍ ! ସେଦିନ କେବେ ଆସିବ ? ସେଦିନ କି ଆସିବ ନାହିଁ ? ତେବେ କ'ଣ ମଧୁସୂଦନଙ୍କ ଜୀବନ ବ୍ୟର୍ଥ ? ମଧୁସୂଦନଙ୍କ ତପସ୍ୟା ନିଷ୍ଫଳ ? ମଧୁସୂଦନଙ୍କ କାତର ପ୍ରାର୍ଥନା କେବଳ ପ୍ରଳାପ ? ମଧୁସୂଦନଙ୍କ ଆଶାର ବାଣୀ କେବଳ ଛଳନା ? କିଏ ବୁଝିବ ତୁମ୍ଭର ମହିମା ? କି ସୂତ୍ରରେ ତୁମ୍ଭେ କେଉଁ ମଙ୍ଗଳ ଆନୟନ କର କିଏ ନିରୂପଣ କରିବ ? "ଅନନ୍ତ ଦୟା, ତୁମ୍ଭର ଅନନ୍ତ ଶକତି ।"

ପଲ୍ଲୀକବି ନନ୍ଦକିଶୋର ମଧୁସୂଦନଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ନିବେଦନ କରି ଗୋଟିଏ ସୁଦୀର୍ଘ କବିତା ଲେଖିଥିଲେ । ତହିଁରୁ ଗୋଟିଏ ମାତ୍ର ପଦ ନିମ୍ନରେ ଉଦ୍ଧୃତ ହେଲା ।

"ଉତ୍କଳର ଗ୍ରାମେ ଗ୍ରାମେ ତବ ନାମ
ଘୋଷିତ ହୁଅଇ ହେ କବି,
ପ୍ରତି ବିଦ୍ୟାଳୟେ କୋମଳ ହୃଦୟେ
ବିମ୍ବିତ ତବ ଜ୍ଞାନରବି ।
ଗୁରୁହେ, ସାହିତ୍ୟ କ୍ଷେତ୍ରେ ମହାରଥୀ,
ତବ ସମ ସୁତ ଅଙ୍କେ ଧରି ସିନା
ମାତୃଭୂମି ଯେ ସୁତବତୀ ।

ବରେଣ୍ୟ କବି ଗଙ୍ଗାଧର ମେହେର ଲେଖିଥିଲେ –

"କବିତା ସକଳ ତୁମ୍ଭ ଦେବକନ୍ୟା ବେଶେ,
ଘେନିଯିବେ ସମାଦର କରି ସ୍ୱର୍ଗଦେଶେ ।
ଦେଇଛ ତାହାଙ୍କୁ କବି ଯେତେ ଅଳଙ୍କାର,
ସେ ଭାଷା ଜ୍ୟୋତିରେ ନିଶ୍ଚେ ହେବ ଚମତ୍କାର ।
ଦେଇଅଛ ଜଗତକୁ ଯେତେ ଉପଦେଶ,
ସେ ସବୁ ଧରିବେ ତହିଁ ବିଦ୍ୟାଧର ବେଶ ।
କରିବାକୁ ତବ ଚିତ୍ତ ପ୍ରୀତି ଆକର୍ଷଣ,
ନନ୍ଦନ-କୁସୁମ ଶିରେ କରିବେ ବର୍ଷଣ ।
ନିଜେ ସୁରପତି ଆସି ଧରି ତୁମ୍ଭ ହାତ,

ବସାଇବେ ତହିଁ ଯହିଁ ଥିବେ ରାଧାନାଥ ।
ଜ୍ୟୋତିର୍ମୟ ରୂପ ଧରି ଗଗନମଣ୍ଡଳେ,
ବିତରଣ କରୁଥିବ ଜ୍ୟୋତି ଏ ଉତ୍କଳେ ।''

ବ୍ୟାସକବି ଫକୀରମୋହନ ଲେଖିଥିଲେ –

''ଏକାନ୍ତ ଈଶ୍ୱରନିଷ୍ଠା ଧର୍ମ ଆଚରଣେ,
ସେ ମଧୁ ସମାନ ଆଉ ଦେଖିନାହିଁ ଜଣେ ।
ଶରୀର ଗଠିତ ସତ୍ୟ ମାନବ ଆକାରେ,
ସମସ୍ତ ଦେବତା ଧର୍ମ ଥିଲା ତାହାଠାରେ ।
ଯାବତ ଜୀବନବ୍ୟାପୀ ଅର୍ଥ ଉପାର୍ଜନ,
ପରହିତବ୍ରତେ କରିଛନ୍ତି ସମର୍ପଣ ।

କବି ଶ୍ରୀ ପଦ୍ମଚରଣ ପଟ୍ଟନାୟକ ମଧୁସୂଦନଙ୍କର ପ୍ରଶସ୍ତି ଗାନକରି ଲେଖିଥିଲେ –

''ଉତ୍କଳଭାରତୀ ସେବକ କବି,
ସାହିତ୍ୟ ସୁନୀତି-ପ୍ରଚାର-ରବି,
ସୁନ୍ଦର କବିତା ସନ୍ଦର୍ଭ ଦାନେ,
ଧନ୍ୟ କରିଅଛ ଦେଶ ସନ୍ତାନେ,
କି ମଧୁର ପଦାବଳୀ,
ବାଳବୃଦ୍ଧଯୁବା ଏକାଧାରେ ସର୍ବେ,
ଲଭିବାକୁ କୁତୂହଳୀ ।''

—

# ଅଷ୍ଟାଦଶ ଅଧ୍ୟାୟ

## ଭକ୍ତକବି

"More Light, More Air"

ମଧୁସୂଦନ ଶିଶୁମାନଙ୍କୁ ଉଦ୍‌ବୋଧନ ଦେଇ ତାଙ୍କ ସାହିତ୍ୟ-ସାଧନାର ପ୍ରଥମାବସ୍ଥାରେ ଲେଖିଥିଲେ –

''ଜନନୀ-ଗର୍ଭୁ ଯେଉଁକ୍ଷଣି, ଜନ୍ମି ଛୁଇଁଲ ଏ ଧରଣୀ ।
ତୁମ୍ଭଙ୍କୁ ଦେଖି ହର୍ଷଭରେ, ହସିଲେ କେତେ ନାରୀନରେ ।
କିନ୍ତୁ ହେ ତୁମ୍ଭେ ମାତୃକୋଳେ, କ୍ରନ୍ଦନ କଲ ମହାରୋଳେ ।
ଏବେ ଦୁର୍ଲଭ ଏ ଜୀବନ, ଏମନ୍ତ କର ହେ ଯାପନ ।
ଯେହ୍ନେ ହେ ଶାନ୍ତ ଭାବେ ବସି, ଆନନ୍ଦେ ତୁମ୍ଭେ ହସି ହସି ।
ମୁଦିବ ଅନ୍ତେ ବେନିଡୋଳେ, କିନ୍ତୁ କାନ୍ଦିବେ ମହାରୋଳେ ।
ଶୋକେ ଆକୁଳ ନରନାରୀ, ନୟନୁ ଢାଳି ଅଶ୍ରୁବାରୀ ।''

'ଜନ୍ମ-ମରଣ' (ଛାନ୍ଦମାଳା ୧ମ ଖଣ୍ଡ)

ମନୁଷ୍ୟର ଜନ୍ମ-ମରଣ ସମ୍ବନ୍ଧରେ ମଧୁସୂଦନ କାହିଁକି, ଆଉରି କେତେକ ସାଧକ-କବିଙ୍କର ମଧ ଏହି ସତ୍ୟାନୁଭୂତି ସେମାନଙ୍କର କର୍ମ ଓ କାବ୍ୟ-ସାଧନା, ଭଜନ, ଗାନ ଏବଂ ସ୍ତବ ସ୍ତୋତ୍ରମାନଙ୍କରେ ଦେଖିବାକୁ ମିଳେ । କବି ମଧୁସୂଦନଙ୍କ ପରି ଯେଉଁ ଅଧ୍ୟାତ୍ମବାଦୀ କବିମାନେ ଜୀବନକୁ କେବଳ ଏକ ଅଳୀକ ମହାସ୍ୱପ୍ନ ବୋଲି ମନେ କରନ୍ତିନାହିଁ, ଯେଉଁମାନେ ଏହି ଧୂଳିଧୂସର ଓ ଦୁଃଖ-ବେଦନା-ଜର୍ଜର ମର୍ତ୍ତ୍ୟଭୂମିରେ ସହସ୍ର ବନ୍ଧନ ମଧ୍ୟରେ ମୁକ୍ତିର ଆନନ୍ଦ ଉପଭୋଗ କରନ୍ତି, ବୈରାଗ୍ୟ ସାଧନାରେ ଯେଉଁମାନଙ୍କର ମୁକ୍ତି ନାହିଁ ଏବଂ ଯେଉଁମାନେ ସତ୍ୟ, ସୁନ୍ଦର ଓ ଶିବ ମଧ୍ୟରେ କୌଣସି ପାର୍ଥକ୍ୟ ଅନୁଭବ ନକରି 'ମାନବସେବାରେ ଭଗବତ୍‌ସେବାର୍ ମହନୀୟତା ଉପଲବ୍ଧି କରନ୍ତି ଏବଂ ଯେଉଁମାନେ ମନୁଷ୍ୟକୁ 'ଅମୃତର ସନ୍ତାନ' ମନେ କରନ୍ତି, ସେମାନେ ସମସ୍ତେ ସାଧକ-କବି କବୀରଙ୍କ ପରି ଆତ୍ମମାନଙ୍କ ସୁପ୍ତ ଚୈତନ୍ୟରେ ବାରମ୍ବାର ମୃଦୁ ଆଘାତ କରି କହିଅଛନ୍ତି –

''ଜବ୍ ତୁ ଆୟା ଜଗତ୍‌ମେ, ଲୋକ ହସେ ତୁ ରୋୟା,
ଓସୀ କରଣୀ କର ଚଲୋ କେ ତୁ ହସେ ଜଗ ରୋୟା ।''

ମଧୁସୂଦନଙ୍କ ଜନ୍ମ ସହିତ ମରଣର ଏ ସମ୍ପର୍କ-ଧାରା ଅଚ୍ଛେଦ୍ୟ ଥିଲା । ଜନ୍ମ ହେଲାବେଳେ ସେ ଯେପରି କାନ୍ଦିଥିଲେ, ତାଙ୍କ ମୃତ୍ୟୁରେ ସେହିପରି ଲୋକେ ଶୋକାକୁଳ ହୋଇ କାନ୍ଦିଲେ । ନିଜର ବାଣୀ ମଧୁସୂଦନ ନିଜ ଜୀବନରେ ସଫଳ କରିଯାଇଅଛନ୍ତି । ତାଙ୍କର ସମଗ୍ର ଜୀବନ ଥିଲା ନିରବଚ୍ଛିନ୍ନ ସାଧନାପରମ୍ପରାର ପୁଣ୍ୟଭୂମି । କି ଅନନ୍ତ, ଅମୃତ ଓ ଅନିର୍ବାଣ ଆଲୋକ ନିମନ୍ତେ ତାଙ୍କ ଅନ୍ତର ଚିରପିପାସିତ ହୋଇ ରହିଥିଲା, ଭାବିଲେ ସେହି ଚୈତନ୍ୟ, ଉପଲବ୍ଧି ଓ ପ୍ରଜ୍ଞାର ଥଳକୂଳ ମିଳେନାହିଁ । 'ଆଲୋକ', 'ଆଲୋକ', 'ଆଲୋକ'— ଏହାହିଁ ଥିଲା ତାଙ୍କ ଜୀବନର ଏକମାତ୍ର ମନ୍ତ୍ର । ସେ ଆଲୋକ ଜଗତ୍‌ର ଆଲୋକ ନୁହେଁ – ଦାର୍ଶନିକର ମନନର ଆଲୋକ ନୁହେଁ, ଜ୍ଞାନୀର ଶାସ୍ତ୍ରାନୁଧ୍ୟାନର ଆଲୋକ ନୁହେଁ – ସେ ଭାଷାର ଆଲୋକ-ଛଟା ପରି ଅନ୍ତରାତ୍ମାର ଭାସ୍ୱର ରଶ୍ମି । ଆର୍ଯ୍ୟଋଷିମାନେ ଦିନେ ଉଦାତ୍ତ କଣ୍ଠରେ ଅନ୍ତରାତ୍ମାକୁ ଉଜ୍ଜ୍ୱଳ ଆଲୋକରେ ଉଦ୍ଭାସିତ କରିବା ନିମନ୍ତେ ଭଗବାନ୍‌ଙ୍କୁ ପ୍ରାର୍ଥନା କରି କହିଥିଲେ, ''ତମସୋର୍ମାଜ୍ୟୋତିର୍ଗମୟ ।'' ଏହି ଦିବ୍ୟ ଜ୍ୟୋତି ଲାଭ କରିବା ନିମନ୍ତେ ମଧୁସୂଦନଙ୍କର ମନପ୍ରାଣ ସଦାବେଳେ ଉନ୍ମୁଖ ହୋଇ ରହିଥିଲା । ଜୀବନରେ ସେ ବହୁ ଭକ୍ତିରସାତ୍ମକ କବିତା ରଚନା କରିଅଛନ୍ତି; ଭକ୍ତିରସରେ ନିଜେ ମଜ୍ଜି ଅନ୍ୟମାନଙ୍କୁ ମଜ୍ଜାଇ ଅଛନ୍ତି । କାବ୍ୟଲକ୍ଷ୍ମୀଙ୍କୁ କେବଳ ଭକ୍ତକବିର ପ୍ରାଣ-ପ୍ରକୋଷ୍ଠରେ ଆବଦ୍ଧ ନ ରଖି, ତାଙ୍କୁ ବିଭିନ୍ନ ନୈବେଦ୍ୟ ନିବେଦନ କରିବାକୁ ଭୁଲିନାହାନ୍ତି । ତାଙ୍କୁ ଭକ୍ତକବି ଆଖ୍ୟା ଦିଆଗଲେ ମଧ, ସାହିତ୍ୟର ବିଭିନ୍ନ ବିଭାବ୍ ପ୍ରତି ସେ ଉଦାସୀନ ନୁହନ୍ତି । ଐତିହାସିକ, ଦାର୍ଶନିକ, ବୈଜ୍ଞାନିକ, ଚିନ୍ତାତ୍ମକ ଏବଂ ଜୀବନଚରିତମୂଳକ ବହୁ ଗଦ୍ୟ ପ୍ରବନ୍ଧ ସେ ରଚନା କରି ଓଡ଼ିଆ ଗଦ୍ୟ-ସାହିତ୍ୟର ନୂତନ ଦିଗନ୍ତର ସନ୍ଧାନ ଦେଇଯାଇଅଛନ୍ତି । ଇଂରେଜୀ ସାହିତ୍ୟରୁ ଅମୂଲ୍ୟ ସମ୍ପଦ ବାଛି ତାକୁ ଓଡ଼ିଆ ଗଦ୍ୟ ଓ ପଦ୍ୟ ଉଭୟ ଭାଷାରେ ରୂପାନ୍ତରିତ କରି ଆମ ସାହିତ୍ୟର ପରିପୁଷ୍ଟି ସାଧନ କରିଅଛନ୍ତି । ସଂସ୍କୃତ ସାହିତ୍ୟରୁ କାବ୍ୟ ନାଟକ ଅନୁବାଦ କରି ଅତୀତ ସହିତ ବର୍ତ୍ତମାନର ଯୋଗ ସଂସ୍ଥାପନ କରିଅଛନ୍ତି । ଋତୁ-ବର୍ଣ୍ଣନା ଓ ପ୍ରକୃତିର ନାନା ବିଚିତ୍ର ସୌନ୍ଦର୍ଯ୍ୟର ଅନବଦ୍ୟ ଏବଂ ଅପରୂପ ରୂପାୟନରେ ସେ ସୌନ୍ଦର୍ଯ୍ୟ-ଲକ୍ଷ୍ମୀଙ୍କର ମୁଗ୍‌ଧ ପୂଜାରୀ ରୂପେ ତାଙ୍କର ଉପଯୁକ୍ତ ଅର୍ଚ୍ଚନା କରିଯାଇଅଛନ୍ତି । ଜୀବନର ଆଦର୍ଶକୁ କଟକ ଟାଉନ୍‌ର ଭିକ୍‌ଟୋରିଆ ହାଇସ୍କୁଲ ପ୍ରଭୃତି ଶିକ୍ଷାନୁଷ୍ଠାନମାନଙ୍କରେ ବାସ୍ତବକ୍ଷେତ୍ରରେ କାର୍ଯ୍ୟରେ ପରିଣତ କରିଅଛନ୍ତି । ଜ୍ଞାନ, କର୍ମ ଓ ତପସ୍ୟାକୁ ଜୀବନର ମୂଳମନ୍ତ୍ର କରି ଋଷିପ୍ରତିମ ଜୀବନ-ଯାତ୍ରା ନିର୍ବାହ କରିଯାଇଅଛନ୍ତି । ତଥାପି ତାଙ୍କ ଆତ୍ମାରେ କି ଅତୃପ୍ତିର ବେଦନା ଥିଲା ! ଯେଉଁ ପୂର୍ଣ୍ଣତାର ଉପଲବ୍‌ଧିପାଇଁ ସେ ଜୀବନସାରା ଅକ୍ଲାନ୍ତ ତପସ୍ୟାରେ ନିରତ ଥିଲେ, ସେ ପୂର୍ଣ୍ଣତାର କୋଟୀ ସ୍ପର୍ଶ କରିପାରିଲେ ନାହିଁ ବୋଲି ତାଙ୍କ ପ୍ରାଣରେ କି ଗଭୀର କ୍ଷୋଭ ଥିଲା ! ନଚେତ୍ ଅନ୍ତିମ ରୋଗ ଶଯ୍ୟାରେ ମୃତ୍ୟୁର ଦୁଇ ତିନିଦିନ ପୂର୍ବରୁ ଘର ଭିତରକୁ ସୂର୍ଯ୍ୟରଶ୍ମି ପ୍ରବେଶ

କରିବାର ଦେଖି ସେ କାହିଁକି ବ୍ୟାକୁଳ ପ୍ରାଣରେ ପୁତ୍ର ସୁକାନ୍ତଙ୍କୁ କହିଥାନ୍ତେ, "More light, more air, May German Father Goethe come ?" ଏ Goethe କିଏ ? ମୃତ୍ୟୁର ଅବ୍ୟବହିତ ପୂର୍ବରୁ ମଧୁସୂଦନ ଏହି ଜର୍ମାନ ମହାକବି ଓ ମହାମନୀଷୀଙ୍କୁ କାହିଁକି ସ୍ମରଣ କରିଥିଲେ ? ଅନ୍ତରର କେଉଁ ଅବ୍ୟକ୍ତ ନିଗୂଢ଼ ଓ ଅନତିକ୍ରମଣୀୟ ବେଦନାରେ ସେ ସେତେବେଳେ ଆକୁଳ ହୋଇ ରହିଥିଲେ ? ମୁମୂର୍ଷୁର ପ୍ରଳାପ ରୂପେ ତାଙ୍କ ମଧୁମୟ କ୍ଷୀଣ କଣ୍ଠରୁ ସେଦିନ କାହିଁକି ବା ଉଚ୍ଚାରିତ ହୋଇଉଠିଥିଲା– ଆଲୋକ, ଆଲୋକ, ଆଉରି ଆଲୋକ, ଆଉରି ମୁକ୍ତବାୟୁ । ମୁଁ ସେହି ଜର୍ମାନ-ଜନକ ଗେଟେଙ୍କର ପଦଧ୍ୱନି ଶୁଣିବାକୁ ପାଉଛି । ମୁଁ ତାଙ୍କୁ ଅନନ୍ତ ପ୍ରତୀକ୍ଷାରେ ଚାହିଁ ରହିଛି । ମୁଁ ଯେ ତାଙ୍କୁଇ ଚାହେଁ ? କାହାନ୍ତି ସେ ? ମୋର ହୃଦୟ-ଦ୍ୱାର ଯେ ତାଙ୍କରି ଶୁଭାଗମନ ନିମନ୍ତେ ଉନ୍ମୁକ୍ତ ।

ଏ ପ୍ରଶ୍ନର ଉତ୍ତର ଆମ୍ଭମାନଙ୍କୁ ତାଙ୍କର କନ୍ୟା ଓ ଜୀବନ-ଚରିତ ଲେଖିକା ବର୍ଷୀୟସୀ ଅବନ୍ତୀ ଦେବୀ ଦେଇନାହାନ୍ତି । ଯେଉଁ ପୁତ୍ର ସୁକାନ୍ତଙ୍କୁ ସେ ଲକ୍ଷ୍ୟ କରି ଏହା କହିଥିଲେ, ସେ ମଧ ଏ ବିଷୟରେ କିଛି ଏପର୍ଯ୍ୟନ୍ତ ଆଲୋକପାତ କରିନାହାନ୍ତି । ମଧୁବାବୁଙ୍କ ସାହିତ୍ୟ-ସମୀକ୍ଷକମାନେ ମଧ ଏ ବିଷୟରେ ନୀରବ ।

ତେବେ ଏହି "German Father Goethe'ଙ୍କର ସବିଶେଷ ପରିଚୟ କ'ଣ ? କବି ଯୋହାନ୍ ଗେଟେ (Johana Wolfvgang Von Goethe) ଜାର୍ମାନି ଦେଶର ଫ୍ରାଙ୍କଫର୍ଟ ସହରରେ ୧୭୪୯ ଖ୍ରୀଷ୍ଟାବ୍ଦରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପରଲୋକ ଘଟେ ୮୩ ବର୍ଷ ବୟସରେ ୧୮୩୨ ଖ୍ରୀଷ୍ଟାବ୍ଦରେ । ସେ ଏକାଧାରରେ ଜର୍ମାନ୍ ଭାଷାର ସର୍ବଶ୍ରେଷ୍ଠ ଲେଖକ ଓ କବି ଏବଂ ଆଧୁନିକ ଯୁଗର ଇଉରୋପ ତଥା ସମଗ୍ର ବିଶ୍ୱର ଅନ୍ୟତମ ପ୍ରଧାନ ମନୀଷୀ ଓ ଚିନ୍ତାନାୟକ । ତାଙ୍କର ସାହିତ୍ୟିକ ସାଧନାର ସର୍ବପ୍ରଧାନ କୃତିତ୍ୱ ହେଉଛି ବିରାଟ ଦାର୍ଶନିକ ନାଟକ 'ଫାଉଷ୍ଟ'(Faust) । ଏହି ପୁସ୍ତକର ସମାଲୋଚକମାନେ କହନ୍ତି, ସାମଗ୍ରିକ ଭାବରେ ଗେଟେଙ୍କ ଫାଉଷ୍ଟ ପୃଥିବୀର ଦଶଟି ମୁଖ୍ୟ ରଚନା-ସମ୍ପୁଟ କିମ୍ବା ବାଙ୍ମୟ ଭଣ୍ଡାର ମଧ୍ୟରେ ଅନ୍ୟତମ ରୂପେ ପରିଗଣିତ ହେବାର ଯୋଗ୍ୟ । ଏହି ଦଶଟି ରଚନା ଭଣ୍ଡାର ମଧ୍ୟରେ ଅନ୍ତର୍ଗତ ରାମାୟଣ, ମହାଭାରତ, ସେକ୍ସପିଅର, ଟଲଷ୍ଟୟ ଓ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ଗ୍ରନ୍ଥାବଳୀ ପ୍ରଭୃତି । 'ଫାଉଷ୍ଟ' ନାଟକର ନାୟକ ହେଉଛନ୍ତି ନିଜେ 'ଫାଉଷ୍ଟ' ଏବଂ ଏହି ନାୟକ ଫାଉଷ୍ଟ ଗେଟେଙ୍କ ଜୀବନାନୁଭୂତି ଓ ଜୀବନ-ଦର୍ଶନର ପ୍ରତିଧ୍ୱନି ମାତ୍ର । ଏପରି ବିରାଟ ପ୍ରତିଭାଶାଳୀ କବି ମନୁଷ୍ୟଜାତିର ଇତିହାସରେ ଅଳ୍ପ ଜନ୍ମଗ୍ରହଣ କରିଅଛନ୍ତି । କବିଗୁରୁ ରବୀନ୍ଦ୍ରନାଥ ଏହି ଜର୍ମାନ୍ ମହାକବି ଗେଟେଙ୍କର ପରମ ଭକ୍ତ ଥିଲେ ଏବଂ ତାଙ୍କୁ 'କବିକୁଳଗୁରୁ' ଆଖ୍ୟା ଦେଇଥିଲେ । ଗେଟେଙ୍କ ରଚିତ ଫାଉଷ୍ଟ ନାଟ୍ୟକାବ୍ୟ ଅନୁଶୀଳନ କଲେ ଜଣାଯାଏ– ଏହି ମହାକବିଙ୍କର ବିଶେଷତ୍ୱ ଥିଲା ଦୁଇଟି– (୧) ତାହାଙ୍କର ମାନବତା– ଧନୀନିର୍ଦ୍ଧନ, ଉଚ୍ଚନୀଚ, ଜାତିଧର୍ମ ନିର୍ବିଶେଷରେ ସେ ସକଳ ଯୁଗର ସକଳ

ମନୁଷ୍ୟ ସମାଜ ସହିତ ନିଜକୁ ଏକାତ୍ମବୋଧ କରୁଥିଲେ । ତେଣୁ ସାହିତ୍ୟ କ୍ଷେତ୍ରରେ ତାଙ୍କର ବିରାଟ ସୃଷ୍ଟିର ସକଳ ସମ୍ଭାର ତାହାଙ୍କ ପ୍ରତ୍ୟକ୍ଷ ଅଭିଜ୍ଞତା ଉପରେ ପ୍ରତିଷ୍ଠିତ ହୋଇପାରିଥିଲା । (୨) ତାଙ୍କର ଅନ୍ୟତମ ବିଶେଷତ୍ୱ ହେଲା– ଅସୀମ ଓ ଅତୃପ୍ତ ଜ୍ଞାନପିପାସା । ମଧୁସୂଦନଙ୍କ ପରି ମୃତ୍ୟୁର ପୂର୍ବ ମୁହୂର୍ତ୍ତରେ ଗେଟେଙ୍କ ମୁଖରୁ ଏହି ଗୋଟିଏ ବାଣୀ ମାତ୍ର ନିଃସୃତ ହୋଇଥିଲା, ''ଆଲୋକ, ଆଲୋକ, ଆଉରି ଆଲୋକ ।''

ମଧୁସୂଦନଙ୍କ ଉପରେ ଜର୍ମାନ୍ କବି ଗେଟେଙ୍କର ପ୍ରଭାବ ଥିଲା ଏହି ଜ୍ଞାନପିପାସା କିମ୍ବା ଆଲୋକ ସନ୍ଧାନଠାରୁ ଆଉରି ଗଭୀରତର, ଆଉରି ବ୍ୟାପକ ଓ ଅନ୍ତର୍ଲୀନ । ଗେଟେଙ୍କ 'ଫାଉଷ୍ଟ' ନାଟକରେ ଗୋଟିଏ ପାପ-ପୁରୁଷ କିମ୍ବା ସଇତାନର ଜୀବନ୍ତ ଚିତ୍ର ଅଙ୍କିତ ହୋଇଅଛି । ନାୟକ ଫାଉଷ୍ଟଙ୍କୁ ସେହି ସୟତାନ ନାନା ମାୟା-ଜାଲରେ ଛନ୍ଦି ତାଙ୍କୁ ପ୍ରତିମୁହୂର୍ତ୍ତରେ ନରକକୁ ଟାଣିନେଉଛି । ଅଥଚ ଫାଉଷ୍ଟ ଜଣେ ସାଧାରଣ ଲୋକ ନୁହଁନ୍ତି– ସେ ଜ୍ଞାନୀ, ମାନୀ ଏବଂ ସର୍ବବିଦ୍ୟା-ବିଶାରଦ । ଚିକିତ୍ସା ବିଦ୍ୟାରେ ସେ ଜୀବନ କଟାଇଦେଇଛନ୍ତି । ମୁଣ୍ଡର ବାଳ ଆସି ଧଳାହେଲାଣି । କର୍ମଶକ୍ତି ଦିନକୁ ଦିନ ନିଷ୍ପ୍ରଭ ହୋଇପଡୁଛି । ଏପରି ବୃଦ୍ଧାବସ୍ଥାରେ ଦିନେ ଜଣେ ଭଦ୍ରଲୋକ ଆସି ଡାକ୍ତର ଫାଉଷ୍ଟଙ୍କ ସହିତ ଆଳାପ କରିବସିଲା । ଏହି ଭଦ୍ରଲୋକ ଥିଲା ସେହି ଛଦ୍ମବେଶୀ ସଇତାନ । ସେ କଥାପ୍ରସଙ୍ଗରେ ଡାକ୍ତରଙ୍କୁ କହିଲା– କିଛି ଚିନ୍ତା କରନାହିଁ; ମୁଁ ତୁମର ଯୌବନ ଫେରାଇ ଆଣିବି– ତୁମେ ପୁଣି ପୂର୍ଣ୍ଣ ଉଦ୍ୟମରେ କାମରେ ଲାଗିପଡ଼ିବ । ସାଂସାରିକ ବିଳାସ ବିଭବରେ ପୁଣି ମଜ୍ଜିଯିବ ।

ସଇତାନ ମେଫିଷ୍ଟୋଫିଲିସର ଅନୁଗ୍ରହରେ ଡାକ୍ତର ଫାଉଷ୍ଟ ପୁଣି ଯୌବନ ଫେରିପାଇଲେ । ଯୌବନ ସହ ପୁଣି ଜାଗିଉଠିଲା ଦୁରନ୍ତ କାମଲିପ୍ସା । ଯୁବକ ଫାଉଷ୍ଟଙ୍କ ସହିତ ଦେଖାହେଲା ଜଣେ ସୁନ୍ଦରୀ ତରୁଣୀର । ତରୁଣୀର ନାମ ମାର୍ଗାରେଟ । ଦୁହେଁ ଦୁହିଁଙ୍କ ପ୍ରତି ଗାଢ଼ ଅନୁରକ୍ତ ହୋଇପଡ଼ିଲେ । ଫାଉଷ୍ଟ ଦିନେ ଗୋପନରେ ମାର୍ଗାରେଟ୍‌ଙ୍କୁ ବିଭାହୋଇପଡ଼ିଲେ । ମାର୍ଗାରେଟ୍‌ର ଭାଇ ଏ କଥା ଜାଣିପାରି ଫାଉଷ୍ଟଙ୍କ ଉପରେ ଅତ୍ୟନ୍ତ କ୍ରୁଦ୍ଧହୋଇପଡ଼ିଲେ । ଦିନେ ରାସ୍ତା ଉପରେ ଫାଉଷ୍ଟଙ୍କ ସହିତ ତାଙ୍କର ହାତାହାତି ଆରମ୍ଭ ହୋଇଗଲା । ଫାଉଷ୍ଟଙ୍କ ହାତରେ ମାର୍ଗାରେଟ୍‌ର ଭାଇ ନିହତ ହେଲେ । ଧରାପଡ଼ି ମୃତ୍ୟୁଦଣ୍ଡ ପାଇବା ଭୟରେ ଫାଉଷ୍ଟ ସେ ସ୍ଥାନରୁ ଖସି ପଳାଇ ଗଲେ ।

ସଇତାନର ଶାସ୍ତି ଏତିକିରେ ଶେଷହେଲାନାହିଁ । ପାପ-ପାତ୍ର ପୂର୍ଣ୍ଣ ନହେଲେ ସଇତାନ କ'ଣ ପାପ-ପ୍ରଲୁବ୍ଧ ନରକଗାମୀ ମନୁଷ୍ୟକୁ ସହଜରେ ଛାଡ଼ିଦିଏ ? ଏଣେ କେତେଦିନ ପରେ ମାର୍ଗାରେଟ୍‌ର ଗୋଟିଏ ପୁଅ ହେଲା; କିନ୍ତୁ ଭାଇଙ୍କ ହତ୍ୟା ପରେ ସାଇପଡ଼ିଶା ଓ ଗାଁଗଣ୍ଡାରେ ମାର୍ଗାରେଟ୍‌ର ଦୁର୍ନାମ କହିଲେ ନସରେ । ତାହାର ଦୋଷ,

ଫାଉଷ୍ଟଙ୍କୁ ଶିଖାଇ ସେ ନିଜ ଭାଇକୁ ହତ୍ୟାକରାଇଛି । ସମସ୍ତଙ୍କଠାରୁ ନିନ୍ଦା, ଗାଳି, ଅପମାନ ପାଇ ବିଚାରୀ ନୂଆ ପିଲାଟିକୁ କୋଡ଼ରେ ଧରି ଘରଦ୍ୱାର ଛାଡ଼ି ରାସ୍ତାରେ ଆସି ଛିଡ଼ାହେଲା । ଯେ ଦେଖେ ତାକୁ ଦୂର୍ ଦୂର୍ ମାର୍ ମାର୍ କରେ । ଶୀତ ଦିନ, ଭୀଷଣ ଭାବରେ ତୁଷାରପାତ ହେଉଥାଏ । ନିତାନ୍ତ ଛୋଟ ପିଲା, ଏଡ଼େ ଥଣ୍ଡା ସେ ସହନ୍ତା କିପରି ? ତା'ର ଜୀବନ-ନାଟିକା ନିସ୍ପନ୍ଦ ହୋଇଗଲା । ପୁଲିସ ପୁତ୍ରହନ୍ତୀ ରୂପେ ମାର୍ଗାରେଟ୍‌କୁ ଧରିନେଇ କଚେରିରେ ହାଜରକଲା । ବିଚାରକ ତାକୁ ବିଚ୍‌ରାସ୍ତାରେ ପୋଡ଼ି ମାରିବାକୁ ଆଦେଶଦେଲେ ।

ଏଣେ ଯେ କେତେଟା ଦିନପାଇଁ ସଇତାନ ଫାଉଷ୍ଟଙ୍କୁ ଯୁବକ କରିଦେଇଥିଲା, ସେ ସମୟ ଆସି ପୂରିଯିବାରୁ ସେ ପୁଣି ବୁଢ଼ାହୋଇଗଲେ । ମାର୍ଗାରେଟ୍‌କୁ ଖୋଜି ଖୋଜି ସେ ଅସ୍ତବ୍ୟସ୍ତ ହୋଇପଡ଼ିଲେ, ଶେଷରେ ତାକୁ ପାଇଲେ । ଭାବିଥିଲେ ଶେଷ ଜୀବନଟା ଅନ୍ତତଃ ମାର୍ଗାରେଟ୍ ସହିତ ସୁଖରେ କଟାଇଦେବେ । କିନ୍ତୁ ସଇତାନର କୁହୁକ ମନ୍ତ୍ରରେ ଭୁଲିଯାଇ ସେ ଜୀବନରେ ଯେଉଁ ମହାଭ୍ରମ କରିଛନ୍ତି, ସେଥିରୁ ସହଜରେ ନିଷ୍କୃତି କାହିଁ ? ମାର୍ଗାରେଟ୍‌ର ସନ୍ଧାନ ପାଇଲେ ସତ; କିନ୍ତୁ ସେତେବେଳେ ତା'ର ଅବସ୍ଥା ଅତି ଦୟନୀୟ । ଚାରିପାଖରେ ଜାଳେଣିକାଠ ଜମାହୋଇଛି । ତା' ଉପରେ ମାର୍ଗାରେଟ୍ । ନିଆଁ ଲଗାଇବାକୁ ଅଳ୍ପ ସମୟ ବାକି । ମୁହୂର୍ତ୍ତକ ପରେ ନିଆଁ ଜଳିଉଠିଲା । ତା' ସହିତ ମାର୍ଗାରେଟ୍‌ର ଦେହ ବି ଜଳିଉଠିଲା । ଜାଳେଣିକାଠର ଫାଙ୍କରୁ ମାର୍ଗାରେଟ୍ ଫାଉଷ୍ଟଙ୍କୁ ଚିହ୍ନିପାରି ଚିତ୍କାର କରିଉଠିଲା, 'ତୁମେ ଆସିଛ ବନ୍ଧୁ, ମୋତେ ରକ୍ଷାକର । ମୋର ସେହି ସ୍ୱର୍ଣ୍ଣପ୍ରଭ ଚିକୁର ଜଳିପୋଡ଼ି ଛାରଖାର ହେବାକୁ ଯାଉଛି, ରକ୍ଷାକର ।' ଫାଉଷ୍ଟଙ୍କର ସେତେବେଳେ କିଛି କରିବାର ଉପାୟ ନଥିଲା । କେବଳ ଚକ୍ଷୁରୁ ତାଙ୍କର ଦୁଇବିନ୍ଦୁ ଅଶ୍ରୁ ଝରିପଡ଼ିଲା ।

ଏହିପରି ଫାଉଷ୍ଟଙ୍କର ନୈତିକ ଅଧଃପତନର ବିଷୟବସ୍ତୁ ନେଇ ନାଟକର ପ୍ରଥମଖଣ୍ଡ ସମାପ୍ତ । ଯେଉଁ ପ୍ରଣୟର ସ୍ୱାଦ ଉପଭୋଗ କରିବା ନିମନ୍ତେ ସେ ନିଜକୁ ନରକଗାମୀ କରିବାକୁ ପ୍ରସ୍ତୁତଥିଲେ ଏବଂ ଯେଉଁ ପ୍ରଣୟାନୁଭୂତିର ଆନନ୍ଦଘନ ମଧୁର ମୁହୂର୍ତ୍ତକୁ ଉଦ୍ଦେଶ୍ୟକରି ସେ କହିଥିଲେ, 'ଟିକିଏ ଅପେକ୍ଷା କର, ତୁମେ କି ସୁନ୍ଦର'— ସେହି ଆନନ୍ଦମୟ ଉପଲବ୍ଧି ତାଙ୍କର ଶେଷରେ ଘୋର ଦୁଃଖରେ ପରିଣତ ହେଲା । ଫାଉଷ୍ଟଙ୍କୁ ଏ ସାଂସାରିକ ଜୀବନ ବଡ଼ ଦୁର୍ବହ ବୋଧହେଲା । ଅନୁତାପରେ ତାଙ୍କର ପ୍ରାଣ ଅହରହ ଦଗ୍ଧୀଭୂତ ହେଲା । ସଇତାନର ପାପ-ପ୍ରଲୋଭନରୁ ନିଜକୁ ଦୂରରେ ରଖିପାରିଲେ ନାହିଁ ବୋଲି ନିଜକୁ ଶତ ସହସ୍ର ଧିକ୍‌କାର ଦେଲେ । ପାପ-ପ୍ରବୃତ୍ତିକୁ ଦମନ କରିନପାରି ନିଜର ଚରିତ୍ରକୁ ଏପରି ଦୂଷିତ କଲେ ବୋଲି ବ୍ୟଥାତୁର ହୋଇଉଠିଲେ । ଭକ୍ତକବି ମଧୁସୂଦନଙ୍କ ପରି ସେତେବେଳେ ହୁଏତ ଫାଉଷ୍ଟଙ୍କ ପ୍ରତିଛବି ମହାକବି ଗେଟେ ଅନ୍ତରରେ ଅପାର ବେଦନାରେ ଅସ୍ଥିର ହୋଇ ଗାଇଥିବେ —

"ଭବସିନ୍ଧୁ ମାୟା ଶୈଳମୟ,
ସମସ୍ତ ଛଳନା ପୂର୍ଣ୍ଣ ସେ ଶୈଳେ ସର୍ବଦା ଚୂର୍ଣ୍ଣ
ହୁଅଇ ଆଶାର ତରୀ, କାମନାନିଚୟ,
ବିଫଳ ସତତ, ଚିତ୍ତ ନୈରାଶ୍ୟ ଆଳୟ ।

X X X

କାହିଁ ଶାନ୍ତି, କାହିଁ ନିତ୍ୟସୁଖ,
ଯାହା ଲଭିବାର ଲାଗି . ଅଛି ଅବିରତ ଜାଗି
ଚିତ୍ତଗୃହେ ଆଶାଦୀପ ଉଜ୍ଜ୍ୱଳ ମୟୂଖ,
କାହିଁଗଲେ ପାସୋରିବି ମୃତ୍ୟୁ ପାପ ଦୁଃଖ ।"

ସଂସାରର ମୋହମାୟା ପ୍ରପଞ୍ଚରେ ବିକ୍ଷୁବ୍ଧଚିତ୍ତ ଫାଉଷ୍ଟ ଜୀବନରେ ସୁଖ ଶାନ୍ତିର ଅମୃତ-ଅଭିସଞ୍ଚିତ ପଥ ପାଇଲେ ମହାମାନବତାର ଆଦର୍ଶର ଉପଲବ୍ଧିରେ । ଆଉ ମଧ୍ୟ ଫାଉଷ୍ଟ ଉପଲବ୍ଧି କଲେ, ତାଙ୍କର ନିଜର ସତ୍ତା ତାଙ୍କୁ କ୍ରମାଗତ ଉର୍ଦ୍ଧ୍ୱକୁ ଟାଣିନେଉଛି । ଆତ୍ମାର କ୍ରମ ଉଦ୍‌ଗତି ଓ ଉର୍ଦ୍ଧ୍ୱାୟନରେ ସେ ପରମ ତୃପ୍ତି ଓ ଶାନ୍ତିର ରସ ଆସ୍ୱାଦନ କଲାବେଳେ ତାଙ୍କ ଅନ୍ତରସ୍ଥ ସଇତାନସତ୍ତା ତାଙ୍କୁ ନରକଭୂମିକୁ ଟାଣିନେଇ ବୁଦ୍‌ବୁଦସମ କ୍ଷଣଭଙ୍ଗୁର ସାଂସାରିକ ସୁଖଭୋଗରୂପକ କ୍ଳେଦ ଓ ପଙ୍କରେ ବୁଡ଼ାଇ ରଖିବାକୁ ଚେଷ୍ଟାକରୁଛି । କିନ୍ତୁ ଏ ସଂଘର୍ଷରେ ଫାଉଷ୍ଟଙ୍କ ପୁଣ୍ୟବୋଧ, ନୀତିବୋଧ ଓ ଉଦାର ମାନବିକତା ଶେଷରେ ଜୟଶ୍ରୀମଣ୍ଡିତ ହୋଇ ତାଙ୍କୁ ନିରନ୍ଧ୍ର ତମସାରୁ ଜ୍ୟୋତିର୍ମୟ ପଥର ସନ୍ଧାନ ଦେଇଛି । 'ଫାଉଷ୍ଟ୍ ନାଟକର ଶେଷ ପରିଣତି ଏହିପରି – ମହାମାନବତାର ମହୀୟାନ୍ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ 'ଫାଉଷ୍ଟ' ଆମରଣ ଏହି ପାପରୂପୀ ସଇତାନ ସହିତ ନିରନ୍ତର ସଂଘର୍ଷରେ ବ୍ୟାପୃତ ରହି ଜୀବନର ଶେଷ ସମୟରେ ସମୁଦ୍ରଗର୍ଭରୁ ଗୋଟିଏ ବୃହତ୍ ଭୂଖଣ୍ଡ ଉଦ୍ଧାରକଲେ । ସେହି ଭୂଖଣ୍ଡ ଉପରେ ଯେତେବେଳେ ସୁଖୀ ମାନବ ସମାଜ ଗଠନ କରିଛନ୍ତି ବୋଲି ତାଙ୍କର ଦୃଢ଼ ପ୍ରତୀତି ହେଲା, ସେତିକିବେଳେ ହେଲା ତାଙ୍କର ସାଧନାରେ ସିଦ୍ଧିଲାଭ । ସେତିକିବେଳେ ଯାଇ ତାଙ୍କର ନିଜସ୍ୱ ଉଚ୍ଚତର ସତ୍ତା ସଇତାନୀ ସତ୍ତାକୁ ପରାଭୂତ କଲା । ସେ ସଇତାନକୁ ବର୍ଜନକରି ପାପରୁ ମୁକ୍ତିଲାଭକଲେ । ମଧୁସୂଦନଙ୍କ ପୁଣ୍ୟ ପ୍ରେରଣା, ଜୀବନ-ଧାରା ଓ କାବ୍ୟ-କଳା ଉପରେ ଫାଉଷ୍ଟ ଚରିତ୍ରର ପ୍ରତିଛବି, ମହାକବି ଗେଟେଙ୍କର ପ୍ରଭାବର ପରିସର ଅନୁଧ୍ୟାନ କରିବାକୁ ଗଲେ ଆମକୁ ଏ ବିଷୟଟିକୁ ଆଉରି ପ୍ରାଞ୍ଜଳ ଭାବରେ ଉଲ୍ଲେଖ କରି କହିବାକୁ ହେବ । ନାଟକର ନାୟକ ଫାଉଷ୍ଟଙ୍କର ଶେଷ ପରିଣତି – ସେ କର୍ମଦ୍ୱାରା ମନୁଷ୍ୟ ମଧ୍ୟରେ ଶାନ୍ତି, ସୁଖ ଓ ସମୃଦ୍ଧି ସ୍ଥାପନକଲେ । ବହୁ ମାନବର ବସବାସ ନିମନ୍ତେ ସମୁଦ୍ରରୁ ଭୂମି ଉଦ୍ଧାରକଲେ । ତଥାପି ଦୁଶ୍ଚିନ୍ତା ଓ ଅତୃପ୍ତି ତାଙ୍କ

ମନମଧ୍ୟରୁ ଦୂରହେଲାନାହିଁ । ଫାଉଷ୍ଟଙ୍କର ସମ୍ପୂର୍ଣ୍ଣ ଆତ୍ମତୃପ୍ତି ଓ ପରମ ଆନନ୍ଦର ଅନୁଭୂତି ବିଦ୍ୟୁତ୍‌ପ୍ରଭା ପରି ସେହି ମୁହୂର୍ତ୍ତରେ ତାଙ୍କ ପ୍ରାଣାକାଶରେ ସ୍ଫୁରିତ ହୋଇଥିଲା, ଯେତେବେଳେ ସେ ଉପଲବ୍‌ଧି କଲେ ପର ନିମନ୍ତେ ତାଙ୍କର ଶ୍ରମ ଓ ଚେଷ୍ଟା ସାର୍ଥକ ହୋଇଛି । ଏହିପରି ପରପାଇଁ ନିଜକୁ ଉତ୍ସର୍ଗକରି ଫାଉଷ୍ଟ ନିଜର ନରକଗାମୀ ଆତ୍ମାକୁ ଫେରିପାଇଲେ । ପାପପୁରୁଷର ପ୍ରଭାବ ଅବଲୁପ୍ତ ହେଲା । ଏହି ଆଧ୍ୟାତ୍ମିକ ନବଜନ୍ମ ପରେ ଫାଉଷ୍ଟ ସ୍ୱର୍ଗରାଜ୍ୟରେ ପ୍ରବେଶ କରିବାର ଅଧିକାର ପାଇଲେ ।

ଫାଉଷ୍ଟ ଚରିତ୍ରର ଏହି ମାନବତାର ଆଦର୍ଶ ମଧୁ-ମାନସରେ ବିଚିତ୍ର ଅନୁରଣନ ସୃଷ୍ଟିକରିଥିଲା । ମଧୁସୂଦନଙ୍କ ଜୀର୍ଣ୍ଣ ଜୀବନ-ତରୀର କାଣ୍ଡାରୀ ହୋଇଥିଲା ଗେଟେଙ୍କର ଏହି ଜୀବନବେଦ – ମହାମାନବତାର ଐକାନ୍ତିକ ସାଧନା । ଏହି ସାଧନାହିଁ ମନୁଷ୍ୟର ପରାନିଷ୍ଠା-ଆଧ୍ୟାତ୍ମିକ ସାଧନାର ରୂପାନ୍ତର ମାତ୍ର । ଅପ୍ରତିଦ୍ୱନ୍ଦ୍ୱୀ ନାଟ୍ୟକାବ୍ୟ 'ଫାଉଷ୍ଟ' ଏବଂ ଜ୍ଞାନପିପାସୁ ଓ ଆଲୋକସନ୍ଧାନୀ ମହାକବି ଗେଟେ ମଧୁସୂଦନଙ୍କ ହୃଦୟ ରାଜ୍ୟକୁ ଏପରିଭାବରେ ଅଧିକାର କରି ବସିଥିଲା; କାରଣ ଗେଟେ ତାଙ୍କ 'ଫାଉଷ୍ଟ'ରେ ମନୁଷ୍ୟ ହୃଦୟ ମଧ୍ୟରେ ଭଲମନ୍ଦ କିମ୍ବା ପାପପୁଣ୍ୟର ଯେଉଁ ଦ୍ୱନ୍ଦ୍ୱ ରୂପାୟିତ କରିଅଛନ୍ତି, ସେହି ଦ୍ୱନ୍ଦ୍ୱ·ସବୁ ଦେଶର, ସବୁକାଳର, ସର୍ବକ୍ଷେତ୍ରରେ ସକଳ ମନୁଷ୍ୟର । ତେଣୁ 'ଫାଉଷ୍ଟ' କେବଳ ଜର୍ମାନୀର କାବ୍ୟ ନୁହେଁ କି ଇଉରୋପର କାବ୍ୟ ନୁହେଁ, ଏହା ନିଖିଳ ଜଗତର ମହାମାନବର କାବ୍ୟ । ମନୁଷ୍ୟ ହୃଦୟ ମଧ୍ୟରେ ଏହି ସତ୍ ଓ ସଇତାନ ସତ୍ତାର ଦ୍ୱନ୍ଦ୍ୱର ସମସ୍ୟା ଚିରନ୍ତନ– ତେଣୁ ଏ କାବ୍ୟ ଅମର । ଜଣେ ବିଜ୍ଞ ସମାଲୋଚକଙ୍କ ମତରେ 'ଫାଉଷ୍ଟ'ର କାବ୍ୟ-ସମ୍ପଦ ସ୍ୱଚ୍ଛତୋୟା ସ୍ରୋତସ୍ୱିନୀ ପରି ପ୍ରବହମାନ ଅମୃତଧାରା; ତେଣୁ ଏହି କାବ୍ୟ ବିଶ୍ୱସାହିତ୍ୟର ଅତ୍ୟୁଜ୍ଜ୍ୱଳ ରତ୍ନ । ଏହି ଅତ୍ୟୁଜ୍ଜ୍ୱଳ ରତ୍ନ ମଧୁସୂଦନଙ୍କ ପରି କେତେ ଜଣ କବି ବା ସାହିତ୍ୟିକ ଆହରଣ କରିଅଛନ୍ତି ?

ମଧୁସୂଦନ ଏହି ଅମୃତମୟୀ ସ୍ରୋତସ୍ୱିନୀରେ ଅବଗାହନ କରିଥିଲେ । ପାପକୁ ସଂପୂର୍ଣ୍ଣରୂପେ ପରାଭୂତ କରି ପୁଣ୍ୟର ଜ୍ୟୋତିକଣା ଆହରଣ କରିବା ନିମନ୍ତେ ତାଙ୍କ ପ୍ରାଣରେ ଯେଉଁ ଉଦଗ୍ର ବ୍ୟାକୁଳତା, ସେହି ବ୍ୟାକୁଳତାର ପ୍ରତିଧ୍ୱନି ସେ ଶୁଣିବାକୁ ପାଇଥିଲେ ମହାକବି ଗେଟେଙ୍କ ଶିକ୍ଷାୟିତ ଜୀବନାଦର୍ଶରେ । ତେଣୁ ମୃତ୍ୟୁ ପୂର୍ବରୁ ଆଉ କୌଣସି କବି କିମ୍ବା ମହାପୁରୁଷଙ୍କ ନାମ ସ୍ମରଣ ନ କରି, ସେ ସେଠି ଆଲୋକ ସମାକୀର୍ଣ୍ଣ ରୋଗଶଯ୍ୟାର ପ୍ରକୋଷ୍ଠରେ ମହାକବି ଗେଟେଙ୍କୁ ଅନ୍ତରର ସ୍ୱାଗତ-ଗୀତିକା ଜଣାଇବାକୁ ଯାଇ ସେହି ଗେଟେଙ୍କ ପରି ଅନ୍ତିମ କାଳରେ କହିଥିଲେ, "More light, more air" । ଗେଟେଙ୍କ ପରି ମଧୁସୂଦନ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ନିଶ୍ଚିନ୍ତ ନଥିଲେ । ଭାବବାଦୀ କବି ମଧୁସୂଦନଙ୍କର ସାରା ଜୀବନ ଧରି ଅନ୍ୱେଷଣ ଚାଲିଥିଲା – ମନୁଷ୍ୟର ଏ ଦୁଃଖ କଷ୍ଟର ଅବସାନ କେଉଁଠାରେ ? ସଇତାନ ପ୍ରବୃତ୍ତି ପ୍ରକୋପରେ ସେ

ନିଜକୁ ବଳି ନଦେଇ ଜୀବନକୁ କିପରି ସତ୍‌ପଥରେ ଚାଳିତ କରିବ, ମୃତ୍ୟୁକୁ ଅତିକ୍ରମ କରି କିପରି ମୃତ୍ୟୁଞ୍ଜୟ ହେବ । ତେଣୁ ଅନ୍ତିମ ମୁହୂର୍ତ୍ତରେ ସେ ମହାକବି ଗେଟେଙ୍କୁ ଅଭିବାଦନ କରି ସତେ ଯେପରି ଆମକୁ କହିଯାଇଛନ୍ତି – ଏହି ବିଚିତ୍ର ମନୁଷ୍ୟ ଜୀବନ ଓ ଭଗବଦ୍‌ସତ୍ତା ସମ୍ବନ୍ଧରେ କେତେ ବା ମୁଁ ଜାଣିପାରିଛି ? ଆଉରି ଅନୁସନ୍ଧାନ କରିବାକୁ ହେବ । ସାଧନାର ପଥର ଶେଷ ନାହିଁ– ଆଉରି ଜାଣିବାକୁ ହେବ । ପୂର୍ଣ୍ଣତା ଲାଭ କରିବାପାଇଁ ଆଉରି ତପସ୍ୟା ଆବଶ୍ୟକ– ଆଉରି 'ଆଲୋକ', 'ଆଲୋକ', 'ଆଲୋକ' । ସ୍ୱର୍ଗପଥର ଯାତ୍ରୀ ମନୁଷ୍ୟର ଏ ଅନୁସନ୍ଧିତ୍ସାର ପୂର୍ଣ୍ଣଚ୍ଛେଦ କେଉଁଠାରେ ? ଉପନିଷଦ୍ କହେ, ''ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ପୂର୍ଣ୍ଣ ମୁଦଚ୍ୟତେ । ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ'' । ଏ ସଂସାରରେ ସବୁ ପୂର୍ଣ୍ଣ, ଏ ପୂର୍ଣ୍ଣ, ସେ ପୂର୍ଣ୍ଣ– ପୂର୍ଣ୍ଣରୁ ପୂର୍ଣ୍ଣକୁ ବାଦ୍ ଦେଲେ ବିଯୋଗଫଳ ସେହି ପୂର୍ଣ୍ଣହିଁ ରହେ । ଯେଉଁ ଜଗତ୍‌କୁ ଭଗବାନ୍ ଆଚ୍ଛାଦନ କରି ରଖିଅଛନ୍ତି– ଯେଉଁ ବିଶ୍ୱ ସୃଷ୍ଟିର ଅଣୁ ପରମାଣୁରେ ସେହି ବିଶ୍ୱବିଧାତାଙ୍କ ଚିତ୍‌କଣା ଓତପ୍ରୋତ ଭାବରେ ଜଡ଼ିତ, ସେହି ସୃଷ୍ଟିରେ ଅପୂର୍ଣ୍ଣତା କାହିଁ ? ଯଦି ଅପୂର୍ଣ୍ଣତା ଥାଏ, ତାହା ମନୁଷ୍ୟର ମୋହାଚ୍ଛନ୍ନ ମନର ବିକାର ମାତ୍ର । ସେ ଆବରଣକୁ ଛିନ୍ନ କରିବାକୁ, ହିରଣ୍ମୟ ପାତ୍ରରେ ମନୁଷ୍ୟ ଜୀବନର ଯେଉଁ ସତ୍ୟ ଆବୃତ ହୋଇ ରହିଛି, ସେ ଆବରଣ ଭେଦକରି ଜୀବନର ଧ୍ରୁବ ସତ୍ୟର ଅନ୍ୱେଷଣ କରିବାକୁ ହେବ । ପୂର୍ଣ୍ଣତାପାଇଁ ସାରା ଜୀବନ ପିପାସିତ ହୋଇ ରହିବାକୁ ହେବ । ମଧୁସୂଦନ ମନୁଷ୍ୟକୁ ସେହି ଅଖଣ୍ଡ ପୂର୍ଣ୍ଣ, 'ଏକୋ ଦେବଃ ସର୍ବଭୂତେଷୁ ଗୂଢ଼ଃ' ସର୍ବବ୍ୟାପୀ, ସର୍ବଭୂତାନ୍ତରାତ୍ମା ପରମବ୍ରହ୍ମଙ୍କର ଅଂଶବିଶେଷ ବୋଲି ମନେକରୁଥିଲେ । ତେଣୁ ବ୍ରାହ୍ମଧର୍ମର ନବମନ୍ତ୍ରରେ ଦୀକ୍ଷିତ ହୋଇ 'ନବଯୁଗର ଅଭିଷେକ' କବିତାରେ ଜାତି-ଧର୍ମ ନିର୍ବିଚାରରେ ମନୁଷ୍ୟ ସମାଜକୁ ଉଦ୍‌ବୋଧନ ଦେଇ ସେ ଲେଖିଅଛନ୍ତି–

''ପାପଭାରାକ୍ରାନ୍ତ ଧରଣୀ କାନ୍ଦୁଅଛି ବିକଳେ,
ପାପ ବଂଶ ଧ୍ୱଂସ କର ହେ ମହାପୁଣ୍ୟର ବଳେ ।
ଜଣାଅ ମାନବ ସନ୍ତାନେଉଚ୍ଚ କୁଳ ତାହାର,
ସେ ଯେ ବ୍ରହ୍ମ ସୁତ ଏ ବାର୍ତ୍ତା କର ଭବେ ବିସ୍ତାର ।
ବ୍ରହ୍ମ-ସୁତ ବ୍ରହ୍ମ-ତନୟା ନରନାରୀ ନିକର,
କର ଏ ସମ୍ବାଦ ଘୋଷଣା ସତ୍ୟ-ଶିବ-ସୁନ୍ଦର ।
ସ୍ୱରଗର ପ୍ରେମ ଆଲୋକ ଦଶଦିଗେ ପ୍ରକାଶୁ,
ବିଧାତାର ପୁଣ୍ୟ ଆନନ୍ଦ ସ୍ରୋତେ ଜଗତ ମିଶୁ ।''

—

## (ଖ) ଉପନିଷଦ୍‌ର ପଟ୍ଟଭୂମିକାରେ ମଧୁ-ମାନସ

ଭଗବତ୍ ଭକ୍ତି ଥିଲା ମଧୁସୂଦନଙ୍କର ସହଜାତ ସୂକ୍ଷ୍ମ ପ୍ରବୃତ୍ତି । ପୁରୀ ଜିଲାସ୍କୁଲରେ ଅଧ୍ୟୟନ କରିବା ସମୟରୁ ସେ ଧର୍ମଭାବାପନ୍ନ ଥିଲେ । ଦେବ-ଦର୍ଶନ ନକରି ଅନ୍ନଜଳ ସ୍ପର୍ଶ କରୁନଥିଲେ । ଏହି ଧର୍ମୀୟଭାବ ଏବଂ ଅଧ୍ୟାତ୍ମପ୍ରବଣତା ଉତ୍ତରୋତ୍ତର ବିକାଶ ଲାଭ କଲା ଉପନିଷଦ ପ୍ରଭୃତି ଧର୍ମଶାସ୍ତ୍ର ଅଧ୍ୟୟନ କରି ଏବଂ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇ । ସାକାରପୂଜା କ୍ରମେ ନିରାକାର ପୂଜାରେ ପରିଣତ ହେଲା । ଅଧ୍ୟାତ୍ମପ୍ରବଣତା କୌଣସି ଗୋଷ୍ଠୀ କିମ୍ବା ଧର୍ମସମ୍ପ୍ରଦାୟ ମଧ୍ୟରେ ସଙ୍କୁଚିତ ନରହି ଅନନ୍ତ ବିସ୍ତୃତି ଲାଭ କଲା । ଜଳ, ସ୍ଥଳ, ପର୍ବତ, ସାଗର, ସୂର୍ଯ୍ୟ, ଚନ୍ଦ୍ର, ତାରା ସର୍ବତ୍ର ସେ ଏକ ଏବଂ ଅଦ୍ୱିତୀୟ ପରମବ୍ରହ୍ମଙ୍କର ସତ୍ତା ଉପଲବ୍ଧି କରି ଆନନ୍ଦରେ ତନ୍ମୟ ହୋଇଉଠିଲେ । ଉତ୍କଳର ସୀମିତ ପରିସରକୁ ଅତିକ୍ରମ କରି ଦେଶ, କାଳ ଓ ପାତ୍ରର ସୀମାରେଖା ବିଲୁପ୍ତ କରି ତାଙ୍କର ଆତ୍ମା ନିଖିଳ ବିଶ୍ୱଜଗତ୍ ଉପରେ ପ୍ରସାରିତ ହେଲା । ସେ ନିଜ ଆତ୍ମା ମଧ୍ୟରେ ପରମାତ୍ମାଙ୍କର ଚିନ୍ମୟ ସତ୍ତା ଉପଲବ୍ଧି କରି ଯେପରି ପ୍ରେମ-ପାଗଳ ହୋଇ ଉଠିଲେ, ସେହିପରି ନିଖିଳ ବ୍ରହ୍ମାଣ୍ଡର ମାନବ-ସମାଜ ମଧ୍ୟରେ ନିଜର ଆତ୍ମାକୁ ପ୍ରତିବିମ୍ବିତ ଦେଖି ବିଶ୍ୱୈକବୋଧ ଓ ବିଶ୍ୱାନୁଭୂତିରେ ମହିୟାନ୍ ହୋଇଉଠିଲେ । ସେ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ, କଟକ ବ୍ରାହ୍ମ ଅନୁଷ୍ଠାନର ଆଚାର୍ଯ୍ୟ ରୂପେ ତିରିଶ ବର୍ଷରୁ ଅଧିକ କାଳ ସୁଚାରୁରୂପେ ନିଜର ଦାୟିତ୍ୱ ନିର୍ବାହ କରିଥିଲେ । ବ୍ରାହ୍ମମାନଙ୍କୁ ଉଦ୍‌ବୋଧନ ଦେବା ନିମନ୍ତେ ଉପାସନା ଓ ସଙ୍ଗୀତ ରଚନା କରିଥିଲେ; କିନ୍ତୁ କେଉଁଠାରେ ହେଲେ ସେ କ୍ଷୁଦ୍ର ସାମ୍ପ୍ରଦାୟିକ ଭେଦଭାବରେ ନିଜକୁ ସଙ୍କୁଚିତ କରିନାହାନ୍ତି । ଧର୍ମବୋଧରେ ମଧୁସୂଦନ ଥିଲେ ସର୍ବଦା ଉଦାର ଓ ପ୍ରଶସ୍ତମନା । ଏହି ନିଃସ୍ୱାର୍ଥ ତ୍ୟାଗ ମନ୍ତ୍ର ଓ ବିଶ୍ୱପ୍ରାଣତାର ବୀଜ ତାଙ୍କର ଭକ୍ତିପ୍ରବଣ ଚିତ୍ତରେ କିଏ ବପନ କରିଥିଲା ? ଉପନିଷଦର ପ୍ରଧାନତଃ ସେହି ତିନୋଟି ମହାମନ୍ତ୍ର—

(୧) ଯୋ ବୈ ଭୂମା ତତ୍‌ସୁଖଂ, ନାଲ୍ପେ ସୁଖମସ୍ତି । ଭୂମୈବ ସୁଖଂ । ଭୂମାତ୍ୱେବ, ବିଜିଜ୍ଞାସିତବ୍ୟ ।

ଛାନ୍ଦୋଗ୍ୟ ଉପନିଷଦରେ ବର୍ଣ୍ଣିତ ଅଛି, ନାରଦ ସନତ୍‌କୁମାରଋଷିଙ୍କ ନିକଟକୁ ଯାଇ କହିଲେ, "ଗୁରୋ, ମୋତେ କିଛି ଶିକ୍ଷା ଦିଅନ୍ତୁ ।" ଋଷି କହିଲେ, "ବତ୍ସ, ତୁମେ କି କି ବିଦ୍ୟା ଜାଣ, ଆଗ ମତେ କହିଲ ?" ନାରଦ ନମ୍ରତା ପ୍ରକାଶ କରି କହିଲେ, "ଗୁରୋ, ମୁଁ ଋକ୍, ଯଜୁଃ, ସାମ ଓ ଅଥର୍ବ ବେଦ ପ୍ରଭୃତି ଅଧ୍ୟୟନ କରିଅଛି । ମୁଁ ଗଣିତ, ନ୍ୟାୟ, ଜ୍ୟୋତିଷଶାସ୍ତ୍ର ଅନୁଶୀଳନ କରିଅଛି । ମୁଁ ଅସ୍ତ୍ରଶସ୍ତ୍ର ବିଦ୍ୟାରେ

ସୁନିପୁଣ– ମୋତେ ସାପମନ୍ତ୍ର ଜଣା । ମୁଁ ସକଳ ପ୍ରକାର ଲଳିତକଳାରେ ସୁଦକ୍ଷ । ତଥାପି ଏସବୁ ବିଦ୍ୟାରେ ମୋର ପରିତୋଷ ନାହିଁ । ମୁଁ ଏତେ ବିଦ୍ୟା ଅଭ୍ୟାସ କରି କେବଳ କେତେଗୁଡ଼ିଏ ଶବ୍ଦମାତ୍ର ଶିକ୍ଷା କରିଛି । 'ନାତ୍ମବିଚ୍ଛୃତଂ' ଆତ୍ମା ସମ୍ବନ୍ଧରେ କିଛି ଜାଣିନାହିଁ । **ମୁଁ ଆପଣଙ୍କ** ପରି ପବିତ୍ରାତ୍ମା ଋଷିମାନଙ୍କଠାରୁ ଶୁଣିଛି, ଯେ ଆତ୍ମାକୁ ଜାଣେ ସେ **ସକଳ ଦୁଃଖ**ଶୋକକୁ ଅତି ସହଜରେ ଅତିକ୍ରମ କରିପାରେ । ବର୍ତ୍ତମାନ ମୁଁ ଦୁଃଖରେ **ଅଛି ।** ଏ ଶୋକସାଗର ମୁଁ କିପରି ପାରିହେବି, ମୋତେ ତାହାର ପନ୍ଥା ଦେଖାଇ **ଦିଅନ୍ତୁ ।''**

ଋଷି ଏହା ଶୁଣି ନାରଦଙ୍କୁ କହିଲେ, ''ଠିକ୍ କଥା ବତ୍ସ ! ତୁମ୍ଭେ ଯେଉଁ ବିଦ୍ୟାସବୁ ଶିଖିଛ ବୋଲି କହିଲ, ତାହା ସବୁ ଶୂନ୍ୟ, ଅସାର, ନାମ ମାତ୍ର । 'ନାମୈବୈତତ୍'– ଯାହା ଭୂମା, ଅର୍ଥାତ୍ ସର୍ବବ୍ୟାପୀ–ଅନନ୍ତ ଓ ସୀମାହୀନ, ତାହାହିଁ କେବଳ ସୁଖର ଆଧାର; ଅଳ୍ପ କିମ୍ବା ସସୀମରେ ସୁଖ ନାହିଁ । ଅସୀମହିଁ ସୁଖ, ତେଣୁ ଏହି ଭୂମାକୁ ବୁଝିବାକୁ ହେବ, ଜାଣିବାକୁ ହେବ ।'' ନାରଦ ପଚାରିଲେ, ''ଏହି ଭୂମା କାହିଁ– କେଉଁଠାରେ ?'' ଋଷି ଉତ୍ତରରେ କହିଥିଲେ– ''ସେ ଭୂମା ସର୍ବବ୍ୟାପୀ, ସେ ସର୍ବତ୍ର ବିରାଜମାନ । ସେ ତଳେ, ସେ ଉପରେ, ସେ ସମ୍ମୁଖରେ । ସେ ଦକ୍ଷିଣରେ, ସେ ଉତ୍ତରରେ– ସେ ଦିଗଦିଗନ୍ତ ଉଦ୍ଭାସିତ କରି ବିରାଜମାନ ।''

ମଧୁ-ମାନସ ଏହି ଭୂମାର ଉପଲବ୍‌ଧିରେ ଉନ୍ନତ ଓ ଆନନ୍ଦମୟ । ମଧୁସୂଦନଙ୍କ ମାନସ-ସନ୍ତାନ ତାଙ୍କର କାବ୍ୟ, କବିତା, ଗଦ୍ୟ, ନିବନ୍ଧ ଏବଂ ଅନୁବାଦ ପ୍ରଭୃତି ମଧ୍ୟ ଏହି ଭୂମାର ରସ-ପ୍ରବାହରେ ପ୍ଲାବିତ । ଶିଶୁ-ଗୀତିକାରେ ସେ ସରଳମତି ଶିଶୁମାନଙ୍କୁ ଅଳ୍ପରେ ସନ୍ତୁଷ୍ଟ ନହେବାକୁ ଉପଦେଶ ଦେଇଅଛନ୍ତି । ସେମାନଙ୍କୁ ଚିତ୍ତ-ବିସ୍ତାରର ଉଦ୍‌ବୋଧନ ଦେଇଅଛନ୍ତି । ପଦ୍ୟରେ ସେମାନଙ୍କୁ ଉପଦେଶ ଦେଇଅଛନ୍ତି–

''ଯେତେକ ନରନାରୀ ଭବେ ପ୍ରଭୁ ସନ୍ତାନ ସେ ସରବେ ।
ସକଳ ନରନାରୀ ପ୍ରତି ରଖ ହେ ସଦା ଶୁଭମତି ।
ତେଜିଣ ଦ୍ୱେଷ ଅହଙ୍କାର ଅହିଂସା ଧର୍ମ କର ସାର ।
ଲଗାଇ ନିଜ ଧନପ୍ରାଣ ଲୋକର କର ହେ କଲ୍ୟାଣ ।
ପର ଦୁଃଖରେ ହୁଅ ଦୁଃଖୀ ପରସୁଖରେ ହୁଅ ସୁଖୀ ।
ଧନ୍ୟ ସେ ଧନ୍ୟ ନରନାରୀ ଜଗତଜନ ହିତକାରୀ ।
ସ୍ୱସୁଖ କରେ ବିସର୍ଜନ ପରାର୍ଥେ ଧରଇ ଜୀବନ ।
ଆଚରି କ୍ଷମା ପ୍ରେମ ବ୍ରତ ପାଳଇ ଧର୍ମ ଅବିରତ ।''

ଶିଶୁମାନଙ୍କୁ ଏଠାରେ ସଙ୍କେତ ଦିଆଯାଇଛି– ନିଜର ସଂକୀର୍ଣ୍ଣ ସ୍ୱାର୍ଥକୁ ଜୀବନରେ ଯେପରି ବଡ଼ ବୋଲି ମନେନକର । ଏହାରି ନା 'ଅଳ୍ପ'– ଏ 'ଅଳ୍ପ'ରେ ମନୁଷ୍ୟ ଜନ୍ମର

ସାର୍ଥକତା ନାହିଁ । ଅନ୍ୟମାନଙ୍କ ଆତ୍ମାରେ ନିଜକୁ ପ୍ରସାରିତ କରିଦିଅ । ଅନ୍ୟମାନଙ୍କ ଦୁଃଖରେ ନୟନ ଅଶ୍ରୁସିକ୍ତ କର । ସୀମାରୁ ଅସୀମକୁ ଧାବିତ ହୁଅ । ଏଇତ ଭୂମାର ପରିକଳ୍ପନା । ଏହି ଭୂମାର ଚରମ ଚୂଡ଼ାନ୍ତ ଅଭିବ୍ୟକ୍ତି ଭଗବାନ୍‌ଙ୍କର ଅସୀମ ମହିମାରେ ।

କେବଳ ଶିଶୁ-ଗୀତିକାରେ ମଧୁସୂଦନ ଭୂମାର ସ୍ପର୍ଶ ଲାଭ କରିନାହାଁନ୍ତି । ଏହି ପ୍ରତ୍ୟେକ ଶିଶୁ ମଧ ଗୋଟିଏ ଗୋଟିଏ ଭୂମାର ରୂପାନ୍ତର ମାତ୍ର । 'ବସନ୍ତଗାଥା'ର 'ନବଜାତ ଶିଶୁ ଦର୍ଶନ' କବିତାରେ ସେ ଶିଶୁକୁ ଜନନୀ କୋଳଶାୟୀ ଜଣେ ସାଧାରଣ ରକ୍ତମାଂସଧାରୀ କ୍ଷୁଦ୍ରତମ ମନୁଷ୍ୟରୂପେ ଦେଖିନାହାନ୍ତି; ଦେଖିଛନ୍ତି ସର୍ବବ୍ୟାପୀ ଭଗବାନ୍‌ଙ୍କର ପ୍ରତିରୂପ ରୂପେ—

''ଏ କି ଦେବ-ଦୃଶ୍ୟ ଆଜି ଦେଖଇ ନୟନ,
ନିଖିଳ ଜନନୀ ନିଜେ ବ୍ରହ୍ମାଣ୍ଡ ଈଶ୍ୱର,
ମୋ ନନ୍ଦନ ବୋଲି ଆହା ବଢ଼ାଇ ଶ୍ରୀକର
ଧରିଛନ୍ତି ପ୍ରେମ କ୍ରୋଡ଼େ ପ୍ରେମ ପ୍ରସ୍ରବଣ ।''

କଳକଳ ନାଦରେ ନାନା ବାଧାବିଘ୍ନ ଅତିକ୍ରମ କରି ଏହି ଯେ ସ୍ରୋତସ୍ୱିନୀ ବହିଚାଲିଛି, ଏ କ'ଣ ଗୋଟିଏ ସାମାନ୍ୟ ନଦୀ ? ଏ ସଂସାରର ଗୋଟିଏ ଅତି ସାଧାରଣ ତୁଚ୍ଛ ବସ୍ତୁ ? ସେ ନିଜକୁ ପାଇ ନିଜେ ସନ୍ତୁଷ୍ଟ ନୁହେଁ । ଲକ୍ଷ୍ୟ ତା'ର ଦିଗନ୍ତବିସ୍ତାରୀ । ସେ ଅଳ୍ପରେ ସନ୍ତୁଷ୍ଟ ନୁହେଁ । ସେ ନିଜର ଚଞ୍ଚଳତାର ସୁଖ ନିଜେ ଭୋଗ କରି ତୃପ୍ତ ନୁହେଁ । ସେ ତା'ର ଆତ୍ମାକୁ ଗୋଟିଏ ବିରାଟ ପରିସର ମଧରେ ହଜାଇଦେଇ ଆତ୍ମବିସ୍ମୃତ ନ ହେବା ପର୍ଯ୍ୟନ୍ତ ତା'ର ସାଧନା ଅସମାପ୍ତ । ସେ ବି ଭୂମାର ଉପାସିକା । ତେଣୁ କବି ଲେଖିଅଛନ୍ତି—

''ଚାହୁଁ ଚାହୁଁ ସୁନୀଳ ସମୁଦ୍ରେ ତୋ ସଲିଳ
ଦେଲୁ ତୁ ଢାଳି ମହାପୁରେ,
ଅନନ୍ତସିନ୍ଧୁ ସଙ୍ଗେ ମିଶିଗଲୁ କି ରଙ୍ଗେ
ସକଳ ଭେଦ ଫିଙ୍ଗି ଦୂରେ ।
ଲହରୀ ହୀରକର ହାର
ତୋ କଣ୍ଠେ ତହୁଁ ପାରାବାର,
ଲମ୍ଫାଇ ମହାନନ୍ଦେ ଗାଏ ଗାୟତ୍ରୀ ଛନ୍ଦେ
ତୋ ସଙ୍ଗେ ସଙ୍ଗୀତ ଉଦାର ।''

'ଉତ୍କଳ-ଗାଥା'ର 'ଉତ୍କଳ ଜନନୀ ପ୍ରତି' 'କବିତାରେ ସ୍ୱଦେଶପ୍ରୀତି-ରସାଣିତ ମଧୁ-ମାନସର ସେହି ଭୂମା କିପ୍ରି ବିରାଟ ବିସ୍ତୃତି ପରିସ୍ଫୁଟ—

''ବିଶାଳ ବିସ୍ତାର ତବ, ମା' ଉତ୍କଳ ଭୂମି,
ଦେଖି ଆସିଲି ମୁଁ ଚାରିଆଡ଼େ ଘୁମି ଘୁମି ।
କୋଟିଏ ସନ୍ତାନ ମାଗେ, ଧରିଅଛୁ କୋଳେ,
ଗୋଟିଏ ମନୁଷ୍ୟ କିନ୍ତୁ ନ ଦେଖିଲି ତୋଳେ ।

ଆତ୍ମ-ସଙ୍କୋଚରେ ନିଜର ଗ୍ଲାନି ଓ ଅନୁଶୋଚନା ପ୍ରକାଶ କରିବାରେ କବିଙ୍କର ସନ୍ତର୍ପଣ କିମ୍ବା ଦ୍ୱିଧାଜଡ଼ିତ ଲଜ୍ଜା ନାହିଁ–

''ସମସ୍ତେ ମୋହରି ପରି ମୋହେ ମୂଢ଼ମତି,
କ୍ଷୁଦ୍ର ସ୍ୱାର୍ଥ କାରାରୁଦ୍ଧ, ନିସ୍ତେଜ ମୂରତି ।
ସର୍ବେ କ୍ଷୁଦ୍ରୀକୃତ ପୂଜି କ୍ଷୁଦ୍ର ମୁଦ୍ରା ଖଣ୍ଡେ,
ରମହାନ ଅନନ୍ତେ କେହି ନ ପୂଜଇ ଦଣ୍ଡେ ।''

ମଧୁସୂଦନ କେବଳ ଏଥିରେ କ୍ଷୋଭ ପ୍ରକାଶ କରି ନୀରବ ହୋଇ ରହିନାହାନ୍ତି । ଉପେୟ ଲାଭକରିବା ସକାଶେ ଉପାୟ ମଧ ଆବେଗ କମ୍ପିତ ପ୍ରାଣରେ ନିର୍ଦ୍ଦେଶ କରିଯାଇଅଛନ୍ତି–

''ଶୁଣ ଶୁଣ ମା' ବାରେ ଡେରିଣ ଶ୍ରବଣ,
ବିପୁଳ ବିଶ୍ୱର ମଧୁମୟ ଆମନ୍ତ୍ରଣ ।
'ଓଡ଼ିଆ' 'ଓଡ଼ିଆ'– କ୍ଷୁଦ୍ର ହୁରି ଛାଡ଼ି କ୍ଷଣେ,
ପଶନ୍ତୁ ଗୋ ତୋ ସନ୍ତାନ ବିଶ୍ୱ-ସଭାଜନେ ।
ନିଖିଳ ମାନବ ହୃଦେ ମିଶାଇ ହୃଦୟ,
ଗାଆନ୍ତୁ ବିଶ୍ୱାସଭରେ 'ଜୟ ସତ୍ୟ ଜୟ' ।''

କିନ୍ତୁ ଏ ଭୂମାର ଚିତ୍ତଚମତ୍କାରୀ ଆଧ୍ୟାତ୍ମିକ ବିକାଶ ଦେଖିବାକୁ ମିଳେ ମଧୁସୂଦନଙ୍କ ପରିପକ୍ୱ ଓ ପ୍ରଜ୍ଞାଶାଳୀ ମାନସରୁ ଉତ୍ସାରିତ ଅଦ୍ଭୁତ ଓ ଶାନ୍ତିରସ ସମନ୍ୱିତ 'ଋଷିପ୍ରାଣେ ଦେବାବତରଣ' କବିତାରେ ।

ଋଷିଙ୍କ ପ୍ରାଣରେ ଯେତେବେଳେ ସେହି 'ଚିନ୍ତା-ବାକ୍ୟ-ଅଗୋଚର', 'ଅରୂପ ସରସ', 'ମହାନନ୍ଦ ରସ', 'ଅନନ୍ତ ଅଗମ୍ୟ ମହା-ବ୍ରହ୍ମାଣ୍ଡ ଆଧାର', 'ନିଜ ମହିମାରେ ସ୍ଥିତ', 'ନିରାଧାର ଓ ଅଦେହୀ' ଦେବଙ୍କର ଆବିର୍ଭାବ ଘଟେ, ସେତେବେଳର ସେହି ବିସ୍ମୟଜନକ ଦୃଶ୍ୟର ବର୍ଣ୍ଣନା ଦେବାକୁ ଯାଇ କବି ଲେଖିଅଛନ୍ତି–

''କେମନ୍ତେ ବର୍ଣ୍ଣିବି ସେହି ଭାଷାତୀତ ଭାବ,
ଜୀବାତ୍ମାରେ ପରମାତ୍ମା-ଭୂମା-ଆବିର୍ଭାବ ।
ନୁହେଁ ସେ ଧରାର ଦୃଶ୍ୟ, ଧରାର ଶବଦ,
ସେ ଭାବ ନୁହଇ କ୍ଷୁଦ୍ର ଧରାର ସମ୍ପଦ,
ମହୀୟାନ୍ ମହିମାର ଚିନ୍ମୟ ବିଭବ ।''

(୨) ମଧୁ-ମାନସକୁ ଅଧ୍ୟାତ୍ମ-ରସରେ ଅଭିସିଞ୍ଚିତ କରିଥିବା ଉପନିଷଦର ଦ୍ୱିତୀୟ ମନ୍ତ୍ରଟି ହେଉଛି–

''ଈଶାବାସ୍ୟ ମିଦଂ ସର୍ବଂ ଯତ୍‌କିଞ୍ଚଜଗତ୍ୟାଂ ଜଗତ୍
ତେନ ତ୍ୟକ୍ତେନ ଭୂଞ୍ଜୀଥା ମା ଗୃଧଃ କସ୍ୟସିଦ୍ଧନଂ ।''

ସମଗ୍ର ଜଗତ୍ ଈଶ୍ୱରଙ୍କଦ୍ୱାରା ଆବରଣୀୟ; ଅର୍ଥାତ୍ 'ଜଗତ୍' ନାମରେ ଯାହାକୁ ଅଭିହିତ କରାଯାଉଛି, ତାହା ଈଶ୍ୱରଙ୍କ ବ୍ୟତୀତ ଆଉ ଯାହା ଅଛି ବୋଲି ମନେକରୁଛ ତାହା ତୁମ୍ଭର ଭ୍ରମ ବା ଅବିଦ୍ୟା । ଏହି ଭ୍ରମ କିମ୍ବା ଅବିଦ୍ୟା ଯୋଗୁଁ ତୁମେ ଈଶ୍ୱରଙ୍କ ଛଡ଼ା ଅନ୍ୟାନ୍ୟ କେତେକ ଭୋଗ କରିବାର ବସ୍ତୁ ଦେଖିପାରୁଛ । ବସ୍ତୁତଃ ଏ ଭୋଗ ବସ୍ତୁର ଅସ୍ତିତ୍ୱ ପର୍ଯ୍ୟନ୍ତ ନାହିଁ । ଅତଏବ ଏହି ସକଳ ଭୋଗର ଲାଳସା ତ୍ୟାଗ କରି ଏକମାତ୍ର ଈଶ୍ୱରଙ୍କଠାରେ ତୁମର ମତି ରତ ହେଉ । ଅନ୍ୟ କିଛି ଲୋଭ କରନାହିଁ ।

ଉପନିଷଦର ଏହି ମନ୍ତ୍ରଟି ମଧୁ-ମାନସରେ ଗଭୀର ରେଖାପାତ କରିଥିଲା; କାରଣ ଏହା ଥିଲା ତାଙ୍କ ପ୍ରାଣର ନିଗୂଢ଼ ସ୍ୱତଃସ୍ଫୂର୍ତ୍ତ ଅନୁଭୂତି । ଅନୁଭୂତି ତାଙ୍କର ପରିପୁଷ୍ଟ ହେଲା ଏହି ମନ୍ତ୍ର ଉପରେ ନବ ବ୍ରାହ୍ମଧର୍ମର ଗୁରୁତ୍ୱ ଆରୋପଦ୍ୱାରା । ଅବନ୍ତୀ ଦେବୀ କହନ୍ତି, ''ଈଶୋପନିଷଦର ଏହି ଚୈତନ୍ୟମୟ ଅନୁଭୂତି ମଧୁସୂଦନଙ୍କ ଅନ୍ତରକୁ ଆଉ ସସୀମ ଦେବତାର ବାହ୍ୟ ପୂଜା ମଧ୍ୟରେ ତୃପ୍ତ ରଖିବାକୁ ଦେଲାନାହିଁ । ସେ ବ୍ରାହ୍ମଧର୍ମ ଗ୍ରହଣ କଲେ ।''

ବ୍ରାହ୍ମଧର୍ମର କ୍ରମବିକାଶରେ ଏହି 'ଈଶାବାସ୍ୟ' ମନ୍ତ୍ରର ଗୋଟିଏ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଇତିହାସ ଅଛି । ମହର୍ଷି ଦେବେନ୍ଦ୍ରନାଥ ଏହି ଧର୍ମର ଅନ୍ୟତମ ପ୍ରତିଷ୍ଠାତା । ନିଜେ ମଧୁସୂଦନ ଦେବେନ୍ଦ୍ରନାଥଙ୍କ ସାଧନା ଓ ଦିବ୍ୟ ଚେତନାରେ ଅନୁପ୍ରାଣିତ ହୋଇ କେବଳ ଯେ ଗୋଟିଏ ଉଚ୍ଛ୍ୱାସମୟ ଦୀର୍ଘ କବିତା ଲେଖିଥିଲେ ତାହା ନୁହେଁ; ସେ କାଳର ଚତୁର୍ଥ ଶ୍ରେଣୀ ନିମନ୍ତେ ନିର୍ବାଚିତ 'ସାହିତ୍ୟ-କୁସୁମ' ବହିରେ ତାଙ୍କର ଗୋଟିଏ ସଂକ୍ଷିପ୍ତ ଜୀବନ-ଚରିତ ବି ଲେଖିଥିଲେ । ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ କବିତାରେ ଉଲ୍ଲେଖ ଅଛି–

''ଧର୍ମବୀର କର୍ମବୀର ଶ୍ରୀ ରାମମୋହନ
ପୁଣି ତାଙ୍କ ସତ୍ୟପୂତ ବାଣୀ,
ସ୍ମରି କ୍ଷୁଦ୍ର ପରିମିତ ପ୍ରତିମା ଅର୍ଚ୍ଚନେ
ତ୍ୟଜିଲ ହେ ପ୍ରାଣେ ବ୍ରହ୍ମ ଜାଣି ।
ମହାକ୍ଷଣେ ମହାମନ୍ତ୍ର ଉପନିଷଦର
'ବ୍ରହ୍ମେ ବିଶ୍ୱ କର ଆଚ୍ଛାଦିତ',
ଦୈବବାଣୀ ରୂପେ ତବ ବିମଳ ଅନ୍ତର

ବ୍ରହ୍ମାନନ୍ଦେ କରିଲ ପ୍ଲାବିତ ।
ସେହି ବ୍ରହ୍ମାନନ୍ଦ ସ୍ୱାଦ ଅନୁଭବି ପ୍ରାଣେ
ହୃଦ-ଉତ୍ସୁଁ ଉଠିଲା ଉଚ୍ଛ୍ୱାସି,
ମହାସଂକଳ୍ପର ସ୍ରୋତ ମହେଶ ଆହ୍ୱାନେ
ଧନ୍ୟ ଧନ୍ୟ ହେ ବ୍ରହ୍ମଦରଶୀ ।''

ଦେବେନ୍ଦ୍ରନାଥ ଠାକୁର ବାଲ୍ୟକାଳରୁ ତାଙ୍କ ପିତାମହୀଙ୍କଦ୍ୱାରା ଲାଳିତପାଳିତ ହୋଇଥିଲେ । ଏହି ପିତାମହୀଙ୍କ ମୃତ୍ୟୁର ପୂର୍ବରାତିରେ ତାଙ୍କର ଗଙ୍ଗାଯାତ୍ରା କରାହୋଇଥିଲା । ଚନ୍ଦ୍ରପକ୍ଷ ରାତିରେ ଦେବେନ୍ଦ୍ରନାଥ ନିମତଲା ଘାଟ ଶ୍ମଶାନରେ ଗୋଟିଏ ଖଟ ଉପରେ ବସିଥିଲେ । ପିତାମହୀଙ୍କ ନିକଟରେ କୀର୍ତ୍ତନ ହେଉଥିଲା, ''ଏମନ୍ ଦିନ୍ କି ହବେ ହରିନାମ ବଲିୟା ପ୍ରାଣ ଯାବେ ।'' ଏହି କୀର୍ତ୍ତନ ଶୁଣି ତାଙ୍କ ମନରେ ଗୋଟିଏ ଅପୂର୍ବ ଆନନ୍ଦର ସଞ୍ଚାର ହେଲା । ଏହି ଆନନ୍ଦାନୁଭୂତିକୁ ବର୍ଣ୍ଣନା କରିବାକୁ ଯାଇ ସେ ତାଙ୍କ ଆତ୍ମଜୀବନୀରେ ଲେଖିଅଛନ୍ତି, ''ଭାଷା ସର୍ବଥା ଦୁର୍ବଳ । ମୁଁ ଏ ଆନନ୍ଦ ଲୋକଙ୍କୁ କିପରି ବୁଝାଇବି ? ଏହି ଆନନ୍ଦ ଢାଳିବାପାଇଁ ଈଶ୍ୱର ଅବସର ଖୋଜୁଥା'ନ୍ତି । ସମୟ ଦେଖି ସେ ମୋତେ ଏହି ଆନନ୍ଦ ଦେଇଅଛନ୍ତି । କିଏ କହେ ଈଶ୍ୱର ନାହାନ୍ତି ? ମୁଁ ତ ଏ ଆନନ୍ଦପାଇଁ ପ୍ରସ୍ତୁତ ନଥିଲି— ଏ ଆସିଲା କେଉଁଠାରୁ ?'' କିନ୍ତୁ ଏ ଆନନ୍ଦ ବେଶି ଦିନ ରହିଲା ନାହିଁ । ଏହି ଆନନ୍ଦର ଅନ୍ତର୍ଦ୍ଧାନରେ ସେ ମର୍ମାହତ ହୋଇ ଆତ୍ମଜୀବନୀରେ ଲେଖିଅଛନ୍ତି, ''ପିପାସାତୁର ପଥିକ ପରି ସେହି ଆନନ୍ଦର ଆକର, ପ୍ରେମର ସାଗର, ସତ୍ୟ ସ୍ୱରୂପର ଅନୁସନ୍ଧାନରେ ପ୍ରବୃତ୍ତ ହେଲି । ସେତେବେଳେ ଉପନିଷଦର ଗୋଟିଏ ଛିନ୍ନ ପତ୍ର ମୋ ହାତରେ ପଡ଼ିଲା । ମୁଁ କୌତୂହଳବଶତଃ ସେହି ଛିନ୍ନ ପତ୍ରଟି ଖୋଲି ପଢ଼ିଲି; କିନ୍ତୁ ସେଥିରେ ଯାହା ଲେଖାଥିଲା, ତାହାର ଅର୍ଥ ବୁଝିପାରିଲି ନାହିଁ । ପରେ ଜଣେ ପଣ୍ଡିତ ମୋତେ ଏହାର ଅର୍ଥ ବୁଝାଇଦେଲେ । ସେଥିରେ ଲେଖାଥିଲା 'ଈଶାବାସ୍ୟମିଦଂ...' ମନ୍ତ୍ରଟି ।'' ଦେବେନ୍ଦ୍ରନାଥ ପୁନଶ୍ଚ ତାଙ୍କର ଆତ୍ମଜୀବନୀରେ ଲେଖିଛନ୍ତି— ''ମନ୍ତ୍ରଟିର ଅର୍ଥ ବୁଝିଲି । ମନେହେଲା, ସତେ ଯେପରି ସେତେବେଳେ ସ୍ୱର୍ଗରୁ ଅମୃତ ଆସି ମୋତେ ଅଭିଷିକ୍ତ କଲା । ମୋର ଆକାଙ୍‌କ୍ଷା ଚରିତାର୍ଥ ହେଲା । ମୁଁ ଈଶ୍ୱରଙ୍କୁ ସର୍ବତ୍ର ଦେଖିବାକୁ ଚାହେଁ । ଉପନିଷଦ୍‌ରୁ କ'ଣ ପାଇଲି ? ପାଇଲି, ଈଶ୍ୱରଙ୍କଦ୍ୱାରା ସମସ୍ତ ଜଗତ୍ ଆଚ୍ଛାଦନ କର । ତାହାହେଲେ ସବୁ ପବିତ୍ର ହେବ, ଜଗତ୍ ମଧୁମୟ ହେବ ।''

ଉପନିଷଦ୍‌ର ସେହି ଦିବ୍ୟାମୃତରେ ମଧୁ-ମାନସ ଅଭିଷିକ୍ତ ହୋଇଥିଲା ବୋଲି ସେ ସର୍ବତ୍ର ଅନ୍ତରେ ବାହାରେ ସେହି ସର୍ବବ୍ୟାପୀ ଭଗବାନ୍‌ଙ୍କର ସତ୍ତା ନିବିଡ଼ ଭାବରେ ଉପଲବ୍ଧି କରିପାରୁଥିଲେ । ତେଣୁ ବ୍ୟାକୁଳ ପ୍ରାଣରେ ଅହରହ ଏହି ମନ୍ତ୍ର ସେ ଧ୍ୟାନ କରୁଥିଲେ—

"ଏଷ ଦେବୋ ବିଶ୍ୱକର୍ମା ମହାତ୍ମା,
ସଦା ଜନନାଂ ହୃଦୟେ ସନ୍ନିବିଷ୍ଟଃ ।"
କିମ୍ବା
"ତେ ସର୍ବଗଂ ସର୍ବତଃ ପ୍ରାପ୍ୟ ଧୀରା,
ଯୁକ୍ତାତ୍ମନଃ ସର୍ବମେବା ବିଶନ୍ତି ।"

ଏହି ଦେବ ବିଶ୍ୱକର୍ମା ମହାତ୍ମା– ଏ ସର୍ବଦା ଜନ-ସମୂହର ହୃଦୟରେ ସନ୍ନିବିଷ୍ଟ । ସେହି ଯୁକ୍ତାତ୍ମା ଧୀରଗଣ ସର୍ବଗକୁ ସର୍ବଭାବେ ପ୍ରାପ୍ତ ହୋଇ ସର୍ବମଧ୍ୟରେ ପ୍ରବେଶ କରନ୍ତି । ଭଗବଦ୍‌ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ ସେହି କଥା ମଧ୍ୟ ବାରମ୍ବାର କହିଅଛନ୍ତି । ଯେ ସର୍ବଭୂତକୁ ଆତ୍ମ ମଧ୍ୟରେ ଅବସ୍ଥିତ ଦେଖନ୍ତି, ସର୍ବଭୂତରେ ଆତ୍ମାକୁ ଦେଖନ୍ତି, ସେ ଏହି ଅପୂର୍ବ ଉପଲବ୍ଧି ଫଳରେ ଆଉ କାହାକୁ ଘୃଣା ଚକ୍ଷୁରେ ଦେଖନ୍ତି ନାହିଁ । ତେଣୁ 'ଧୀର' ଓ 'ସର୍ବଭୂତାତ୍ମା' ମଧୁସୂଦନ ଭଗବାନ୍‌ଙ୍କଠାରେ ନିଜର 'ଅନିତ୍ୟ ଅହଂ'କୁ ବିଲୀନ କରିଦେଇ ଲେଖିଅଛନ୍ତି, "ବହିର୍ଜଗତ୍‌ର ଏ ଧ୍ୱନିସବୁ ଶୁଣି, ହେ ମନୁଷ୍ୟ ! ତୁ କାହିଁକି ମନକୁ ଏପରି ଚଞ୍ଚଳ କରୁଛୁ ? ସେହି ଯେ ପରମ ଅବ୍ୟକ୍ତ ଧ୍ୱନି ତୋ ହୃଦୟ ମଧ୍ୟରେ ନିତ୍ୟ ଝଙ୍କାରିତ, ମନଜ୍ଞାନ ଦେଇ ତାକୁଇ ଶ୍ରବଣ କର– ଜୀବନ ଧନ୍ୟ ହେବ ।

"କାହିଁ ଯାଉଛୁ ତୁ କି ଶବ୍ଦ ପଶ୍ଚାତେ
ବୁଲୁଛୁରେ ହୋଇ ବାଇ ?
ଅଶବ୍ଦ ଶବଦ ମୁଁ ତୋ ପ୍ରାଣେ ଅଛି
ଶୁଣ ଶୁଣ ସଦା ଧାୟୀ ।
ପ୍ରାଣର ନିର୍ମଳ ପ୍ରେମ ଦିଅ ମୋତେ
ମୁହିଁ ତ ତୋ ପ୍ରାଣସଖା,
ମୋ ବାଣୀ ଶ୍ରବଣେ ଭାଜିବ ତୋହର
ବିଷାଦ ଜଞ୍ଜାଳ ଦକା ।"

ଅଥବା ତାରକାଖଚିତ ସୀମାହୀନ ନୀଳଗଗନକୁ ଚାହିଁ ଅପାର ପ୍ରେମ-ବିସ୍ମୟ-ଆନନ୍ଦରେ ଅଭିଭୂତ ହୋଇ ଲେଖିଛନ୍ତି–

"ଧନ୍ୟ ଧନ୍ୟରେ ଆକାଶ ଧନ୍ୟ ତୋ ମହିମା,
ମହାଭାବ ଉପୁଜଇ ତୋର ଦରଶନେ,
ଉଦାର ପ୍ରଶାନ୍ତ ତୋର ଅନନ୍ତ ନୀଳିମା,
ସଂସାରର କ୍ଷୁଦ୍ର ଭାବ ବିନାଶଇ କ୍ଷଣେ ।
ମୁହୂର୍ତ୍ତକେ ଘେନୁ ମୋତେ ରେ ମହାଗଗନ,
ପରମାତ୍ମା ପ୍ରାଣସଖା ମହେଶ ଶ୍ରୀପଦେ,

ମହାପ୍ରେମାବେଶେ ଅଶ୍ରୁ ବର୍ଷେ ମୋ ନୟନ,
ଲଭଇ ମୁଁ ସ୍ୱରଗର ଆନନ୍ଦ ସମ୍ପଦେ ।''

ସେହି 'ମହାପ୍ରେମାବେଶ' ତାଙ୍କୁ ଦେଇଥିଲା ଅଦ୍ୱୟ ଦୃଷ୍ଟି— ଧୀରଜନୋଚିତ ସମଦର୍ଶିତା— ଶୁଦ୍ଧ ଚୈତନ୍ୟର ଅଖଣ୍ଡ ଅନାବିଳ ଅନୁଭୂତି, ଯାହାର ଅନୁପ୍ରେରଣାରେ ସେ ପତିତା ରମଣୀକୁ ସାନନ୍ଦ ସ୍ୱାଗତ ଜଣାଇ ଲେଖିଥିଲେ—

''କେ ଚାହିଁବ ଚାହୁଁ ତୋତେ ଗର୍ବ ଅବଜ୍ଞାରେ,
କିନ୍ତୁ ଲୋ ଭଗିନୀ, ମୁହିଁ ତୋ ଦୁଃଖେ କାତର ।
ଆହତ ମୋ ପ୍ରାଣ ତୋର-ମର୍ମ-ହାହାକାରେ,
କାନ୍ଦଇ ବିକଳେ ମୋର ବ୍ୟଥିତ ଅନ୍ତର ।''

(୩) ସହଜାତ ଧର୍ମପ୍ରବଣତା ସହିତ ଯୁକ୍ତହୋଇ ଉପନିଷଦ୍‌ର ଯେଉଁ ତୃତୀୟ ମନ୍ତ୍ରଟି ଯୋଗୁଁ ମଧୁସୂଦନଙ୍କୁ ଏ ସୃଷ୍ଟି ଆନନ୍ଦମୟ ଓ ଅମୃତମୟରୂପେ ପ୍ରତିଭାତ ହୋଇଥିଲା, ସେ ପ୍ରାଣ-ସଂଜୀବନୀ ମନ୍ତ୍ରଟି ହେଉଛି 'ମୁଣ୍ଡକ ଉପନିଷଦ'ର 'ଆନନ୍ଦରୂପମମୃତଂ ଯଦ୍‌ବିଭାତି'— ଏ ଜଗତ୍‌ରେ ଯାହା କିଛି ପ୍ରକାଶମାନ, ତାହା ଆନନ୍ଦମୟ ଓ ଅମୃତମୟ । ଆନନ୍ଦରୁ ସବୁ ଉତ୍ପନ୍ନ, ଆନନ୍ଦ ଯୋଗୁଁ ସମସ୍ତେ ଜୀବନ ନେଇ ବଞ୍ଚିଛନ୍ତି । ଆନନ୍ଦର ଅଭିମୁଖେ ସମସ୍ତଙ୍କ ପ୍ରାଣ ଚଞ୍ଚଳ ଓ ଗତିଶୀଳ । ବ୍ରହ୍ମ ଆନନ୍ଦମୟ । 'ରସୋ ବୈ ସଃ ରସଂ ହ୍ୟେବାୟଂ ଲବଧାନନ୍ଦୀ ଭବତି'— ସେ ରସସ୍ୱରୂପ, ସେହି ରସକୁ ଜାଣିଲେ ସମସ୍ତେ ଆନନ୍ଦସ୍ୱରୂପ ହୋଇଯା'ନ୍ତି । କିଏ ସଂସାରରେ ଜୀବନ ଧରି ରହିବାକୁ ଚେଷ୍ଟା କରନ୍ତା, କିଏ ବା ବଞ୍ଚିରହନ୍ତା; ଯଦି ଆକାଶରେ ଆନନ୍ଦ ନ ଥା'ନ୍ତା ? 'କଃ ପ୍ରାଣ୍ୟାଦ୍ ଯଦେବ ଆକାଶ ଆନନ୍ଦୋ ନ ସ୍ୟାତ୍'— ମନୁଷ୍ୟ ମୃତ୍ୟୁ ପରେ ସେହି ଆନନ୍ଦକୁ ଫେରିଯାଏ, ସେହି ଆନନ୍ଦରେ ଅଭିସଂବିଷ୍ଟ ହୁଏ । ଏହି ଆନନ୍ଦାନୁଭୂତିର ଉଚ୍ଛ୍ୱସିତ କଳ୍ପନା ଓ ଭାବନା ରବୀନ୍ଦ୍ରନାଥଙ୍କର ବହୁ କବିତାରେ ଦେଖିବାକୁ ମିଳେ; ଯେପରି—

''ଏହି ସ୍ତବ୍‌ଧତାୟ,
ଶୁନିତେଛି ତୃଣେ ତୃଣେ ଧୂଲାୟ ଧୂଲାୟ,
ମୋର ଅଙ୍ଗେ ରୋମେ ରୋମେ, ଲୋକେ ଲୋକାନ୍ତରେ
ଗ୍ରହ ସୂର୍ଯ୍ୟ ତାରକାୟ ନିତ୍ୟକାଳ ଧରେ,
ଅଣୁପରମାଣୁଦେର ନୃତ୍ୟକଳରୋଳ—
ତୋମାର ଆସନ ଘେରି ଅନନ୍ତ କଲ୍ଲୋଳ ।''

ସେହିପରି ମଧୁସୂଦନ ଏ ସୃଷ୍ଟିକୁ ଆନନ୍ଦର ଉତ୍ସରୂପେ ଗ୍ରହଣ କରିଥିଲେ— ରବୀନ୍ଦ୍ରନାଥଙ୍କ ପରି ତାଙ୍କର କବିଜୀବନ ଏବଂ ଧର୍ମଜୀବନ ଏ ଉଭୟର ପରମ ଉପଲବ୍‌ଧି ଥିଲା—

"ସବ କ୍ଷତି ମିଥ୍ୟା କରି ଅନନ୍ତେର ଆନନ୍ଦ ବିରାଜେ।"

ତେଣୁ ସେ 'ଏ ସୃଷ୍ଟି ଅମୃତମୟ' କବିତାରେ ଲେଖିଅଛନ୍ତି–

"ଗୃହ-ପରିବାର ମାନବ ସମାଜ
ନରନାରୀ ଲୋକାଳୟ ହେ,
ପିତାମାତା ଭାଇ ଭଗିନୀ ଦମ୍ପତି
ତନୟା କିମ୍ବା ତନୟ ହେ,
ଦୟା ନିକେତନ ଧର୍ମାଧିକରଣ
ବିଦ୍ୟାଳୟ ଦେବାଳୟ ହେ,
ଶ୍ରଦ୍ଧା ଭକ୍ତି ପ୍ରୀତି ଦୟା ଶୁଭାକାଙ୍‌କ୍ଷା
ପୁଣ୍ୟ ବିଶ୍ୱାସ ବିନୟ ହେ,
ଏ ସକଳ ମଧ୍ୟେ ନିବସନ୍ତି ପ୍ରଭୁ
ଶାଶ୍ୱତ ଅମୃତମୟ ହେ।
ଗରଳୁ ଅମୃତ କରନ୍ତି ବାହାର
ଅନନ୍ତ ଅମୃତାଳୟ ହେ,
ପରମ ଜନକ ପରମ ଜନନୀ
ତାଙ୍କ ପଦେ ବରାଭୟ ହେ।
ସେହି ବରାଭୟ ଆନନ୍ଦାମୃତର
ହୁଅ ଶିଶୁ ସ୍ତନନ୍ଧୟ ହେ।"

ତେବେ ମଧୁସୂଦନଙ୍କ 'ଜୀବନ-ଚିନ୍ତା' କବିତାଟି ପଢ଼ି ଯେଉଁମାନେ ଗମ୍ଭୀର ଭାବରେ ଅଭିଯୋଗ ଆଣନ୍ତି– କବି ପଳାୟନପନ୍ଥୀ, ସଂସାରବିମୁଖ, କଳ୍ପନାବିଳାସୀ ଓ ଭାବବାଦୀ କିମ୍ବା ଯେଉଁମାନେ ଲଘୁ ହାସ୍ୟରସ ସୃଷ୍ଟି କରିବାକୁ ଯାଇ କହନ୍ତି– ମଧୁସୂଦନଙ୍କ 'ଜୀବନ-ଚିନ୍ତା' କବିତାଟି ଏ ଯୁଗର ଜନ୍ମ-ନିୟନ୍ତ୍ରଣ ସମସ୍ୟା ସମାଧାନ କରିବାରେ ବିଶେଷ ସହାୟକ; କାରଣ ଏଥିରେ ନାରୀର ଯୌବନ ସୁଧା ପ୍ରତି କବିଙ୍କର କଟାକ୍ଷପାତ ଅଛି, ସେମାନଙ୍କର ଏ ଅଭିଯୋଗର ସତ୍ୟତା କାହିଁ ? 'ଜୀବନ-ଚିନ୍ତା'ରେ କବି ନଶ୍ୱର ମାନବ-ଜୀବନକୁ ଦୁଃଖମୟରୂପେ ଚିତ୍ର କଲେ ମଧ ସେ ଦୁଃଖବାଦୀ ନୁହନ୍ତି। 'ଜୀବନ-ଚିନ୍ତା' ଓଡ଼ିଆ ଭକ୍ତି-ସାହିତ୍ୟର ଦ୍ୱିତୀୟ 'ମନବୋଧ ଚଉତିଶା' ନୁହେଁ। ମନୁଷ୍ୟ ଜୀବନର ତୁଚ୍ଛତା ଏଥିରେ ପ୍ରତିପାଦିତ ହୋଇନାହିଁ। ଏଥିରେ ଦୁଃଖର ତମୋମୟ ଘନଘଟା ମଧ୍ୟରେ ଆନନ୍ଦ, ଆଶା ଓ ଅମୃତତ୍ୱର ଉଜ୍ଜ୍ୱଳ ବିଦ୍ୟୁତ୍-ଛଟା ପରିସ୍ଫୁରିତ। ମନୁଷ୍ୟଜୀବନର ଉପାଦେୟତାକୁ କବି ଏ କବିତାରେ ଏଡ଼ିଦେଇ ନାହାନ୍ତି। ଜଗତ୍‌ର ହିତ ଅର୍ଥେ ଜୀବନ ବିସର୍ଜନ କରିବାକୁ ଏଥିରେ ସଂସାରର ମୋହମାୟାଗ୍ରସ୍ତ ଓ ଦୁଃଖକ୍ଲିଷ୍ଟ ମନୁଷ୍ୟକୁ ଉଦ୍‌ବୋଧନ ଦିଆଯାଇଅଛି। ସେମାନଙ୍କର ସୁନୀତି ଓ

ସୁରୁଚିବୋଧ ଜାଗରିତ କରିବା ଉଦ୍ଦେଶ୍ୟରେ ପ୍ରାଣର ଗଭୀର କନ୍ଦର ମଧ୍ୟରୁ ଆକୁଳ-ବ୍ୟାକୁଳ ଭାଷାରେ ନିବେଦନ କରାଯାଇଅଛି–

"ପରିହରି ପାପ ପ୍ରଲୋଭନ,
ଉଜ୍ଜ୍ୱଳକର ବିଶ୍ୱାସ, ସ୍ୱାର୍ଥ ଅହଂକାର ନାଶ,
କରରେ ହୃଦୟାକାଶ ନିର୍ମଳ ବହନ;
ତେବେରେ ଲଭିବୁ ଧର୍ମରସ ଆସ୍ୱାଦନ ।"

ନିଃସ୍ୱାର୍ଥ ମାନବ-ସେବାହିଁ ଯେ ଅଧ୍ୟାତ୍ମ ସାଧନା, ସେହି ସତ୍ୟଟି ଏହି କବିତାରେ ବାଣୀମୂର୍ତ୍ତି ଲାଭ କରିଅଛି । ମନୁଷ୍ୟସମାଜକୁ ଛାଡ଼ି ମଧୁସୂଦନଙ୍କର ମୁକ୍ତି ନାହିଁ । ମୋହର ଆବରଣ ଛିନ୍ନ ନ ହେଲେ ଏ ଦେହ ଭୂମାନନ୍ଦମୟ ହେବ କିପରି ? ଭୂମାନନ୍ଦମୟତାର ଉଦ୍ଭବ ନହେଲେ ମନୁଷ୍ୟ ଚିରକାଳ ତା'ର କ୍ଷୁଦ୍ର ଅହଂ, ସ୍ୱାର୍ଥ ଓ ଆତ୍ମକୈନ୍ଦ୍ରିକତାରେ ଜଡ଼ିତ ହୋଇ ରହିଥିବ, ପାପର ପ୍ରଲୋଭନ ପରିହାର କରିପାରିବ ନାହିଁ କିମ୍ବା ହୃଦୟାକାଶକୁ ନିର୍ମଳ କରିପାରିବ ନାହିଁ– ଜଗତ୍‌ର ହିତ ଅର୍ଥେ ଜୀବନ ଦେବା ତ ଦୂରର କଥା । ଏହି ଯାନ୍ତ୍ରିକ ସଭ୍ୟତା ଏବଂ ବସ୍ତୁତାନ୍ତ୍ରିକ ଯୁଗରେ 'ଦୁର୍ନୀତି, ଦୁର୍ନୀତି' ବୋଲି ଯେଉଁ ପ୍ରବଳ କୋଳାହଳ ଶୁଣିବାକୁ ମିଳେ ଏବଂ ବାସ୍ତବ କ୍ଷେତ୍ରରେ କେତେକ ଉଚ୍ଚ ଶିକ୍ଷିତ ବ୍ୟକ୍ତିଙ୍କ କାର୍ଯ୍ୟକଳାପରେ ଯେଉଁ ଦୁର୍ନୀତି, ଦୁର୍ଦ୍ଧାନ୍ତ ଧନଲିପ୍ସା, ଅନାଚାର, ଅପଚାର, ଶୋଷଣ, ପ୍ରିୟାପ୍ରୀତିତୋଷଣ ଓ ଅସୌଜନ୍ୟ ପ୍ରଭୃତି ଚାରିତ୍ରିକ ଦୁର୍ବଳତା ଦେଖାଯାଏ ଏବଂ ଯାହାର ଦୂରୀକରଣ ନିମନ୍ତେ ଦେଶର ନେତୃସ୍ଥାନୀୟ ଲୋକମାନଙ୍କର ଉଦ୍‌ବେଗ ଓ ଚିନ୍ତାର ଆଜି ସୀମା ନାହିଁ, ସେମାନେ 'ଜୀବନ-ଚିନ୍ତା'ରେ ଯେଉଁ ଉଦ୍‌ବୋଧନ ମଧୁସୂଦନ ଦେଇଅଛନ୍ତି, ତାହା ଅନୁଧ୍ୟାନ କରନ୍ତୁ । ଜୀବନର ମୂଲ୍ୟବୋଧ ସେମାନଙ୍କର ପରିବର୍ତ୍ତିତ ହେଉ ।

କାହାର କେତେ ଟଙ୍କା-ପଇସା ଅଛି, ଏ ଦିଗରୁ ମନୁଷ୍ୟର ମୂଲ୍ୟ କେହି କଳନା କରେନାହିଁ, ମନୁଷ୍ୟ ଜୀବନର ମୂଲ୍ୟ ନିରୂପଣ କରାଯାଏ ନାହିଁ । କାହାର ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟ କେତେ– ଏହି ଜୈବ ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟକୁ ଅତିକ୍ରମ କରି ଯେ ଆମକୁ ଅପରିସୀମ ପ୍ରାଣ-ପ୍ରାଚୁର୍ଯ୍ୟର ଅମୂଲ୍ୟ ସମ୍ଭାର ପରିବେଷଣ କରିଯାଇଅଛନ୍ତି– ଆମ୍ଭମାନଙ୍କର ଦୃଷ୍ଟି ଏହି ଚାକଚକ୍ୟମୟ ବହିର୍ଜ୍ଜଗତରୁ ଫେରାଇନେଇ ଅନ୍ତର୍ଜ୍ଜଗତ ଉପରେ ନିବଦ୍ଧ କରିଅଛନ୍ତି– ଆମକୁ ସସୀମରୁ ଅସୀମ ଦିଗ୍‌ବିଜୟର ସନ୍ଧାନ ଦେଇଅଛନ୍ତି– ଆମ୍ଭମାନଙ୍କର ଜଡ଼ତା, ଆଳସ୍ୟ, କୁତ୍ସିତ କାମନା-ବାସନା ଉପରେ କଷାଘାତ କରି ଆମ୍ଭମାନଙ୍କ ଜୀବନରେ ମହାଜାଗରଣ ଆଣିଦେଇଅଛନ୍ତି; ସେମାନେ ସଂସାରର ସୁଖ ବିଳାସ ପ୍ରତି ଯେତେ ବୀତସ୍ପୃହ ହୁଅନ୍ତୁ ପଛକେ, ସେମାନେ କଦାପି ପଳାୟନବାଦୀ ନୁହନ୍ତି । ମନୁଷ୍ୟଜୀବନର ଇତିହାସ ଏବଂ ମନୁଷ୍ୟସୃଷ୍ଟ ସାହିତ୍ୟଜଗତରେ ସେମାନଙ୍କର ସ୍ଥାନ ଅତି ଉଚ୍ଚରେ । କେବଳ ବ୍ୟାବହାରିକ କିମ୍ବା

ସାଂସାରିକ ଜୀବନଟା ଜୀବନର ଏକମାତ୍ର କଥା ନୁହେଁ । ମନୁଷ୍ୟର ସାମଗ୍ରିକତାର ସର୍ବତୋମୁଖୀ ବିକାଶ ନିମନ୍ତେ କେବଳ ଅର୍ଥର ଆବଶ୍ୟକତା ଏକମାତ୍ର ଅପରିହାର୍ଯ୍ୟ ଉପାଦାନ ବୋଲି ଧରିନେଲେ ମନୁଷ୍ୟଜାତିର ସର୍ବନାଶ ! ବିଜ୍ଞାନର ଅଗ୍ରଗତି ଫଳରେ ଯାନ୍ତ୍ରିକ ସଭ୍ୟତାର ପ୍ରତିଷ୍ଠା– ଧନତୃଷ୍ଣାର ଉତ୍କଟତା – ଧର୍ମବୁଦ୍ଧିର କ୍ରମ-ବିଲୀୟମାନ ଦୁରବସ୍ଥା –ବ୍ୟକ୍ତିଗତ ଓ ଜାତୀୟ ସ୍ୱାର୍ଥ ମଧ୍ୟରେ ଭୟଙ୍କର ସଂଘର୍ଷ ଫଳରେ ଦୁଇ ଦୁଇଟା ମହାଯୁଦ୍ଧ– ସର୍ବଧ୍ୱଂସୀ ମେଗାଟୋନ ବୋମାର ଆବିଷ୍କାର । ଏ ଯୁଗରେ ତେଣୁ ମଧୁସୂଦନଙ୍କ ସାହିତ୍ୟକୁ ଅପାଙ୍‌କ୍ତେୟ ବୋଲି ମନେକରି ଉପେକ୍ଷିତ କରିଦେବା ସମୀଚୀନ ନୁହେଁ । ଯେକୌଣସି ଲେଖକ ଚେଷ୍ଟାକଲେ କିମ୍ବା ତା'ର ଅଭ୍ୟାସ ଥିଲେ ସମାଜର ଚଳନ୍ତି ସମସ୍ୟାମାନଙ୍କୁ ଅବଲମ୍ବନ କରି ଗଳ୍ପ ଓ ଉପନ୍ୟାସ ସହଜରେ ଲେଖିପାରିବେ । ଆଧୁନିକ କବିମାନେ ପାଠକମାନଙ୍କ ପ୍ରାଣରେ ବିଶ୍ୱମୈତ୍ରୀର ଭାବ ସଞ୍ଚାର କରିବା ନିମନ୍ତେ ଯେଉଁ 'ଯୁଦ୍ଧୋତ୍ତର' ସାହିତ୍ୟ ସୃଷ୍ଟି କରୁଅଛନ୍ତି– ସେଥିରେ ସେମାନେ ବିଶ୍ୱସଭ୍ୟତାର ଭବିଷ୍ୟତ ନେଇ ମହାଦୁଶ୍ଚିନ୍ତାଗ୍ରସ୍ତ । ପ୍ରଧାନତଃ ବ୍ୟର୍ଥତାର ନୈରାଶ୍ୟମୟ ହାହାକାରରେ ସେମାନଙ୍କର ସାହିତ-ସୃଷ୍ଟି ଭରପୂର । ଏଇମାନଙ୍କୁ କୁହାଯାଏ 'ଯୁଗଧର୍ମୀ ସାହିତ୍ୟିକ'– ଯୁଗ ଚେତନାରେ ସେମାନଙ୍କର ପ୍ରାଣ ଉଦ୍‌ବେଳିତ । ଏହା ନିନ୍ଦାର କଥା ନୁହେଁ । ସଂସାରର ବସ୍ତୁପୁଞ୍ଜକୁ ନେଇ ତ ସାହିତ୍ୟ । ସାମାଜିକ ଜୀବନ ସହିତ କବିର ବ୍ୟକ୍ତିଗତ ଜୀବନ ଅଚ୍ଛେଦ୍ୟ ସୂତ୍ରରେ ଗ୍ରଥିତ । ସମାଜକୁ ଛାଡ଼ି ସେ ଶୂନ୍ୟରେ ଉଡ଼ିଲେ ପାଠକ ପ୍ରାଣରେ ତା'ର ସ୍ଥାନ କାହିଁ ? ଗଜଦନ୍ତରେ ମୀନାର ଗଢ଼ିବାର ସମୟ ଆଉ ସାହିତ୍ୟ କ୍ଷେତ୍ରରେ ନାହିଁ । କିନ୍ତୁ ସମାଜକୁ ଗୋଟେ ଅନ୍ଧାରକୋଣକୁ ନିର୍ମମ ଓ ଉଦାସୀନ ଭାବରେ ଠେଲି ନଦେଇ ଯେଉଁମାନେ ମନୁଷ୍ୟର ଦୁଃଖ, ପାପତାପ, ଦୈନ୍ୟ-ଦୁର୍ବଳତାରେ ସଂବେଦନଶୀଳ ହୋଇ ତା'ର କ୍ଷଣଭଙ୍ଗୁର ଓ ଅତ୍ୟାସକ୍ତ ସଂସାରୀ ଜୀବନର ଉଦ୍‌ଗତି ଓ ଊର୍ଦ୍ଧ୍ୱାୟନ ନିମନ୍ତେ ଆମ୍ଭମାନଙ୍କୁ ଚିନ୍ତା କରିବା ଲାଗି ଦିଗ୍‌ଦର୍ଶନ ଦିଅନ୍ତି, ଆମ୍ଭମାନଙ୍କର କାରାରୁଦ୍ଧ ହୃଦୟରେ ଆଲୋକ ବିକିରଣ କରିବା ନିମନ୍ତେ ସଚେଷ୍ଟ ହୁଅନ୍ତି ଏବଂ ଯେଉଁମାନେ ମଧୁସୂଦନଙ୍କ ପରି ଆମ୍ଭମାନଙ୍କୁ ଆମର ପର୍ବତପ୍ରମାଣ ଅହଙ୍କାର ପରିହାର କରିବାକୁ ଉଦ୍‌ବୋଧନ ଦେଇ ଲେଖିଅଛନ୍ତି–

"ମୁହିଁ କ୍ଷୁଦ୍ର ଊର୍ମି, ତୁମ୍ଭେ ମହାସିନ୍ଧୁ
ଊର୍ମି ସିନ୍ଧୁ ଏକାକାର,
ଅନନ୍ତ ମଙ୍ଗଳ– ସଂକଳ୍ପ ସମ୍ଭୂତ
ମୁହିଁ ତୁମ୍ଭ ମହିମାର ।
ବିହଙ୍ଗମ ମୁହିଁ, ଅନ୍ତରୀକ୍ଷ ତୁମ୍ଭେ
ତୁମ୍ଭ ବିନା କାହିଁ ପ୍ରାଣ,

ତୁମ୍ଭରି ସ୍ୱରୂପେ କରିବି ବିହାର
ତୁମ୍ଭ ବିନା କାହିଁ ତ୍ରାଣ ।''
କିମ୍ବା
''ପାପ-ଭାରାକ୍ରାନ୍ତ ଧରଣୀ
କାନ୍ଦୁଅଛି ବିକଳେ,
ପାପ-ବଂଶ ଧ୍ୱଂସକର ହେ
ମହାପୁଣ୍ୟର ବଳେ ।''
ଅଥବା
''କ୍ଷୁଦ୍ରାଦପି କ୍ଷୁଦ୍ରତର ମର୍ତ୍ତ୍ୟଗୃହ ପାଇଁ
ଅବିଦ୍ୟା-ପ୍ରମାଦେ, ପାନ୍ଥ ହେଲ କି ହେ ବାଇ ?
କେମନ୍ତେ ହେ ପାସୋରିଲ ଜନ୍ମଭୂମି କଥା,
କାହିଁ ତୁମ୍ଭ ରସନାରେ ଅମୃତ ବାରତା ?''

ସେମାନଙ୍କର କ'ଣ ଏ ବାସ୍ତବ-ସଂସାରରେ କୌଣସି ପ୍ରୟୋଜନୀୟତା ନାହିଁ ? ସେମାନଙ୍କର କାବ୍ୟ-ସୃଷ୍ଟି କ'ଣ ''ଆଳସ୍ୟର ସହସ୍ର ସଞ୍ଚୟ, ଅକାର୍ଯ୍ୟର ଯେତେ କାର୍ଯ୍ୟ ?'' ଆଜି ଯେ ଏ ସଂକଟପୂର୍ଣ୍ଣ ବିଶ୍ୱପରିସ୍ଥିତିରେ ମଧୁସୂଦନଙ୍କ ପରି ବିଶ୍ୱଭାବାପନ୍ନ ଅଧ୍ୟାତ୍ମ୍ୟବାଦୀ କବିମାନଙ୍କର ଆବଶ୍ୟକତା ସର୍ବାଗ୍ରେ ପ୍ରୟୋଜନ ! ଆଜି ସଭ୍ୟତା ଯେପରି, ସାହିତ୍ୟ ସେପରି ସଙ୍କଟାପନ୍ନ । ଯେଉଁମାନେ ସାହିତ୍ୟିକମାନଙ୍କୁ ନିର୍ଦ୍ଦେଶ ଦିଅନ୍ତି, ସମାଜକୁ ଚାହିଁ ସାହିତ୍ୟ ରଚନା କରନ୍ତି, ସେମାନେ ନିତାନ୍ତ ଅଶୋଭନୀୟ କିମ୍ବା ଅସଙ୍ଗତ କିଛି ନକଲେ ମଧ ଯେଉଁ ସାହିତ୍ୟ-ସୃଷ୍ଟିର ଉଦ୍ଦେଶ୍ୟ ମନୁଷ୍ୟସମାଜରେ ଚିର-ଆବେଦନଶୀଳ ରସ-ସମ୍ପଦ ପରିବେଷଣ କରିବା, ଜୀବନର ଚିରନ୍ତନ ମୂଲ୍ୟବୋଧର ସୌନ୍ଦର୍ଯ୍ୟମୟ ସଙ୍କେତ ଦେବା— ସୁନ୍ଦରକୁ ମଙ୍ଗଳରେ ରୂପାନ୍ତରିତ କରିବା ଏବଂ ଧର୍ମମତରେ ନୁହେଁ, ଜୀବନାଦର୍ଶରେ 'ଶୈବ' ହେବାପାଇଁ ଶିଳ୍ପସଙ୍ଗତ ଇଙ୍ଗିତ ଦେବା, ସେହି ଅମୃତପ୍ରସ୍ରବଣ ସାହିତ୍ୟକୁ ସାମ୍ବାଦିକତାରେ ପର୍ଯ୍ୟବସିତ କରିବା ନିମନ୍ତେ ସେମାନେ ବ୍ୟାକୁଳ ।

ବର୍ତ୍ତମାନ ଆମ ସମାଜର ପ୍ରଧାନ ସମସ୍ୟା ହେଲା— ସାମ୍ୟବାଦୀ ସମାଜ ପ୍ରତିଷ୍ଠା । ଏ ପ୍ରତିଷ୍ଠା କାର୍ଯ୍ୟ ଯେଉଁଦିନ ସମାପ୍ତ ହେବ, ଆମ ସମାଜ ଯେତେବେଳେ ସମ୍ପୂର୍ଣ୍ଣରୂପେ ସୁଖୀ ଓ ସୁସ୍ଥରୂପେ ଗଢ଼ିଉଠିବ, ଯେଉଁଦିନ ଧନୀର ଅତ୍ୟାଚାରରେ ନିର୍ଦ୍ଧନ ନିପୀଡ଼ିତ ହେବ ନାହିଁ, ଦାରିଦ୍ର୍ୟର ପଦଚିହ୍ନ ପର୍ଯ୍ୟନ୍ତ ଆମ ଦେଶରେ ରହିବ ନାହିଁ, ସମସ୍ତେ ଯେତେବେଳେ ସମାନ ଭାବରେ ଆର୍ଥିକ ଓ ସାମାଜିକ ଆତ୍ମ-ପ୍ରତିଷ୍ଠାରେ ସମଭୂମିରେ ଦଣ୍ଡାୟମାନ ହେବେ, ସେତେବେଳେ ଏହି ସମସାମୟିକ ସମାଜ-ଚିନ୍ତାସମ୍ପନ୍ନ ସମାଜସେବୀ ସାମୟିକ କବିମାନଙ୍କର ସାହିତ୍ୟସୃଷ୍ଟି କିମ୍ବା ସମାଜ-ଚିନ୍ତାର କି ମୂଲ୍ୟ ରହିବ ? ସେଥିରେ ଯଦି କୌଣସି ଚିରନ୍ତନ ସତ୍ୟ ନଥିବ, ତାହାର ଅନିବାର୍ଯ୍ୟ

ପରିଣତି ହେବ ଅନାଦର ଓ ଅବଲୁପ୍ତି । ଯେ କାଳଜୟୀ ସାହିତ୍ୟ, ସମସାମୟିକତାକୁ ଅତିକ୍ରମ କରି ତା'ର ଗତି ଚିରନ୍ତନ ଦିଗନ୍ତକୁ; ଏହି ଚିରନ୍ତନ ପଥରେ ଯେଉଁ କବି ଯେତେ ଅଗ୍ରସର, ସେ ସେତିକି ମହତ୍, ସେତିକି ବରେଣ୍ୟରୂପେ ବିବେଚିତ । ମଧୁସୂଦନ ସ୍ୱକାଳକୁ ଅବଲମ୍ବନ କରି ବ୍ୟକ୍ତ କରିଅଛନ୍ତି ଚିରକାଳକୁ– ସ୍ୱଦେଶର ଜୀବନ ମଧ୍ୟରେ ପ୍ରକାଶ କରିଛନ୍ତି ବିଶ୍ୱଜୀବନକୁ । ଆଧୁନିକ ସମାଜର ପରିପ୍ରେକ୍ଷିତରେ ଏବଂ ରାଷ୍ଟ୍ରପତି ଡକ୍‌ଟର ରାଧାକୃଷ୍ଣନ୍‌ଙ୍କ ସାରଗର୍ଭକ ଉକ୍ତିର ବିଚାରଦୃଷ୍ଟିରୁ ମନେହୁଏ, ମଧୁସୂଦନଙ୍କ ପରି ଯେଉଁମାନେ ଭକ୍ତିପ୍ରବଣତାପୂର୍ଣ୍ଣ ଆଧ୍ୟାତ୍ମିକ ସାହିତ୍ୟ ରଚନା କରିଯାଇଅଛନ୍ତି, ବସ୍ତୁତାନ୍ତ୍ରିକ, ଜଡ଼ବାଦୀ ଓ ଦେହବାଦୀ ସାହିତ୍ୟିକମାନଙ୍କଠାରୁ ସେମାନଙ୍କର ସ୍ଥାନ ଅତି ଉଚ୍ଚରେ । ଡକ୍‌ଟର ରାଧାକୃଷ୍ଣନ୍ ତାଙ୍କର 'Religion and Society'ଗ୍ରନ୍ଥର 'The need for Spiritual Revival' ଶୀର୍ଷକ ସନ୍ଦର୍ଭରେ ଲେଖିଅଛନ୍ତି– "There is the elemental urge in man not only to live, but to live nobly. When our passion for noble living receives cosmic backing, we have the peculiar ardour of religion. There is no one who does not raise at some moment or other those fundamental questions–What am I ? What is my religion ? What is my destiny ?"

ମଧୁସୂଦନଙ୍କ ଅନ୍ୟାନ୍ୟ ଭକ୍ତିରସାଶ୍ରିତ କବିତାକୁ ଛାଡ଼ିଦେଇ କେବଳ ତାଙ୍କର 'ଜୀବନ-ଚିନ୍ତା' କବିତାକୁ ଅନୁଧ୍ୟାନ କଲେ ଜଣାଯାଏ, ସେହି କବିତାଟି ପ୍ରଶସ୍ତ ଓ ଉଦାର ମହାମାନବିକତାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ଏଥିରେ କବି କେବଳ ମଙ୍ଗଳମୟ ଉଦ୍‌ବୋଧନ ଦେଇନାହାନ୍ତି, ଏ ଯୁଗର ମନୁଷ୍ୟଜୀବନର ଆତ୍ମକୈନ୍ଦ୍ରିକତା ଓ ନିରାଟ ବସ୍ତୁତାନ୍ତ୍ରିକତା ବିରୋଧରେ ସତେ ଯେପରି ବଳିଷ୍ଠ ପ୍ରତିବାଦ ଲିପିବଦ୍ଧ କରିବାକୁ ଯାଇ ଲେଖିଛନ୍ତି–

''ଅର୍ଜେ ଅର୍ଥ ଯଶ ମାନ ମାତି ପ୍ରଲୋଭନେ,
କାମନା-କାମିନୀ ମାୟା-ନାଗପାଶେ ଶେଷେ
ପାଲଟଇ କ୍ରୂର ବ୍ୟାଘ୍ର ଅବା ମୂଢ଼ ମେଷେ
ପାସୋରିଣ ମାନବର ସ୍ୱର୍ଗୀୟ ଜୀବନେ ।
ତେଣୁ ଘୋର ରିପୁ-ଉପଦ୍ରବେ ଏ ସଂସାର
ପରିଣତ ପୈଶାଚିକ ପାତାଳ ବିବର
କେ ଦେଖିବ ଦେଖ ଏହି ବୀଭତ୍ସ ବିକାର ।
ଏ ଦାରୁଣ ପରିଣତି ନିରେଖି ନିକର;
ଚମକି ନପଡ଼ କି ହେ ଭବଦାସ ନର ?''

# ମହାପୁରୁଷଙ୍କ ଜୀବନୀ

ଶ୍ରୀକୃଷ୍ଣ
ଶ୍ରୀମଦ୍ ଶଙ୍କରାଚାର୍ଯ୍ୟ
ଶ୍ରୀ ରାମକୃଷ୍ଣ ପରମହଂସ
ସ୍ୱାମୀ ବିବେକାନନ୍ଦ
ଶ୍ରୀ ଅରବିନ୍ଦ
ପ୍ରବୁଦ୍ଧଗୁରୁ ମହିମାସ୍ୱାମୀ
ଗୁରୁ ନାନକ
ଶ୍ରୀଚୈତନ୍ୟ
ଗୌତମ ବୁଦ୍ଧ
ମହାଯୋଗୀ ଗୋରଖନାଥ
ଶ୍ରୀ ରାମାନୁଜାଚାର୍ଯ୍ୟ
ସୁର ଦାସ
ସ୍ୱାମୀ ଶିବାନନ୍ଦ
ସ୍ୱାମୀ ଦୟାନନ୍ଦ
ପରମହଂସ ଯୋଗାନନ୍ଦ
ସ୍ୱାମୀ ନିଗମାନନ୍ଦ
ମୀରାବାଈ
ନରସିଂହ ମେହେଟ୍ଟା
ସନ୍ଥ ଜ୍ଞାନେଶ୍ୱର
ସନ୍ଥ ଏକନାଥ
ସନ୍ଥ ତୁକାରାମ
ସନ୍ଥ କବୀର
ରମଣ ମହର୍ଷି
ସ୍ୱାମୀ ରାମତୀର୍ଥ
ସନ୍ଥ ରାମଦାସ
ସିରିଡ଼ି ସାଇବାବା
ମହାପୁରୁଷ ସ୍ୱାମୀ ଶିବାନନ୍ଦ
ଶ୍ରୀ ଅଭିରାମ ପରମହଂସ
ଭକ୍ତକବି ଭୀମ ଭୋଇ
ମୋ ଜୀବନକାହାଣୀ ( ବାପୁଜୀ )
ଲୋକମାନ୍ୟ ବାଳଗଙ୍ଗାଧର ତିଳକ
ଲାଲା ଲଜପତ୍‌ରାୟ

ମହାନ୍ ବିପ୍ଳବୀ ଚନ୍ଦ୍ରଶେଖର ଆଜାଦ
ରାମମୋହନ ରାୟ
ଶହୀଦ ଭଗତ-ସିଂହ
ଶହୀଦ କୁଅଁର ସିଂହ
ପଣ୍ଡିତ ଜବାହରଲାଲ ନେହେରୁ
ଶ୍ରୀମତୀ ଇନ୍ଦିରା ଗାନ୍ଧୀ
ନେତାଜୀ ସୁଭାଷଚନ୍ଦ୍ର
ଏମିତି ଥିଲେ ଆମ ବାପୁଜୀ
କୃଷ୍ଣ ଚରିତ
ଆମ ମଧୁବାବୁ
ଶ୍ରୀ ଜୟଦେବ
ଉପେନ୍ଦ୍ର ଭଞ୍ଜ
ବିଶ୍ୱକବି ରବୀନ୍ଦ୍ରନାଥ
ଉତ୍କଳଗୌରବ ମଧୁସୂଦନ
ମହାମାନବ ଗୋପବନ୍ଧୁ
ଜ୍ୟୋତିର୍ବିଜ୍ଞାନୀ ପଠାଣୀ ସାମନ୍ତ
ନେତାଜୀ ସୁଭାଷ
ମହାମନା ମଦନମୋହନ ମାଲବ୍ୟ
ଫକୀରମୋହନ ଆତ୍ମଜୀବନ ଚରିତ
ଲାଲବାହାଦୁର ଶାସ୍ତ୍ରୀ
ମହାକବି କାଳିଦାସ
ଦିଗ୍‌ଦର୍ଶକ
ଇନ୍ଦୁରୁ ପ୍ରଧାନମନ୍ତ୍ରୀ
ଜୀବନ ପଥେ ( ରମାଦେବୀ )
ବୁଦ୍ଧ ମହାଚରିତ
ମୋ ନିଜ କାହାଣୀ – ୧ମ, ୨ୟ
( ପଣ୍ଡିତ ଜବାହାରଲାଲ୍ ନେହେରୁ )
ଉତ୍କଳମଣି ଗୋପବନ୍ଧୁ
ଦେଶପ୍ରାଣ ମଧୁସୂଦନ
ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ
ମୋର ସ୍ଥାନ (ପଣ୍ଡିତ ଗୋଦାବରୀଶ ମିଶ୍ର)
ଟଲଷ୍ଟୟ ଜୀବନୀ ଓ ଜୀବନଦର୍ଶନ